## ବହି ବିଷୟରେ ପଦେ:

ଭାରତର କେରଳ ପ୍ରଦେଶରେ ଜନ୍ମ ହୋଇ ପରେ ଶ୍ରୀଲଙ୍କାର ନାଗରିକତ୍ୱ ଗ୍ରହଣ କରିଥିବା ଆବ୍ରାହମ କୋଭୁର ଜଣେ ଖ୍ୟାତିସମ୍ପନ୍ନ ହେତୁବାଦୀ । ବିଜ୍ଞାନର ଅଧ୍ୟାପକ ଭାବରେ ସେ ନିଜର କର୍ମମୟ ଜୀବନ ଆରମ୍ଭ କରି ଗଭୀର ଅଧ୍ୟୟନ ଓ ଗବେଷଣା ଯୋଗୁଁ ଆନ୍ତର୍ଜାତିକ ସ୍ତରରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ । ବିଶେଷତଃ ତାଙ୍କର ଚମତ୍କାରିତା ଅନାବରଣ କାର୍ଯ୍ୟକ୍ରମ ଓ ଆଲୌକିକତା ପ୍ରଦର୍ଶନ ପାଇଁ ଆହ୍ୱାନ ଏକ କ୍ରାନ୍ତିକାରୀ ପଦକ୍ଷେପ ଥିଲା । ଯେ କୌଣସି ଦେଶର କୌଣସି ବ୍ୟକ୍ତି ତାଙ୍କ ସମ୍ମୁଖରେ ବା ତାଙ୍କ ମନୋନୀତ ବ୍ୟକ୍ତିଙ୍କ ପାଖରେ ଯଦି କୌଣସି ଚମତ୍କାରିତା ଦେଖାଇ ପାରିବେ ତେବେ କୋଭୁର ତାଙ୍କୁ ଏକ ଲକ୍ଷ ଟଙ୍କା ପ୍ରଦାନ କରିବେ ବୋଲି ୧୯୬୪ରେ ସମଗ୍ର ପୃଥିବୀରେ ଆହ୍ୱାନ ଦେଇଥିଲେ । ତାଙ୍କର ଏହି ଆହ୍ୱାନ ୧୯୭୮ରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲା ଓ ତାଙ୍କ ମୃତ୍ୟୁପରେ ବିଭିନ୍ନ ହେତୁବାଦୀ ସଂଗଠନମାନଙ୍କଦ୍ୱାରା ଅଦ୍ୟାବଧି ରହିଆସିଛି । ଜଣେ ହେତୁବାଦୀ ଚିନ୍ତକ ଓ ମାନବବାଦୀ ଭାବରେ ସେ ଆନ୍ତର୍ଜାତିକ ସ୍ତରରେ ସୁବିଦିତ । ତାଙ୍କର ଜନ୍ମ ଶତବାର୍ଷିକୀ ବର୍ଷରେ ତାଙ୍କ ଜୀବନୀ ଓ ବିଚାରାଦର୍ଶ ଉପରେ ଏହି ପୁସ୍ତକଟି ପ୍ରକାଶ ପାଇବା ଉଲ୍ଲେଖନୀୟ ।

# ଆବ୍ରାହମ କୋଭୁର

## କୁସଂସ୍କାର ବିରୁଦ୍ଧରେ ଏକ ସଂଗ୍ରାମୀ ବ୍ୟକ୍ତିତ୍ୱ

## (ପରିବର୍ଦ୍ଧିତ ସଂସ୍କରଣ)

ଧନେଶ୍ୱର ସାହୁ

*ଅବସରପ୍ରାପ୍ତ ଅଧ୍ୟାପକ*

*ଦର୍ଶନ ବିଭାଗ*

# ଆବ୍ରାହମ କୋଭୁର
କୁସଂସ୍କାର ବିରୁଦ୍ଧରେ ଏକ ସଂଗ୍ରାମୀ ବ୍ୟକ୍ତିତ୍ୱ

**ଲେଖକ : ଧନେଶ୍ୱର ସାହୁ**

**ପ୍ରକାଶକ :**
ଚର୍ଚ୍ଚା ପ୍ରକାଶନ
ପ୍ଲଟ୍ ନଂ. : ୨୫୧, ଖାରବେଳ ନଗର,
ୟୁନିଟ୍ - ୩, ଭୁବନେଶ୍ୱର

**ମୁଦ୍ରଣ :**
କ୍ୟାପିଟାଲ ପ୍ରେସ୍
ବି-୫୧, ଶହୀଦ ନଗର, ଭୁବନେଶ୍ୱର-୭୫୧୦୦୭
ମୋ : ୯୪୩୭୯୦୧୫୦୦, ୯୩୩୭୧୦୩୯୧୩

ପ୍ରଥମ ସଂସ୍କରଣ : ୧୯୯୮

**ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣ : ୨୦୧୦**



ମୂଲ୍ୟ : ୧୬୦/-

---

**ABRAHAM COVOOR**
KUSANSKAR BIRUDHARE EK SANGRAMI BYAKTITWA

**Author : Dhaneswar Sahoo**

**Publisher :**
Charcha Prakashan
Plot No. :251, Kharvela Nagar,Unit-III, Bhubaneswar-1

**Printed by :**
Capital Press
B-51, Saheed Nagar, Bhubaneswar-751007
Mob : 9437901500, 9337103913

First Edition :1998

**Second Revised Edition : 2010**



Rs : 160/-

ISBN No. 978-81-908500-2-5



ପୃଥିବୀର ଯେଉଁ ଦାର୍ଶନିକ, ବୈଜ୍ଞାନିକ, ଲେଖକ, ସଂସ୍କାରକ
ଓ ହେତୁବାଦୀ ମନୀଷୀଗଣ ସାମାଜିକ ନ୍ୟାୟ ପ୍ରତିଷ୍ଠା
ପାଇଁ ଓ ସ୍ୱାଧୀନ ଚିନ୍ତାର ବିକାଶ କରିବାକୁ
ଯାଇ ଜୀବନବ୍ୟାପୀ ସଂଗ୍ରାମ କରି
ବହୁ ନିର୍ଯ୍ୟାତନା ସହ୍ୟ କରିଛନ୍ତି
ଓ ଏପରିକି ଶହୀଦ ହୋଇଛନ୍ତି
ସେହିମାନଙ୍କର ଅମ୍ଲାନ
ସ୍ମୃତି ଉଦ୍ଦେଶ୍ୟରେ
ଏହି ପୁସ୍ତକଟିକୁ
ଉତ୍ସର୍ଗ କରୁଛି ।

- ଲେଖକ -



*Nobody has, and judging the past from the present, I state boldly that nobody ever had, miraculous or supernatural powers although we read about such claims in scriptures and sensation mongering news papers.*

*He who does not allow his miracles to be investigated is a crook, he who does not have the courage to investigate a miracle is a gullible, and he who is prepared to believe without verification is a fool !*

***Abraham Kovoor***

# ସୂଚୀପତ୍ର

# ମୁଖବନ୍ଧ

ଆମ ସମାଜରେ ଅନେକ କୁସଂସ୍କାର ଓ ଅନ୍ଧବିଶ୍ୱାସ ରହିଛି । ତା ସହିତ ଜାତିପ୍ରଥା, ଅସ୍ପୃଶ୍ୟତା ଓ ଉଚ୍ଚ ନୀଚ ଭେଦଭାବ ପରି ଅମାନବିକ ପ୍ରଥା ଗୁଡ଼ିକ ଆମର ସାମାଜିକ ଚଳଣିରେ ଏବେବି ବଦ୍ଧମୂଳ ହୋଇରହିଛି । ସ୍ୱାଧୀନ ଭାରତରେ ଶିକ୍ଷା ଓ ସାମାଜିକ ସଚେତନତାର ଯଥେଷ୍ଟ ବିକାଶ ହୋଇଥିଲେ ବି ସାମାଜିକ ବ୍ୟାଧି ଗୁଡ଼ିକର ଦୂରୀକରଣ ପାଇଁ ସେପରି ବଳିଷ୍ଠ ଆନ୍ଦୋଳନ ଏ ପର୍ଯ୍ୟନ୍ତ ମୁଣ୍ଡ ଟେକି ନାହିଁ । ବରଂ ପରିତାପର ବିଷୟ ସାଂପ୍ରଦାୟିକ ଦୃଷ୍ଟିକୋଣ, ନାନା ଅର୍ଥହୀନ ଧର୍ମୀୟ ଉପାସନା ଓ ଅହେତୁକ ବିଶ୍ୱାସର ବିକାଶ ହେଉଛି । ସାମ୍ପ୍ରତିକ ଯୁଗରେ ଗଣ ମାଧ୍ୟମ ଓ ସମ୍ବାଦ ପତ୍ରର ବହୁଳ ପ୍ରସାର ଯୋଗୁଁ ଅବୈଜ୍ଞାନିକ ଭାବନାର ବିକାଶ ତ୍ୱରାନ୍ୱିତ ହୋଇ ଉଠୁଛି । କିଛି ଦିନ ତଳେ ଗଣେଶ ମୂର୍ତ୍ତି କ୍ଷୀର ପିଇବା ଭଳି ଗୋଟିଏ ଅହେତୁକ ଘଟଣା ସାରା ଦେଶରେ ଚହଳ ପକାଇଥିଲା । ସାମାଜିକ କର୍ତ୍ତବ୍ୟ ଓ ନାଗରିକ ଦାୟିତ୍ୱ ପ୍ରତି ଉଦାସୀନତା ପ୍ରକାଶ ପାଇବା ବେଳେ ଧର୍ମୀୟ କର୍ମକାଣ୍ଡକୁ ପାଳନ କରିବା ପାଇଁ ଅଧିକ ଆଗ୍ରହ ପ୍ରକାଶ ପାଉଛି ।

ଆମର ପ୍ରାଚୀନ ବିଶ୍ୱାସ, ପରମ୍ପରା, ନାନା ଧର୍ମୀୟ ଚଳଣି ଓ ପାରଲୌକିକ ଦୃଷ୍ଟିଭଙ୍ଗୀ ସ୍ୱାଧୀନ ଚିନ୍ତା ଓ ପ୍ରଗତିଶୀଳ ଭାବଧାରାର ବିକାଶ କ୍ଷେତ୍ରରେ ବେଳେ ବେଳେ ପ୍ରତିବନ୍ଧକ ହେଉଛି । ଏ ସତ୍ତ୍ୱେ ସୁଖର କଥା ଆମ ଦେଶର ସମ୍ବିଧାନ ପ୍ରଗତିଶୀଳ ମୂଲ୍ୟବୋଧକୁ ସ୍ୱୀକୃତି ଦେଇଛି । ବ୍ୟକ୍ତିର ମୌଳିକ କର୍ତ୍ତବ୍ୟ

ପୃଷ୍ଠଭୂମିରେ ଆମ ଦେଶର ସମ୍ବିଧାନର ଭାଗ ୪(କ) ଧାରା ୫୧କ ରେ ଉଲ୍ଲେଖ ଅଛି 'ବ୍ୟକ୍ତି ବୈଜ୍ଞାନିକ ଦୃଷ୍ଟିକୋଣ, ମାନବଭାବ ତଥା ଜ୍ଞାନାର୍ଜନ ଓ ସଂସ୍କାର ଭାବନାର ବିକାଶ କରିବେ ।' ଅର୍ଥାତ୍ ଏହି ଲକ୍ଷ୍ୟର ବିକାଶ କରାଇବା ଜଣେ ବ୍ୟକ୍ତିର ମୌଳିକ କର୍ତ୍ତବ୍ୟ ବୋଲି କୁହାଯାଇଛି । ସମାଜର ଗୁଣାତ୍ମକ ବିକାଶ କ୍ଷେତ୍ରରେ ବୈଜ୍ଞାନିକ ଦୃଷ୍ଟିକୋଣ, ଧର୍ମ ନିରପେକ୍ଷ ଆଦର୍ଶ, ନୈତିକ କର୍ତ୍ତବ୍ୟବୋଧ ଓ ମାନବବାଦୀ ମୂଲ୍ୟଚୟର ବିକାଶ ଅବଶ୍ୟମ୍ଭାବୀ ମନେହୁଏ । ଏହି ମୂଲ୍ୟଚୟ ଗୁଡିକ ହେଉଛି ହେତୁବାଦର ମୌଳିକ ଆଧାର । ଦେଶର କେତେକ ପ୍ରଗତିଶୀଳ ଓ ହେତୁବାଦୀ ସଂଗଠନ ଏହି ଲକ୍ଷ୍ୟଗୁଡିକୁ ଶ୍ରେୟ ଭାବରେ ନେଇ କାର୍ଯ୍ୟ କରୁଛନ୍ତି । କିନ୍ତୁ ପରିତାପର ବିଷୟ ଜାତୀୟ ସ୍ତରରେ ସେପରି ବଳିଷ୍ଠ ସଂସ୍କାର-ଆନ୍ଦୋଳନ ଏପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ ।

ଆବ୍ରାହମ ଥୋମାସ କୋଭୁର – କୋଭୁର ନାମରେ ହିଁ ଆନ୍ତର୍ଜାତିକ ସ୍ତରରେ ପରିଚିତ । ସେ ଯଦିବା ଭାରତୀୟ ତଥାପି ତାଙ୍କର କର୍ମମୟ ଜୀବନ ଆମର ପଡୋଶୀ ରାଷ୍ଟ୍ର ଶ୍ରୀଲଙ୍କାରେ ଅତିବାହିତ ହୋଇଥିଲା । ସେ ସେଠାକାର ବିଭିନ୍ନ ମହାବିଦ୍ୟାଳୟ ମାନଙ୍କରେ ଅଧ୍ୟାପନା କରୁଥିଲେ ଓ ଚାକିରୀରୁ ଅବସର ପରେ ସେ ଶ୍ରୀଲଙ୍କାର ନାଗରିକତ୍ୱ ଗ୍ରହଣ କରିଥିଲେ । ହେତୁବାଦ ବା ଏକ ବିଚାରଶୀଳ ଦୃଷ୍ଟିକୋଣର ବିକାଶକୁ ସେ ଜୀବନର ଶ୍ରେଷ୍ଠ ଲକ୍ଷ୍ୟ ଭାବରେ ଗ୍ରହଣ କରିଥିଲେ । ଉଲ୍ଲିଖିତ ମୂଲ୍ୟଚୟର ପ୍ରସାର ପାଇଁ ସେ ନିଜକୁ ଉତ୍ସର୍ଗ କରିଥିଲେ । ଭାରତ, ଶ୍ରୀଲଙ୍କା ଓ ଏପରିକି ଆନ୍ତର୍ଜାତିକ ସ୍ତରରେ ଜଣେ ବୈଜ୍ଞାନିକ ଓ ହେତୁବାଦୀ ମୂଲ୍ୟବୋଧର ପ୍ରବକ୍ତା ଭାବରେ ସେ ସୁପରିଚିତ ।

ତାଙ୍କର ଚମତ୍କାରିତା ଅନାବରଣ କାର୍ଯ୍ୟକ୍ରମ (Miracle Exposure Campaign) ୧୯୭୦-୭୮ ଭିତରେ ଭାରତରେ ବେଶ୍ ଆଲୋଡନ ସୃଷ୍ଟି କରିଥିଲା । ସେହି ସମୟ ଭିତରେ ସେ ଓଡିଶାର ରାଉରକେଲାକୁ ମଧ୍ୟ ଦୁଇଥର ଆସିଥିଲେ । ତାଙ୍କ କାର୍ଯ୍ୟକ୍ରମ ସମ୍ବନ୍ଧରେ ତାଙ୍କ ସଭା ଆୟୋଜନକାରୀଙ୍କ ପାଖରୁ ମୁଁ ଶୁଣିବାକୁ ପାଇଥିଲେ ବି କୋଭୁରଙ୍କୁ ଦେଖିବାର ସୌଭାଗ୍ୟ ମୋର ହୋଇନାହିଁ ।

ଅଶୀ ଦଶକରୁ ଜାତୀୟ ସ୍ତରରେ ଥିବା ମୁକ୍ତ ଚିନ୍ତକ ଓ ହେତୁବାଦୀ ସଂଗଠନ ସହିତ ପରିଚିତ ହେବା ପରେ କୋଭୁରଙ୍କ ଉପରେ ବହିଟିଏ ଓଡିଆରେ ଲେଖିବାକୁ ମୁଁ ଇଚ୍ଛା କରିଥିଲି । କିନ୍ତୁ କର୍ମ ଜଞ୍ଜାଳ ଭିତରେ ସେ ସ୍ୱପ୍ନ ଏପର୍ଯ୍ୟନ୍ତ ସାକାର ହୋଇ ପାରିନଥିଲା । ଅବଶ୍ୟ କୋଭୁରଙ୍କ ଉପରେ କେତୋଟି ପ୍ରବନ୍ଧ ପ୍ରକାଶ କରିବାକୁ ଯାଇ ଓଡିଶାର ସୁଧୀ ପାଠକମାନଙ୍କ ପାଖରୁ ଅନେକ ପ୍ରେରଣା ଲାଭ କରିଛି ।

କୋଭୁରଙ୍କ ଲିଖିତ "Begone Godmen" ଓ "Gods, Demons and Spirits" ପୁସ୍ତକ ଦ୍ୱୟକୁ ମୂଳ ଆଧାର ଭାବରେ ନେଇ ମୁଁ ଏହି ପୁସ୍ତକଟିକୁ ରଚନା କରିଛି । ଏହି ପୁସ୍ତକରେ ଦିଆଯାଇଥିବା ଅନୁସନ୍ଧାନମୂଳକ ବିବରଣୀର କାହାଣୀ ଗୁଡିକ (Case history) ମୁଁ ଏହି ଦୁଇ ବହିରୁ ସଂଗ୍ରହ କରିଛି । ଏହା ବ୍ୟତୀତ ଅନ୍ୟ ଯେଉଁ ଲେଖକଙ୍କର ବହି ମୋତେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସାହାଯ୍ୟ କରିଛି ତାହାର ତାଲିକା ମୁଁ ପୁସ୍ତକ ସୂଚୀରେ ଦେଇଛି । ଓଡିଶାର ସୁଧୀ ପାଠକମାନେ କୋଭୁରଙ୍କ ବିଚାରାଦର୍ଶ ଏହି ପୁସ୍ତକରୁ ଜାଣିବାର ସୁଯୋଗ ପାଇଲେ ମୋର ଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

କୋଭୁରଙ୍କର ବହି ୧୯୭୯ରେ ବିଶିଷ୍ଟ ହେତୁବାଦୀ ବନ୍ଧୁ ଶ୍ରୀ ଶ୍ରୀଧର ଷଡଙ୍ଗୀ ଓ ଶ୍ରୀ ବସନ୍ତ କୁମାର ପାଲ ମୋତେ ପଢିବାକୁ ଦେଇଥିଲେ । ସେମାନଙ୍କୁ ଏହି ଅବସରରେ ମୁଁ କୃତଜ୍ଞତା ଜ୍ଞାପନ କରୁଛି । ସାଥୀ ଅଧ୍ୟାପକ ଶ୍ରୀ ଡମ୍ବରୁଧର ବେହେରାଙ୍କ ସଙ୍ଗରେ କୋଭୁରଙ୍କ ସମ୍ପର୍କରେ କେତେବାର ଆଲୋଚନା କରିବାର ଅବକାଶ ପାଇଛି । ତାଙ୍କୁ ବି ଏହି ଅବସରରେ ମୋର କୃତଜ୍ଞତା ଜ୍ଞାପନ କରୁଛି । କୋଭୁରଙ୍କ ଉପରେ ବହିଟିଏ ଓଡିଆରେ ଲେଖିବାକୁ ମୋତେ ପ୍ରେରଣା ଦେଇଥିବା ବନ୍ଧୁ ସର୍ବଶ୍ରୀ ସିଦ୍ଧାର୍ଥ ରାଧେଶ୍ୟାମ, ମହମ୍ମଦ ସୁକୁର, ସନ୍ଦିପ କୁମାର ମୁଖାର୍ଜୀ, ଡଃ ଜ୍ଞାନପ୍ରକାଶ ମହାପାତ୍ର, ବଂଶୀଧର ଦାସ, ସୂର୍ଯ୍ୟନାରାୟଣ ସାହୁ, ବେଣୁଧର ମେହେର,ଡି.ମୋହନ ରାଓ, ବାମଦେବ ପରିଡା ଓ ସୁରେନ୍ଦ୍ର ବେହେରାଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଆନ୍ତର୍ଜାତିକ ସଂଗଠନ "Scientific Investigation of Claims of the Paranormal" ର ଭାରତୀୟ ଆବାହକ ଓ Indian Sceptic ପତ୍ରିକାର ସଂପାଦକ ଶ୍ରୀ ବି.ପ୍ରେମାନନ୍ଦ ମୋର ଅନୁରୋଧ କ୍ରମେ କୋଭୁରଙ୍କର କେତେକ ଲେଖା ଓ ସମ୍ବାଦପତ୍ର ବିବରଣୀ ଯୋଗାଇ ଥିବାରୁ ତାଙ୍କୁ ବି ମୋର କୃତଜ୍ଞତା ଜ୍ଞାପନ କରୁଛି । ଜାତି-ଜାତକ-ଯୌତୁକବିହୀନ ବିବାହ କରାଇ ସାମାଜିକ ସଂସ୍କାର ପାଇଁ କାର୍ଯ୍ୟ କରୁଥିବା ସଂଗଠନ ଆମୋଫୋଇର ପ୍ରତିଷ୍ଠାତା ଅଧ୍ୟାପକ ବି.ରାମଚନ୍ଦ୍ର, ଅଧ୍ୟାପିକା ସପ୍ନା ବିଜୟିନୀ ଓ ଶ୍ରୀ ଜନ୍ ଓଁପ୍ରକାଶଙ୍କର ପ୍ରେରଣା ପାଇଁ ମୋର କୃତଜ୍ଞତା ପ୍ରକାଶ କରୁଛି । ଏହି ପୁସ୍ତକଟି ପାଇଁ ବହୁ ଆଗ୍ରହ ପ୍ରକାଶ କରିଥିବା ଶ୍ରଦ୍ଧେୟ ଅଧ୍ୟାପକ ଶ୍ରୀ ଶଚୀନ୍ଦ୍ର ରାଉଳଙ୍କୁ ମୋର ଧନ୍ୟବାଦ ଜଣାଉଛି । ପାଣ୍ଡୁଲିପିଟିର ନକଲ ଦିଗରେ ସାହାଯ୍ୟ କରିଥିବା ଅଧ୍ୟାପକ ଶ୍ରୀ ବିଦ୍ୟାଧର

ବେହେରାଙ୍କ ପାଖରେ ମୋର କୃତଜ୍ଞତା ପ୍ରକାଶ କରୁଛି । ମୋର ପତ୍ନୀ ପ୍ରତିମା ପାଣ୍ଡୁଲିପିଟିକୁ ପ୍ରସ୍ତୁତ କରିବାରେ ଆବଶ୍ୟକ ସମୟରେ ମୋତେ ସହଯୋଗ ଦେଇଥିବାରୁ ତାଙ୍କୁ ବି ମୁଁ ଧନ୍ୟବାଦ ଦେଉଛି ।

କ୍ୟାପିଟାଲ ବିଜିନେସ ସର୍ଭିସ ଏଣ୍ଡ କନସଲଟାନ୍ସିର ସତ୍ତ୍ୱାଧିକାରୀ ଅନୁଜ ପ୍ରତିମ ଶ୍ରୀ ନିଶାକର ସାହୁ ଏବଂ ଶ୍ରୀ ସୁରେନ୍ଦ୍ର କୁମାର ମେହେଣା ଏହି ପୁସ୍ତକଟିର ପ୍ରକାଶ ଦାୟିତ୍ୱ ନେଇଥିବାରୁ ମୁଁ ସେମାନଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

**ଧନେଶ୍ୱର ସାହୁ**
ଏ-୧୨, ଭାଗିରଥି ବିହାର,
ଢେଙ୍କାନାଳ

# ଦ୍ୱିତୀୟ ଓ ପରିବର୍ଦ୍ଧିତ ସଂସ୍କରଣ ବିଷୟରେ ପଦେ...

ହେତୁବାଦୀ ଅନୁଶୀଳନ ଉପରେ ଆଧାରିତ "ଆବ୍ରାହମ କୋଭୁର-କୁସଂସ୍କାର ବିରୁଦ୍ଧରେ ଏକ ସଂଗ୍ରାମୀ ବ୍ୟକ୍ତିତ୍ୱ" ପୁସ୍ତକଟି ଏବେ ଉପଲବ୍ଧ ହେଉନାହିଁ । ଜନମାନସରେ ହେତୁବାଦ ଓ ନିରପେକ୍ଷ ମାନବବାଦ ଜୀବନ ଦର୍ଶନର ପ୍ରସାର ପାଇଁ ଏହି ପୁସ୍ତକଟି ଉଦ୍ଦିଷ୍ଟ । ଏ ବହିଟିର ପ୍ରଥମ ଆତ୍ମପ୍ରକାଶ ପରେ ଓଡ଼ିଶାର ବହୁ ସଚେତନ ପାଠକ ଓ କେତେକ ବୁଦ୍ଧିଜୀବୀ ବହିଟି ପାଠକରି ସନ୍ତୋଷ ପ୍ରକାଶ କରିଥିଲେ । ହେତୁବାଦୀ ମୂଲ୍ୟବୋଧ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବିକ ମହତ୍ତ୍ୱକୁ ଓଡ଼ିଶାର ସୁଧୀ ପାଠକମାନଙ୍କ ପାଖରେ ପ୍ରସାର କରିବାରେ ଏହି କ୍ଷୁଦ୍ର ଉଦ୍ୟମ ପାଇଁ ସେମାନେ ମୋତେ ଆନ୍ତରିକ ଧନ୍ୟବାଦ ଜଣାଇଥିଲେ ।

ବହିଟିର ପ୍ରଥମ ସଂସ୍କରଣ କିଛି ଦିନ ହେଲା ସରିଯାଇଥିବାରୁ ବହିଟିର ପୁନଃମୁଦ୍ରଣ କରିବାକୁ କେତେକ ବନ୍ଧୁ ମୋତେ ବାରମ୍ବାର କହିଛନ୍ତି । ଏହା ଭିତରେ ସମାଜରେ କୁସଂସ୍କାର ଓ ଅପସଂସ୍କୃତି ଯେ କମିଛି ତାହା ମନେ ହେଉନାହିଁ । ବରଂ ଆଧୁନିକ ବିଜ୍ଞାନ, ପ୍ରଯୁକ୍ତି, ଉଚ୍ଚଶିକ୍ଷା, ବୃତ୍ତିଗତ ଢାଞ୍ଚାରେ ବହୁ ପରିବର୍ତ୍ତନ ଆସିଥିଲେ ମଧ୍ୟ ସମାଜରୁ କୁସଂସ୍କାର ଲୋପ ହେବା ପରିବର୍ତ୍ତେ କୁସଂସ୍କାର ଓ ଅପସଂସ୍କୃତି ବଢ଼ିବାରେ ଲାଗିଛି । ଓଡ଼ିଶାର ମୁଖ୍ୟ ମୁଖ୍ୟ ସମ୍ବାଦପତ୍ର ରାଶିଫଳ ପ୍ରକାଶ କରୁଛନ୍ତି, ବାସ୍ତୁବିଦ୍ୟା ନେଇ କେତେକେତେ ପ୍ରଚାର ହେଉଛି, କେଉଁ ଦିଅଁ ଦେବତା ପାଖରେ ପାଣି ଢାଳିବାକୁ, ନଡ଼ିଆ ବାଡେଇବାକୁ ଅସଂଖ୍ୟ

ବ୍ୟକ୍ତି ଧାର୍ମିକ ଆବେଗ ନେଇ ଅଗ୍ରସର ହେଉଛନ୍ତି । ଏହା ସହିତ ଡାହାଣୀ ଭାବି ମହିଳାମାନଙ୍କୁ ନିର୍ଯ୍ୟାତନା ଦିଆଯାଉଛି ବା ହତ୍ୟା କରାଯାଉଛି । ଗୁଣି, ମନ୍ତ୍ର, ତନ୍ତ୍ର ଉପରେ ବହୁ ବିଶ୍ୱାସ ସମାଜରେ ରହିଛି । ଏସବୁ କେବଳ ଯେ ନିରକ୍ଷର, ଅଶିକ୍ଷିତ ଲୋକଙ୍କ ଭିତରେ ରହିଛି ତା ନୁହେଁ, ସମାଜର ବହୁ ଶିକ୍ଷିତ, ସଚେତନ ଓ ଉଚ୍ଚ ପଦପଦବୀରେ ଥିବା ବ୍ୟକ୍ତି ଏବଂ ସାଧାରଣ ଜୀବନରେ ପ୍ରଭାବ ରହିଥିବା ଅନେକ ନେତୃସ୍ଥାନୀୟ ବ୍ୟକ୍ତି ମଧ୍ୟ କୁସଂସ୍କାରର ପ୍ରଭାବରୁ ମୁକ୍ତ ହୋଇପାରୁନାହାନ୍ତି । ଅସ୍ପୃଶ୍ୟତା, ଜାତିଆଣ ମାନସିକତା, ସାଂପ୍ରଦାୟିକ ତିକ୍ତତା ଏବେବି ସମାଜରେ ରହିଛି । ଏହି ପୃଷ୍ଠଭୂମିରେ ସାମାଜିକ ଚେତନା ସ୍ତରରେ କିଛି ଗୁଣାତ୍ମକ ପରିବର୍ତ୍ତନ ପାଇଁ ଏହି ପ୍ରକାର ପୁସ୍ତକର ଆବଶ୍ୟକତା ରହିଥିବା ମୋର ମନେହୁଏ ।

ତେବେ ଏହି ସଂସ୍କରଣଟିରେ ଏକ ନୂତନ ପରିଚ୍ଛେଦ (ପରିଚ୍ଛେଦ-୧୦; ମନୋବିଜ୍ଞାନ, ପରାମନୋବିଜ୍ଞାନ ଓ ଆତ୍ମା) ସଂଯୁକ୍ତ କରାଯାଇଛି । ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ, ଆତ୍ମାପ୍ରଭାବ, ପୁନର୍ଜନ୍ମ ଇତ୍ୟାଦି ଭାବନା ଗୁଡିକର କୌଣସି ବୈଜ୍ଞାନିକ ଆଧାର ଅଛି କି-ତାହା ହିଁ ଏହି ପରିଚ୍ଛେଦର ବିଷୟବସ୍ତୁ । କେତେକ ଶିକ୍ଷିତ ବ୍ୟକ୍ତି ପରାମନୋବିଜ୍ଞାନ ବା ପାରାସାଇକୋଲୋଜିକୁ ସ୍ୱୀକାର କରୁଥିବା ପୃଷ୍ଠଭୂମିରେ ବାସ୍ତବ ସତ୍ୟ କଣ ତାହା ଜଣାଇବାକୁ ଏହି ପରିଚ୍ଛେଦଟିକୁ ଏହି ସଂସ୍କରଣରେ ସ୍ଥାନ ଦିଆଯାଇଛି । କିଛିଦିନ ତଳେ ଏକ ଟିଭି କାର୍ଯ୍ୟକ୍ରମରେ ଏ ଲେଖକ ସହିତ ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକଙ୍କର ଆଲୋଚନା ପୃଷ୍ଠଭୂମିରେ ସେ ପାରାସାଇକୋଲୋଜିକୁ ସମର୍ଥନ କରି ତାଙ୍କର ବକ୍ତବ୍ୟ ରଖିଥିଲେ । ବସ୍ତୁତଃ ଏହା ଉପରେ ଏ ଭିତରେ ମୁଁ କେତେକ ସାହିତ୍ୟ ପଢିବା ପରେ ଏହି ବିଷୟରେ କିଛି ତଥ୍ୟ ଜଣାଇବାକୁ ଉଚିତ ମନେ କଲି । ତେବେ ହେତୁବାଦୀମାନେ ସର୍ବଦା ମୁକ୍ତ ମନ ପୋଷଣ କରି ଆସିଛନ୍ତି । ଯଦି କୌଣସି ବ୍ୟକ୍ତି ବୈଜ୍ଞାନିକ ପଦ୍ଧତିରେ

ପରାମନୋବିଜ୍ଞାନକୁ ପ୍ରତିଷ୍ଠା କରିପାରିବେ, ତେବେ ତାହା ମନୋବିଜ୍ଞାନ ଗବେଷଣା କ୍ଷେତ୍ରରେ ନୂତନ ଦିଗନ୍ତ ସୃଷ୍ଟି କରିବ । ବସ୍ତୁତଃ ପରାମନୋବିଜ୍ଞାନକୁ ଆହ୍ୱାନ ଦେଇଥିବା କେତେକ ହେତୁବାଦୀଙ୍କ ବିଷୟରେ ସୂଚନା ଦେବାକୁ ମୁଁ ପ୍ରୟାସ କରିଛି ।

ମୋର ବିଶ୍ୱାସ ପ୍ରଥମ ସଂସ୍କରଣଟି ଯେପରି ଓଡ଼ିଶାର ସୁଧୀ ପାଠକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା, ଏହି ପରିବର୍ଦ୍ଧିତ ସଂସ୍କରଣଟି ସେହିପରି ସ୍ୱୀକୃତି ଲାଭ କରିବ ।

ଶ୍ରୀ ନିଶାକର ସାହୁ ଓ ଶ୍ରୀ ସୁରେନ୍ଦ୍ର ମେହେଣା ପୁସ୍ତକଟିର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଁ ଆଗ୍ରହ ପ୍ରକାଶ କରିଥିବାରୁ ସେମାନଙ୍କୁ ମୁଁ ଅନେକ ସାଧୁବାଦ ଜଣାଉଛି । ଓଡ଼ିଶା ହେତୁବାଦୀ ସମାଜର ଅନେକ ବନ୍ଧୁଙ୍କୁ ବହିଟିରେ ଆଗ୍ରହ ପ୍ରକାଶ ପାଇଁ ଧନ୍ୟବାଦ ଜ୍ଞାପନ କରୁଛି ।

**ଧନେଶ୍ୱର ସାହୁ**
ବି-୨, କମଳା ପ୍ୟାଲେସ
ସତ୍ୟନଗର, ଭୁବନେଶ୍ୱର

# ଜୀବନୀ ଓ ବ୍ୟକ୍ତିତ୍ୱ

ସାଧାରଣ ଲୋକମାନେ ସମାଜର ପ୍ରଚଳିତ ବିଶ୍ୱାସ, ପରମ୍ପରା ଓ ଧର୍ମ ଧାରଣାକୁ ନିର୍ଦ୍ୱନ୍ଦ୍ୱରେ ଗ୍ରହଣ କରିନିଅନ୍ତି । ଏପରିକି ନିଜର ବିଶ୍ୱାସ ଗୁଡିକୁ ଗ୍ରହଣ କରିବା କ୍ଷେତ୍ରରେ ଭାବ ପ୍ରବଣତା ମଧ୍ୟ ପ୍ରକାଶ କରିଥାନ୍ତି । ସମାଜର ପ୍ରଚଳିତ ବିଶ୍ୱାସ ସକଳକୁ ବିନା ବିଚାରରେ ମାନିନେବା ଦ୍ୱାରା ସାମାଜିକ କ୍ଷୟଶୀଳତା ସୃଷ୍ଟି ହୋଇଥାଏ । ଏହି କ୍ଷୟଶୀଳତା ଅପ୍ରତିହତ ଭାବରେ ଗଡି ଚାଲିବା ଦ୍ୱାରା ସ୍ୱାଧୀନ ଚିନ୍ତା ବାଧା ପ୍ରାପ୍ତ ହେବା ସହିତ କୁସଂସ୍କାର ମଣିଷର ମାନସିକତାକୁ ଆବରଣ କରିନିଏ । ତଥାପି ମଣିଷ ଭିତରର ସୃଜନଶୀଳତା ଭିତରୁ ନୂତନ ଚିନ୍ତନ ଆରମ୍ଭ ହୁଏ । ସମାଜର ଜଣେ ଚିନ୍ତାଶୀଳ ବ୍ୟକ୍ତି ପ୍ରଚଳିତ ବିଶ୍ୱାସକୁ ପ୍ରଶ୍ନ କରି ବୈଜ୍ଞାନିକ ଓ ପ୍ରଚଳିତ ଧାରାରେ ପରିବର୍ତ୍ତନ ଆଣନ୍ତି । ନିଜର ସ୍ୱକୀୟ ଚିନ୍ତନଦ୍ୱାରା ସେମାନେ ପ୍ରଚଳିତ ବିଶ୍ୱାସକୁ ପ୍ରଶ୍ନ କରି ବୈଜ୍ଞାନିକ ଓ ତାର୍କିକ ମାନଦଣ୍ଡରେ ବିଶ୍ଳେଷଣ କରନ୍ତି । ସେହି ବିଶ୍ଳେଷଣରୁ ନୂତନ ଚିନ୍ତନର କ୍ଷେତ୍ର ପ୍ରସ୍ତୁତ ହୋଇଥାଏ । ବୈଚାରିକ ସ୍ତରରେ ବିପ୍ଳବ ଆନୟନ କରିବାରେ ସେମାନେ ପଥ ପ୍ରଦର୍ଶକ ହୁଅନ୍ତି । ହୁଏତ ନିଜର ସମସାମୟିକ ସମାଜରେ ସେମାନଙ୍କ ପ୍ରତି କଟାକ୍ଷ ପ୍ରକାଶ ପାଏ, କିନ୍ତୁ ସାମାଜିକ ବିକାଶ ଧାରାରେ ସେମାନେ ଯେଉଁ ନୂତନ ଚିନ୍ତନର ସୂତ୍ରପାତ କରିଥାନ୍ତି ତାହା କାଳକ୍ରମେ ବିଚାର କ୍ଷେତ୍ରରେ ଆଲୋଡନ ସୃଷ୍ଟି କରିଥାଏ । ସେହିମାନଙ୍କ ଚିନ୍ତନର ବୈଚାରିକ ଉତ୍କର୍ଷ ଆସ୍ତେ ଆସ୍ତେ ବୌଦ୍ଧିକ ସ୍ତରରେ ସ୍ୱୀକୃତ ହୋଇ ସାଧାରଣ ଜୀବନ ଧାରାରେ ପ୍ରତିଫଳିତ ହୁଏ । ସୁତରାଂ ମଣିଷର ବୌଦ୍ଧିକ ସୃଜନଶୀଳତା କେବେହେଲେ ରୁଦ୍ଧ ମାନସିକତା ଓ ଧର୍ମୀୟ ବିଶ୍ୱାସ ପାଖରେ ହାର ମାନିଯାଏ ନାହିଁ ।

**ଜୀବନୀ :**

ଜଣେ ବୈଜ୍ଞାନିକ ଓ ହେତୁବାଦୀ ଦୃଷ୍ଟିଭଙ୍ଗୀର ପୃଷ୍ଠପୋଷକ ଭାବରେ ଆବ୍ରାହମ କୋଭୁର ଏକ ସୁପରିଚିତ ନାମ । ନିଜର ଦୃଷ୍ଟିଭଙ୍ଗୀ ଓ ଆହ୍ୱାନ ପାଇଁ

ଆନ୍ତର୍ଜାତିକ ସ୍ତରରେ ମଧ୍ୟ ସେ ସୁବିଦିତ । ତାଙ୍କର ଜନ୍ମ କେରଳ ପ୍ରଦେଶସ୍ଥିତ ତିରୁଭାଲ୍ଲା ଗ୍ରାମରେ ଏକ ସମ୍ଭ୍ରାନ୍ତ ସିରିଏନ ଖ୍ରୀଷ୍ଟିଆନ ପରିବାରରେ ୧୦.୪.୧୮୯୮ରେ ହୋଇଥିଲା । ତାଙ୍କର ବାପା ଥୋମା କାଠାନୋର ଜଣେ ବୁଦ୍ଧିଜୀବୀ ଓ ଖ୍ରୀଷ୍ଟିଆନ ଧର୍ମଯାଜକ ଭାବରେ ସୁପରିଚିତ ଥିଲେ । ମାଲବାରର ସିରିଏନ ଚର୍ଚ୍ଚର ପ୍ରତିଷ୍ଠାତା ଭାବରେ ସେ କେରଳରେ ବେଶ୍ ଜଣାଶୁଣା । ଆବ୍ରାହାମ କୋଭୁରଙ୍କର ବାଲ୍ୟକାଳ ଏକ ରକ୍ଷଣଶୀଳ ଧର୍ମୀୟ ପରିବେଶରେ ଅତିବାହିତ ହୋଇଥିଲା । ସେ ତାଙ୍କ ବାପାଙ୍କ ଦ୍ୱାରା ପ୍ରତିଷ୍ଠା ହୋଇଥିବା ଉଚ୍ଚବିଦ୍ୟାଳୟରୁ ମେଟ୍ରିକୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ କଲିକତାସ୍ଥିତ ବଙ୍ଗବାସୀ ମହାବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ଜୀବ ବିଜ୍ଞାନରେ ସେ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିଥିଲେ । ନିଜର ଶିକ୍ଷା ସମାପ୍ତ ପରେ କେହାଞ୍ଚରୀ ଉଚ୍ଚ ବିଦ୍ୟାଳୟରେ ଗୋଟିଏ ବର୍ଷ ଶିକ୍ଷକତା କରିଥିଲେ । ଏହାପରେ ସେ କୋଟ୍ଟାୟାମସ୍ଥିତ ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । ଏହି ସମୟରେ ଶ୍ରୀଲଙ୍କାସ୍ଥିତ ଜାଫନା ସେଣ୍ଟ୍ରାଲ କଲେଜର ବିଶିଷ୍ଟ ଉଦ୍‌ଭିଦ ବିଜ୍ଞାନୀ ପି.ଟି.ଜେ୍ୟସଙ୍କ ସଂସ୍ପର୍ଶରେ ଆସିଲେ । ତାଙ୍କଦ୍ୱାରା ପ୍ରଭାବିତ ହୋଇ ସେ ଶ୍ରୀଲଙ୍କା ଯାଇ ୧୯୨୮ ମସିହାରେ ଜାଫନା ସେଣ୍ଟ୍ରାଲ କଲେଜରେ ଅଧ୍ୟାପକ ଭାବରେ ଯୋଗଦେଲେ । ୧୯୪୩ ମସିହାରେ ପ୍ରଫେସର ଜେ୍ୟସଙ୍କର ଅବସର ପରେ ସେ ଗାଲେସ୍ଥିତ ରିଚମଣ୍ଡ କଲେଜରେ କାର୍ଯ୍ୟକଲେ । ଏହାପରେ ମାଉଣ୍ଟ ଲାଭିନିଆରେ ଥିବା ସେଣ୍ଟ ଥୋମାସ କଲେଜରେ ଛ ବର୍ଷ କାର୍ଯ୍ୟ କରିଥିଲେ । ଶେଷରେ ୧୯୫୩ ମସିହାରେ ସେ କଲୋମ୍ବୋସ୍ଥିତ ଥୁର୍ଷ୍ଟାନ୍ କଲେଜରେ ପ୍ରାଧ୍ୟାପକ ଭାବରେ ଯୋଗ ଦେଇ ସେହି କଲେଜରୁ ବିଭାଗୀୟ ମୁଖ୍ୟ ଭାବେ ୧୯୫୯ ମସିହାରେ ଅବସର ଗ୍ରହଣ କଲେ ।

୧୯୭୨ ମସିହାରେ ଆମେରିକା ସ୍ଥିତ ମିନେସୋଟା ଇନ୍‌ଷ୍ଟିଚ୍ୟୁଟ ଅଫ ଫିଲୋସଫି ବିଭାଗରୁ ଡକ୍ଟରେଟ ଉପାଧି ଲାଭ କରିଥିଲେ । ମାନସିକ ପ୍ରକ୍ରିୟା ସଂକ୍ରାନ୍ତରେ ଗବେଷଣା ଯୋଗୁଁ ତାଙ୍କୁ ଏହି ଉପାଧି ଦିଆଯାଇଥିଲା ।

କୋଭୁରଙ୍କର ପାରିବାରିକ ଜୀବନ ଅତ୍ୟନ୍ତ ସୁଖପ୍ରଦ ଥିଲା । ତାଙ୍କର ବିବାହ ୧୯୨୫ରେ ଆକ୍କା ଦେବୀଙ୍କ ସହିତ ସଂପନ୍ନ ହୋଇଥିଲା । ନିଜ ଦୃଷ୍ଟିଭଙ୍ଗୀର ଏକ

ସହଧର୍ମିଣୀ ସିରିଏନ ଖ୍ରୀଷ୍ଟିଆନ ପରିବାରରୁ ପାଇବା କଷ୍ଟକର ଥିଲେ ବି ଆକ୍କାଦେବୀ ଯଥେଷ୍ଟ ସାଧୀନଚେତା ଥିଲେ । ତାଙ୍କର ବାପା, କେ.ଏମ.ଇଟି ଥିଲେ ଜଣେ ବିଚାରପତି ଓ ସେ ନିଜର କନ୍ୟାଙ୍କର ଦୃଷ୍ଟିଭଙ୍ଗୀକୁ ସାଧୀନ ଭାବରେ ବିକଶିତ ହେବାର ସୁଯୋଗ ଦେଇଥିଲେ । ଆବ୍ରାହମ ଆକ୍କାଙ୍କର ଦୃଷ୍ଟିଭଙ୍ଗୀ ସହ ପରିଚିତ ହେବା ପରେ ତାଙ୍କୁ ନିଜର ସହଧର୍ମିଣୀ ଭାବରେ ଗ୍ରହଣ କରିଥିଲେ । ସେମାନଙ୍କର ଏକମାତ୍ର ସନ୍ତାନ ଏରିସ କୋଭୁର ଏକ ସାଧୀନ ପରିବେଶରେ ଗଢି ଉଠିଥିଲେ । ପରେ ସେ ଜଣେ ବୈଜ୍ଞାନିକ ହୋଇ ଫ୍ରାନ୍ସର ଭଦ୍ର ମହିଳା ଅଧ୍ୟାପିକା ଜ୍ୟାକୁ ଲାଇନଙ୍କୁ ବିବାହ କଲେ ।

ଆବ୍ରାହମ କୋଭୁର ୧୯୫୯ରେ ଶ୍ରୀଲଙ୍କାର ନାଗରିକତ୍ୱ ଗ୍ରହଣ କରି କଲୋମ୍ବୋରେ ଜୀବନର ଶେଷ ପର୍ଯ୍ୟନ୍ତ ରହିଥିଲେ । ଏକ ପରିଣତ ବୟସରେ ୧୯୭୮ ମସିହା ସେପ୍ଟେମ୍ବର ୧୮ରେ ସେ ମୃତ୍ୟୁ ବରଣ କଲେ । ନିଜର କର୍ମ ବହୁଳ ଜୀବନ ଭିତରେ ସେ ପୃଥିବୀର ବିଭିନ୍ନ ଦେଶ ଭ୍ରମଣ କରିଛନ୍ତି ଓ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଭାଷଣ ଦେଇଛନ୍ତି । ଏତଦ୍‌ବ୍ୟତୀତ ଆନ୍ତର୍ଜାତିକ ହେତୁବାଦୀ ଓ ସାଧୀନଚିନ୍ତକ ସମ୍ମିଳନୀ ମାନଙ୍କରେ ପ୍ରତିନିଧିତ୍ୱ କରିଛନ୍ତି । ତାଙ୍କର ଜୀବନକାଳ କର୍ମବହୁଳ ଓ ଗବେଷଣା ଜନିତ ଅନ୍ୱେଷଣରେ ଅଭିପ୍ରେତ ଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ଗବେଷଣା ଓ ସତ୍ୟ ଅନୁସନ୍ଧାନରେ ବ୍ରତୀ ହେବା ସହିତ କୁସଂସ୍କାର ବିଲୋପ ପାଇଁ ସେ ଉତ୍ସର୍ଗୀକୃତ ଭାବରେ କାର୍ଯ୍ୟ କରିଥିଲେ ।

## ବ୍ୟକ୍ତିତ୍ୱର ଝଲକ :

କୋଭୁର ଏକ ରକ୍ଷଣଶୀଳ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ସାଧୀନ ଦୃଷ୍ଟିଭଙ୍ଗୀ ବିକାଶ ହେବା ପର୍ଯ୍ୟନ୍ତ ପାରିବାରିକ ଜୀବନରୁ ଧର୍ମର ପ୍ରଭାବ ତାଙ୍କ ଉପରେ ପଡିଥିଲା । ତଥାପି ପିଲାଟି ବେଳୁ ସେ ଯଥେଷ୍ଟ ସାଧୀନଚେତା ଥିଲେ ଓ ଏକ କୌତୂହଳ ମନୋବୃତ୍ତି ପୋଷଣ କରୁଥିଲେ । ତାଙ୍କ ଜୀବନର କେତୋଟି ଘଟଣାରୁ ତାଙ୍କ ଭିତରେ ରହିଥିବା ସାଧୀନ ଦୃଷ୍ଟିଭଙ୍ଗୀର ଆଭାସ ମିଳିଥାଏ । ହାଇସ୍କୁଲର ଛାତ୍ର ଥିବାବେଳେ ଏକଦା ସେ ତାଙ୍କର ବଡ ନାନୀଙ୍କ ଘରକୁ ଗୋଟିଏ ସପ୍ତାହ ପାଇଁ ବୁଲିଯାଇଥିଲେ । ତାଙ୍କର ବଡ ନାନୀ ତାଙ୍କ ବାପାଙ୍କର ପ୍ରଥମ ପତ୍ନୀଙ୍କର

ଝିଅ ଥିଲେ ଓ କୋଭୁର ତାଙ୍କଠାରୁ ବୟସରେ ଯଥେଷ୍ଟ ସାନ ଥିଲେ । ଫଳରେ ନିଜ ନାନୀଙ୍କୁ ସେ ଆମ୍ମା ଡାକୁଥିଲେ । ସେଠାରେ ଥିବାବେଳେ ତାଙ୍କର ଆମ୍ମା ଦିନେ ତାଙ୍କୁ ଏକ ଔଷଧ ଦେଇ କହିଲେ ଯେ ସେ ରାତିରେ ଅନେକ କାଶୁଥିବା ଯୋଗୁଁ ସେହି ଔଷଧ ଖାଇବା ଦରକାର । ଔଷଧ ଖାଇବା ପୂର୍ବରୁ ସେ ପ୍ରଭୁ ଯୀଶୁଙ୍କର ନାମ ନେଇ ପ୍ରାର୍ଥନା କରି ଖାଇବାକୁ କହିଥିଲେ । କୋଭୁର ନିଜର ଦୁଷ୍ଟାମି ଢଙ୍ଗରେ ଆମ୍ମାଙ୍କୁ ଉତ୍ତର ଦେଲେ ଯେ ସେ ଏବେ ଔଷଧ ଖାଇବେ । ଔଷଧଦ୍ୱାରା ତାଙ୍କର କାଶ ଯଦି ଭଲ ନହୁଏ ତେବେ ସେ ଆରୋଗ୍ୟ ପାଇଁ ପ୍ରଭୁ ଯୀଶୁଙ୍କୁ ପ୍ରାର୍ଥନା କରିବେ । ତାଙ୍କର ଏହି ବକ୍ତବ୍ୟରେ ଆମ୍ମା ଆଶ୍ଚର୍ଯ୍ୟ ହୋଇ କହିଥିଲେ ଯେ ତାଙ୍କ ପରି ଏକ ନାସ୍ତିକ ପୁତ୍ର କିପରି ତାଙ୍କର ଧର୍ମପ୍ରାଣ ବାପାଙ୍କଠାରୁ ଜନ୍ମ ହେଲା ।

ସେ ଯଥେଷ୍ଟ ସ୍ୱାଧୀନ ଚେତା ଥିଲେ ବି ନିଜର ଦୃଷ୍ଟିଭଙ୍ଗୀକୁ କାହା ଉପରେ ଲଦି ଦେଉନଥିଲେ । କୌଣସି ସଙ୍କୁଚିତ ଦୃଷ୍ଟିଭଙ୍ଗୀ ନେଇ ନିଜର ଭାବଧାରାକୁ ଅନ୍ୟ ଉପରେ ଲଦି ଦେବା ତାଙ୍କ ସ୍ୱଭାବ ବିରୋଧୀ ଥିଲା । ସେ ଖ୍ରୀଷ୍ଟିଆନ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ନିଜର ଧର୍ମକୁ ପତ୍ୟାଖ୍ୟାନ କରିଥିଲେ । ଖ୍ରୀଷ୍ଟିଆନ ଧର୍ମର ମୌଳିକ ବିଶ୍ୱାସ ଓ ବାଇବେଲରେ ବର୍ଣ୍ଣିତ ବିଷୟକୁ ନିଜର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଭିତରେ ସେ ଗ୍ରହଣ କରିପାରୁ ନଥିଲେ । ତଥାପି ତାଙ୍କ ପୁଅର ସ୍ୱାଧୀନ ଦୃଷ୍ଟିଭଙ୍ଗୀର ବିକାଶ ଦିଗରେ ସେ ଅନ୍ତରାୟ ହେଉନଥିଲେ । ତାଙ୍କର ପତ୍ନୀ ଏକଦା ପୁଅ ଏରିସ ଚର୍ଚ୍ଚକୁ ଯାଉଥିବା ବିଷୟ ତାଙ୍କ ଦୃଷ୍ଟିକୁ ଆଣିଥିଲେ । ଏହା ଜାଣିବାପରେ ଏଥିରେ ପ୍ରତିବନ୍ଧକ ନହବାକୁ ଓ ନିଜ ପୁତ୍ରର ଧର୍ମଗତ ବିଶ୍ୱାସ ପାଇଁ ସ୍ୱାଧୀନତା ଦେବାକୁ ନିଜର ପତ୍ନୀଙ୍କୁ ପରାମର୍ଶ ଦେଇଥିଲେ । କିନ୍ତୁ ସେମାନେ ପରେ ଜାଣିଲେ ଯେ ଚର୍ଚ୍ଚକୁ ଯିବା ପଶ୍ଚାତରେ ଏରିସ୍‌ଙ୍କର କୌଣସି ଧର୍ମବିଶ୍ୱାସ ନଥିଲା, ପରନ୍ତୁ କେତେକ ଝିଅଙ୍କ ସହ ବନ୍ଧୁତା ସ୍ଥାପନ କରିବା ଉଦ୍ଦେଶ୍ୟ ଥିଲା ।

ନିଜ ଦୃଷ୍ଟିଭଙ୍ଗୀରେ ସେ ଥିଲେ ମାନବବାଦୀ । ଜାତି ପ୍ରଥା, ଉଚ୍ଚ ନୀଚ ଭେଦଭାବ ଓ ଅସ୍ପୃଶ୍ୟତାର ସେ ଥିଲେ ବିରୋଧୀ । କିଶୋର ବୟସର ଗୋଟିଏ ଘଟଣାରୁ ତାଙ୍କର ଏହି ଦୃଷ୍ଟିକୋଣର ଯଥେଷ୍ଟ ଆଭାସ ମିଳିଥାଏ । ସେତେବେଳର ସମାଜରେ ଅସ୍ପୃଶ୍ୟତା ଯଥେଷ୍ଟ ରହିଥିଲା । କେରଳର ଗାଁ ମାନଙ୍କରେ ବ୍ରାହ୍ମଣମାନେ ରାସ୍ତାରେ ଯିବା ସମୟରେ ପାଟି କରି ଏକ ସୂଚନା ଦେଉଥିଲେ । କୌଣସି

ଅସ୍ପୃଶ୍ୟଙ୍କର ଛାଇ ବ୍ରାହ୍ମଣମାନଙ୍କ ପାଇଁ ଅପବିତ୍ରତାର କାରଣ ଥିଲା । କୋଭୁର ନିଜ କ୍ଷେତକୁ ଯିବା ଅବସରରେ ବାଟରେ ଗୋଟିଏ ଛୋଟ ନଦୀ ପାରି ହେଉଥିଲେ । ଗୋଟିଏ ହୁଲି ଡଙ୍ଗାରେ ତାହା ଅତିକ୍ରମ କରିବାକୁ ପଡୁଥିଲା । ନିଜ ପରିବାରର ଜଣେ ହଳିଆଙ୍କ ସହ ଯିବା ପାଇଁ ଥରେ ସେ ଘାଟ ପାଖରେ ପହଞ୍ଚିଥିଲେ । ସେଠି କୌଣସି ନାଉରୀ ନ ଥିଲେ, କେବଳ ଛୋଟ ଡଙ୍ଗାଟିଏ ରହିଥିଲା । ଜଣେ ନମ୍ବୁଦ୍ରୀ ବ୍ରାହ୍ମଣ ସେଠାରେ ପହଞ୍ଚି ଡଙ୍ଗାରେ ତାଙ୍କୁ ନଦୀର ଆରପଟରେ ଛାଡି ଦେବାକୁ କହିଲେ ଓ ଡଙ୍ଗା ଫେରାଇ ଆଣି ତାଙ୍କର ହଳିଆଙ୍କ ସହ ଯିବା ପାଇଁ ଚାହିଁଲେ, କାରଣ ଅସ୍ପୃଶ୍ୟ ଲୋକଟି ସହିତ ଏକା ନାଆରେ ପାରିହେବା ତାଙ୍କ ପାଇଁ ଅପବିତ୍ର ଥିଲା । କୋଭୁର ନିଜ ହଳିଆଙ୍କୁ ଡଙ୍ଗା ଭିତରକୁ ଜବରଦସ୍ତ ଟାଣିନେବା ଦ୍ୱାରା ଅପବିତ୍ର ହୋଇଗଲେ ଭାବି ବ୍ରାହ୍ମଣ ଜଣଙ୍କ ନଦୀ ଭିତରକୁ ଡେଇଁ ପଡିଲେ । ସେଠାରେ ପାଣିର ଗଭୀରତା ଅଧିକ ଥିବାରୁ ଓ ବ୍ରାହ୍ମଣ ଜଣକ ପହଁରି ନ ଶିଖିଥିବା ହେତୁ ପାଣିରେ ବୁଡିଗଲେ । ନଦୀ ଭିତରୁ ବ୍ରାହ୍ମଣଙ୍କୁ ଉଦ୍ଧାର କରିବା ପାଇଁ କୋଭୁର ତତ୍‌କ୍ଷଣାତ୍ ତାଙ୍କ ହଳିଆଙ୍କୁ କହିଲେ । ହଳିଆ ଜଣଙ୍କ ପହଁରିବାରେ ଧୂରୀଣ ଥିବାରୁ ପାଣି ଭିତରକୁ ଡେଇଁ ବ୍ରାହ୍ମଣ ଜଣଙ୍କୁ ଉଦ୍ଧାର କରିଥିଲେ । ସେ ଉଦ୍ଧାର ପାଇବାପରେ ତାଙ୍କୁ ସମବେଦନା ଜଣାଇ ବ୍ୟଙ୍ଗ ମିଶା ଢଙ୍ଗରେ କୋଭୁର ମନ୍ତବ୍ୟ ଦେଲେ, ସେ ଜଣେ ଅସ୍ପୃଶ୍ୟ ଦ୍ୱାରା ଉଦ୍ଧାର ହୋଇଥିବାରୁ ନିଶ୍ଚୟ ଅପବିତ୍ର ହୋଇଛନ୍ତି; ସେଥିପାଇଁ ଆଉ ଥରେ ସ୍ନାନ କରିବା ଆବଶ୍ୟକ । ଏହିପରି ଛୋଟ ଛୋଟ ଘଟଣାରୁ ତାଙ୍କର ସଂସ୍କାରବାଦୀ ଦୃଷ୍ଟିଭଙ୍ଗୀ ଓ ଦୃଢତାର ସୂଚନା ମିଳେ ।

କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ କରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ କରାଇବା ତାଙ୍କର ଜୀବନବ୍ୟାପୀ ଲକ୍ଷ୍ୟ ହୋଇ ରହିଥିଲା । ଏକ ମୁକ୍ତ ମନ ନେଇ ଅଲୌକିକ ଶକ୍ତିର ଅସ୍ତିତ୍ୱ ସମ୍ପର୍କରେ ପରୀକ୍ଷା କରିବାକୁ ସେ ସର୍ବଦା ଆଗଭର ଥିଲେ । ଅଶରୀର ଆତ୍ମା, ଭୂତ, ପ୍ରେତ ଇତ୍ୟାଦିର ଅସ୍ତିତ୍ୱ ସମ୍ପର୍କରେ କୌତୂହଳୀ ହୋଇ ସେ ବହୁ ଶ୍ମଶାନ ଓ ବିଶ୍ୱାସ କରାଯାଉଥିବା ଭୂତକୋଠି ଇତ୍ୟାଦି ସ୍ଥାନମାନଙ୍କୁ ଯାଇ ନିରୋଳାରେ ସେଠାରେ ସମୟ କଟାଉଥିଲେ । ଏହି ସବୁ କରିବା ପଶ୍ଚାତରେ ତାଙ୍କର ଉଦ୍ଦେଶ୍ୟ ଥିଲା ସାଧାରଣରେ ବିଶ୍ୱାସ ଥିବା ଅଲୌକିକ ଶକ୍ତି ବା ସେପରି କିଛି ଭୂତ, ପ୍ରେତର ସନ୍ଧାନ ପାଇବା । କିନ୍ତୁ ବର୍ଷ ବର୍ଷ ଧରି ସେ ତାଙ୍କର ପ୍ରଚେଷ୍ଟା ଚାଲୁ ରଖିଲେ

ବି ସେପରି କିଛି ପ୍ରତ୍ୟକ୍ଷ କରିପାରି ନଥିଲେ । ନିଜର ବୈଜ୍ଞାନିକ ଗବେଷଣା ଓ ଅନୁସନ୍ଧିତ୍ସା ଦ୍ୱାରା ସେ ଏ ପ୍ରକାର ସିଦ୍ଧାନ୍ତକୁ ଆସିଥିଲେ ଯେ ଚମତ୍କାରିତା ବା ଅଲୌକିକ ଶକ୍ତି (Miracle) ବୋଲି କିଛି ନାହିଁ । ନିଜର ଏହି ଦୃଢ଼ ପ୍ରତ୍ୟୟକୁ ଏକ ଜୀବନ ଦର୍ଶନ ଭାବରେ ଗ୍ରହଣ କରି ସେହି ଆଦର୍ଶରେ ପରିଚାଳିତ ହୋଇଥିଲେ । ତାଙ୍କ ଜୀବନର କେତୋଟି ଘଟଣାରୁ ତାଙ୍କ ଆତ୍ମବିଶ୍ୱାସର ଦୃଢ଼ତା ଜଣାପଡେ ।

୧୯୫୯ ମସିହାରେ ସେ ହୃଦ୍ ରୋଗରେ ଆକ୍ରାନ୍ତ ହୋଇ କଲୋମ୍ବୋସ୍ଥିତ ଏକ ସରକାରୀ ଚିକିତ୍ସାଳୟରେ ଚିକିତ୍ସିତ ହେଉଥାନ୍ତି । ତାଙ୍କ ପ୍ରକୋଷ୍ଠରେ ଆଉ ଦୁଇଜଣ ବ୍ୟକ୍ତି ମଧ୍ୟ ଚିକିତ୍ସିତ ହେଉଥାନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଥାନ୍ତି ଗୋଟିଏ ରାଜନୈତିକ ଦଳର ପ୍ରମୁଖ ନେତା ଓ ଅନ୍ୟ ଜଣଙ୍କ ଥାନ୍ତି ଜଣେ ଖ୍ରୀଷ୍ଟିଆନ ପାଦ୍ରୀ ।

ପାଦ୍ରୀଙ୍କର ଆରୋଗ୍ୟ ପାଇଁ ପ୍ରାର୍ଥନା କରିବାକୁ ବିଶପ୍ ରେଭରେଣ୍ଡ ରୋଲ ଗ୍ରାହାମ ସେଠାକୁ ଏକଦା ଆସି ପାଦ୍ରୀଙ୍କ ପାଇଁ ଭଗବାନ ଯୀଶୁଙ୍କୁ ପ୍ରାର୍ଥନା କଲେ । ଏହାପରେ ସେ କୋଭୁରଙ୍କର ଶଯ୍ୟା ନିକଟକୁ ଆସି ତାଙ୍କ ପାଇଁ ପ୍ରାର୍ଥନା କରିବେ କି ବୋଲି ତାଙ୍କର ଅନୁମତି ଲୋଡିଲେ । ସେହି ସମୟରେ କୋଭୁର ଡଃ କିଂସେଙ୍କର ଏକ ପୁସ୍ତକ 'ଆମେରିକା ଯୁବକଙ୍କର ଯୌନ ଆଚରଣ' ପଢୁଥିଲେ । ପୁସ୍ତକଟି ଉପରେ ବିଶପ୍‌ଙ୍କର ଆଖି ପଡିଲା ମାତ୍ରେ ସେ ମନ୍ତବ୍ୟ ଦେଲେ ଯେ କୋଭୁର ଏକ ବିବାଦମାନ ପୁସ୍ତକ ପଢୁଛନ୍ତି । ସେହି ବକ୍ତବ୍ୟର ପ୍ରତିକ୍ରିୟାରେ କୋଭୁର ଉତ୍ତର ଦେଲେ ଯେ ସେ ପଢୁଥିବା ପୁସ୍ତକଟି ଅନେକ ବାସ୍ତବ ଘଟଣା ଓ ବସ୍ତୁନିଷ୍ଠ ଅନୁଶୀଳନ ଉପରେ ପର୍ଯ୍ୟବସିତ, ସୁତରାଂ ତାହା ବିବାଦମାନ ନୁହଁ । ପରନ୍ତୁ ବିଶପଙ୍କ ହାତରେ ଥିବା ବାଇବେଲ ସବୁଠାରୁ ଅଧିକ ବିବାଦମାନ ପୁସ୍ତକ କାରଣ ତାହାର ନିଷ୍କର୍ଷ ଗୁଡିକ ବୈଜ୍ଞାନିକ ଭିତ୍ତି ଉପରେ ପର୍ଯ୍ୟବସିତ ନଥାଇ ଆଈ ମା କାହାଣୀ ସଦୃଶ ଅଟେ । ନିଜର ଆରୋଗ୍ୟ ସମ୍ପର୍କରେ ମନ୍ତବ୍ୟ ଦେଇ ସେ କହିଲେ ଯେ ଯଦି ପ୍ରାର୍ଥନା ଦ୍ୱାରା ରୋଗକୁ ଭଲ କରାଯାଇ ପାରୁଥାନ୍ତା ତେବେ ପାଦ୍ରୀ ଜଣଙ୍କୁ ସେଠାକୁ ଆସିବାକୁ ଆବଶ୍ୟକ ହୋଇ ନଥାନ୍ତା, ବରଂ ଚିକିତ୍ସା ବିଜ୍ଞାନ ବିକାଶ ଯୋଗୁଁ ହୃଦରୋଗ ଭଳି ମାରାତ୍ମକ ବ୍ୟାଧିକୁ ଆରୋଗ୍ୟ କରିବା ସମ୍ଭବପର ହୋଇପାରୁଛି ।

ଜଣେ ଅଧ୍ୟାପକ ଭାବରେ ସେ ଛାତ୍ର ମହଲରେ ବେଶ୍ ଆଦରଲାଭ କରିଥିଲେ । ଶୁଦ୍ଧ ଉଚ୍ଚାରଣ, ସାବଲୀଳ ସ୍ୱର ଓ ବିଚାରର ଦୃଢ଼ତା ଯୋଗୁଁ ସେ ଛାତ୍ର ମାନଙ୍କର ଅତି ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ତାଙ୍କର ଏକ ଆକର୍ଷଣୀୟ ବ୍ୟକ୍ତିତ୍ୱ ମଧ୍ୟ ଥିଲା । କୌଣସି ସଭା ସମିତିରେ ଭାଷଣ ଦେବା ବେଳେ ସେ ଶ୍ରୋତାମାନଙ୍କୁ ବେଶ୍ ପ୍ରଭାବିତ କରି ପାରୁଥିଲେ । ଗଭୀର ଆତ୍ମ ବିଶ୍ୱାସ, ସାହସ ଓ ସତ୍ୟ ପ୍ରତିଷ୍ଠା ପାଇଁ ଉତ୍ସର୍ଗୀକୃତ ମନୋଭାବ ତାଙ୍କୁ ସାଧାରଣରେ ସୁପରିଚିତ କରିଥିଲା । ଶ୍ରୀଲଙ୍କାର ଶିକ୍ଷିତ ଓ ବୁଦ୍ଧିଜୀବୀ ମହଲରେ ସେ ବେଶ୍ ସୁପରିଚିତ ଥିଲେ । ଜଣେ ବୁଦ୍ଧିଜୀବୀ ବା ବୈଜ୍ଞାନିକ ବ୍ୟତୀତ ତାଙ୍କର ନୈତିକ ଆଦର୍ଶବୋଧ ପାଇଁ ସେ ଅନେକଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ନିଜର ଦୃଢ଼ ଆତ୍ମ ବିଶ୍ୱାସ ଭିତରେ ନାନା କୁସଂସ୍କାର ଓ ଅନ୍ଧ ବିଶ୍ୱାସକୁ ସମାଲୋଚନା କରିବାବେଳେ ପ୍ରତିପକ୍ଷଙ୍କର ବ୍ୟକ୍ତିଗତ ଜୀବନ ପ୍ରତି କୌଣସି ଆକ୍ଷେପ କରୁନଥିଲେ । ଅଧ୍ୟାପନା ଜୀବନ ସହିତ ଶ୍ରୀଲଙ୍କାରେ ହେତୁବାଦୀ ସମାଜ (Rationalist Society) ଗଠନ କରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ପାଇଁ ସାମାଜିକ କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ ରଖିଥିଲେ । ହେତୁବାଦ ଓ ମାନବବାଦ ତାଙ୍କ ପାଇଁ ଜୀବନର ଦୁଇଟି ଉଚ୍ଚ ଆଦର୍ଶ ଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ନିଜର ଆଦର୍ଶ ପ୍ରତି ଅଙ୍ଗୀକାର ରହି ସେ କାର୍ଯ୍ୟ କରିଛନ୍ତି ।

ଜାଫନା କେନ୍ଦ୍ରୀୟ ମହାବିଦ୍ୟାଳୟରେ ଅଧ୍ୟାପକ ଥିବାବେଳେ ଉଦ୍‌ଭିଦ ବିଜ୍ଞାନ ସହିତ ଏକଦା ଧର୍ମଶାସ୍ତ୍ର ପଢ଼ାଇବାକୁ ତାଙ୍କୁ କୁହାଯାଇଥିଲା । ସେ ବର୍ଷ ପରୀକ୍ଷା ଦେଇଥିବା ସମସ୍ତ ଛାତ୍ରଛାତ୍ରୀମାନେ ଧର୍ମଶାସ୍ତ୍ରରେ, ଯାହା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟକୁ ମୂଲ୍ୟାୟନ ପାଇଁ ପଠାଯାଇଥିଲା, ଉତ୍ତୀର୍ଣ୍ଣ ହେବା ସହ ଭଲ ନମ୍ବର ରଖିଥିଲେ । କିନ୍ତୁ ପରବର୍ଷ ଅଧ୍ୟକ୍ଷ ତାଙ୍କଠାରୁ ଧର୍ମଶାସ୍ତ୍ର ବିଷୟଟି କାଢ଼ି ନେଇ ଅନ୍ୟ ଜଣେ ଅଧ୍ୟାପକଙ୍କୁ ପଢ଼ାଇବାକୁ ଦେଇଥିଲେ । କାରଣ ସମ୍ପର୍କରେ ତାଙ୍କୁ କୁହାଯାଇଥିଲା ଯେ ଯଦିବା ସମସ୍ତ ଛାତ୍ରଛାତ୍ରୀ ଧର୍ମଶାସ୍ତ୍ରରେ ଉତ୍ତୀର୍ଣ୍ଣ ହୋଇଛନ୍ତି କିନ୍ତୁ ସେମାନେ ନିଜର ଧର୍ମ ହରାଇଛନ୍ତି । ଯେକୌଣସି ବିଷୟ ପଢ଼ାଇବାବେଳେ ସେ ଛାତ୍ରମାନଙ୍କ ଭିତରେ କୌତୂହଳ ମନୋଭାବ ସୃଷ୍ଟି କରୁଥିଲେ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରିବା ଦ୍ୱାରା ଧର୍ମଶାସ୍ତ୍ରର ବିଷୟ ଗୁଡିକର ସତ୍ୟାସତ୍ୟ ନେଇ ପରୀକ୍ଷା କରିବାକୁ ସେ ଶିକ୍ଷାର୍ଥୀମାନଙ୍କୁ ପରାମର୍ଶ ଦେଉଥିଲେ ।

ସେ ହେଉଛନ୍ତି ଏସିଆର ଏକମାତ୍ର ବୈଜ୍ଞାନିକ ଯାହାଙ୍କୁ ଆମେରିକାର ଏକ ବୈଜ୍ଞାନିକ ଦଳ ଭିତରେ ଯୋଗଦେଇ ଭାରତ ମହାସାଗରରେ ଜୈବିକ ବିବର୍ତ୍ତନବାଦ ଉପରେ ତଥ୍ୟ ସଂଗ୍ରହ ପାଇଁ ଏକ ଅନୁଧ୍ୟାନକାରୀ ଦଳରେ ଯିବାକୁ ନିମନ୍ତ୍ରଣ କରାଯାଇଥିଲା । ତାଙ୍କର ପତ୍ନୀ ଆକ୍କା ଦେବୀଙ୍କର ଅସୁସ୍ଥତା ଓ ମୃତ୍ୟୁ ଯୋଗୁଁ ସେ ସେହି ଅନୁସନ୍ଧାନକାରୀ ଦଳରେ ଯାଇପାରିନଥିଲେ । ତାଙ୍କର ପ୍ରତିଭା ଯେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହୋଇଥିଲା ଏହା ଏଥିରୁ ଅନୁମେୟ ।

୧୯୭୪ ନଭେମ୍ବରରେ ତାଙ୍କ ପତ୍ନୀଙ୍କର ବିୟୋଗ ହେଲା । ପତ୍ନୀଙ୍କର ଇଛା ଅନୁଯାୟୀ ମୃତ୍ୟୁପରେ ତାଙ୍କ ଶରୀରକୁ ଏକ ସରକାରୀ ଡାକ୍ତରଖାନାକୁ ହସ୍ତାନ୍ତର କରି ଦିଆଯାଇଥିଲା । ଶୁଦ୍ଧିକ୍ରିୟା ବା ଆତ୍ମାର ସଦ୍‌ଗତି ପାଇଁ କୌଣସି ଧର୍ମୀୟ ଉପଚାର ପାଳନ ହୋଇନଥିଲା । କୋଭୁର ଏ ସଂକ୍ରାନ୍ତରେ ମନ୍ତବ୍ୟ ଦେଇ କହିଥିଲେ ଯେ ତାଙ୍କ ପତ୍ନୀ କୌଣସି ଆତ୍ମା ଛାଡି ଯାଇନାହାନ୍ତି । ମୃତ୍ୟୁ ପୂର୍ବରୁ ସେ ମଧ୍ୟ ଇଛା ପ୍ରକାଶ କରିଥିଲେ ଯେ ମୃତ୍ୟୁପରେ ଆତ୍ମାର ସ୍ଥିତି ବିଷୟରେ ଧର୍ମଗ୍ରନ୍ଥ ମାନଙ୍କରେ ଯାହା ବର୍ଣ୍ଣନା କରାଯାଇଛି ତାହା କେବଳ କାଳ୍ପନିକ ବିଶ୍ୱାସ ମାତ୍ର, ତାହା କୌଣସି ସତ୍ୟ ଉପରେ ଆଧାରିତ ନୁହେଁ । ସୁତରାଂ ମୃତ୍ୟୁପରେ ତାଙ୍କର ଚକ୍ଷୁକୁ କୌଣସି ଦୃଷ୍ଟିହୀନ ଲୋକଠାରେ ରୋପଣ କରାଯିବ ଓ ତାଙ୍କର ଶରୀରକୁ ଗବେଷଣା ପାଇଁ ଏକ ମେଡିକାଲ କଲେଜକୁ ହସ୍ତାନ୍ତର କରାଯିବ । ତାଙ୍କ ପାଇଁ କୌଣସି ଶୁଦ୍ଧିକ୍ରିୟା ଜନିତ ଔପଚାରିକତା ପାଳନ କରାଯିବ ନାହିଁ । ଏପରିକି ମୃତ୍ୟୁ ପରେ ସେ ଯେ ଅନ୍ୟର ଉପକାରରେ ଆସି ପାରିବେ ଏହା ତାଙ୍କର ବିଶ୍ୱାସ ଥିଲା । ନିଜ ଜୀବନରେ ମାନବବାଦକୁ ସେ ପ୍ରତ୍ୟେକ ସ୍ତରରେ ପ୍ରୟୋଗ କରୁଥିଲେ ।

ନିଜ ଜନ୍ମ ସମ୍ପର୍କରେ କୋଭୁର ମନ୍ତବ୍ୟ ଦେଇ କହିଥିଲେ ଯେ ତାଙ୍କର ଜନ୍ମ, ଜାତୀୟତା, ଭାଷା, ଧର୍ମ ଏସବୁ ଆକସ୍ମିକ ବ୍ୟାପାର ମାତ୍ର । ତାଙ୍କ ବାପା, ମା'ଙ୍କର ଏକ ଦୈହିକ ସମ୍ପର୍କର ଜୈବିକ ପରିଣାମରୁ ତାଙ୍କର ଜନ୍ମ ଯାହା ଉପରେ ତାଙ୍କର କୌଣସି ନିୟନ୍ତ୍ରଣ ନଥିଲା । ସେହିପରି ଉତ୍ତରାଧିକାରୀ ସୂତ୍ରରେ ସେ ବାପା, ମା'ଙ୍କର ଭାଷା ଓ ଧର୍ମଦ୍ୱାରା ସାମାଜିକ ପରିଚୟ ପାଇଥିଲେ । କିନ୍ତୁ ନିଜେ ସଚେତନ ହେବା ପରେ ତାଙ୍କର ବ୍ୟକ୍ତିତ୍ୱ ପାଇଁ ସେ ନିଜେ ହିଁ ଦାୟୀ । ସେ ସଚେତନ ଭାବରେ ନିଜର ଧର୍ମକୁ ପ୍ରତ୍ୟାଖ୍ୟାନ କରିଥିଲେ । ଯଦିବା ସେ ଗୋଟିଏ ଦେଶରେ ଜନ୍ମ ହୋଇଥିଲେ

ତଥାପି ନିଜର କର୍ମମୟ ଜୀବନ ପରିପ୍ରେକ୍ଷୀରେ ଅନ୍ୟ ଏକ ଦେଶର ନାଗରିକତ୍ୱ ଗ୍ରହଣ କରିଥିଲେ । ଧର୍ମ, ଭାଷା ବା ଜାତୀୟତାକୁ ନେଇ ସାମ୍ପ୍ରଦାୟିକ ଦୃଷ୍ଟିଭଙ୍ଗୀ ବା ମାନବ ସମାଜରେ ବିଭେଦ ସୃଷ୍ଟି କରିବା ତାଙ୍କ ମତରେ ଏକ ଦୁଃଖଦାୟକ ଘଟଣା ଅଟେ । ମାନବ ସମାଜର ଏକତ୍ୱ ଉପରେ ତାଙ୍କର ଗଭୀର ବିଶ୍ୱାସ ଥିଲା । ଜାତି, ଭାଷା, ଜାତୀୟତା ଓ ଧର୍ମର ଉର୍ଦ୍ଧ୍ୱକୁ ଯାଇ ସମଗ୍ର ମାନବ ଜାତିର ଏକତ୍ୱକୁ ଗ୍ରହଣ କରିବା ତାଙ୍କ ବ୍ୟକ୍ତିତ୍ୱର ଏକ ଉଲ୍ଲେଖନୀୟ ମହତ୍ତ୍ୱ ଅଟେ ।

ତାଙ୍କ ପରିବାର ସମ୍ପର୍କରେ ସେ କହିଛନ୍ତି ଯେ ତାଙ୍କ ଜେଜେ ବାପା ଖ୍ରୀଷ୍ଟିଆନ ଧର୍ମାବଲମ୍ବୀ ଥିଲେ ଓ କେବଳ ମାଲାୟାଲମ ଭାଷା ଜାଣିଥିଲେ । ତାଙ୍କ ବାପା ଜଣେ ଧର୍ମଯାଜକ ରହିଥିଲେ ଓ ପାଞ୍ଚଟି ଭାଷା ଶିଖିଥିଲେ । ସେ ନିଜେ ଧର୍ମକୁ ପ୍ରତ୍ୟାଖ୍ୟାନ କରିଥିଲେ ଓ ତାଙ୍କର ମାତୃଭାଷା ମାଲାୟାଲମକୁ ଛାଡି ଆଉ ଚାରୋଟି ଭାଷା ଭଲ ଭାବରେ କହିପାରୁଥିଲେ ।  ତାଙ୍କର ପୁତ୍ର ଏରିସ କୌଣସି ଧର୍ମ ବିଶ୍ୱାସ ରଖୁନଥିଲେ ଓ ଏପରିକି ମାଲାୟାଲମ ଭାଷା ମଧ୍ୟ ଜାଣିନଥିଲେ, କିନ୍ତୁ ବହୁତ ଗୁଡିଏ ୟୁରୋପୀୟ ଭାଷା ଜାଣିଥିଲେ । ତାଙ୍କର ନାତିମାନେ କୌଣସି ଧର୍ମର ନହୋଇ କେବଳ ମାତ୍ର ଫରାସୀ ଭାଷା ଜାଣିଥିଲେ । ସେମାନେ ଗୋଟିଏ ବଂଶର ବ୍ୟକ୍ତି, ଯଦିବା କୋଭୁରଙ୍କର କୌଣସି ପୂର୍ବ ପୁରୁଷ ଜୀବିତ ନାହାନ୍ତି । ନିଜର ମାତୃଭାଷା ମାଲାୟାଲମ ପାଇଁ କୌଣସି  ବିଦ୍ୱେଷ ରଖିବା କିମ୍ବା ନିଜର ନାତିମାନଙ୍କର ଭାଷା ପାଇଁ ଗର୍ବ ଅନୁଭବ କରିବା ହାସ୍ୟାସ୍ପଦ ଅଟେ । ତାଙ୍କର ନାତିମାନେ ଇଂରାଜୀ, ସିଂହଳୀ, ତାମିଲ ବା ମାଲାୟାଲମ ଭାଷାକୁ ନେଇ- ଯାହା ସେମାନଙ୍କ ପୂର୍ବ ପୁରୁଷଙ୍କର ଭାଷା ଥିଲା- ଗର୍ବ କରିବା କୌଣସି ଭାବେ ସମୀଚୀନ ନୁହେଁ । ଭାଷା ପରିପ୍ରେକ୍ଷୀରେ ଯାହା କୁହାଗଲା, ତାହା ଜାତି ଓ ଧର୍ମ ସଂକ୍ରାନ୍ତରେ ମଧ୍ୟ କୁହାଯାଇ ପାରିବ । କୌଣସି ଶିଶୁ କୌଣସି ଧର୍ମ, ଜାତୀୟତା ବା ଭାଷା ନେଇ ଜନ୍ମ ହୋଇନଥାଏ । ସେ ଯେଉଁ ପରିବେଶରେ ବଢେ ବା ତାକୁ ଯେଉଁ ପ୍ରକାରର ବିଶ୍ୱାସ ଦିଆଯାଏ ସେ ସେହି ଦୃଷ୍ଟିକୁ ନେଇ ବିକାଶ ଲାଭ କରେ । ଏପରିକି ପ୍ରଥମରୁ ଯଦି ଗୋଟିଏ ଶିଶୁର ମନରେ ଅନ୍ୟ ଧର୍ମ, ଜାତି ବା ଭାଷା ପ୍ରତି ବିଦ୍ୱେଷ ଭାବନା ସୃଷ୍ଟି କରାଯାଏ ତେବେ ଭବିଷ୍ୟତରେ ସେ ଏକ ସାମ୍ପ୍ରଦାୟିକ ଦୃଷ୍ଟିଭଙ୍ଗୀ ପୋଷଣ କରିପାରେ । ସୁତରାଂ ଶିଶୁ ଅବସ୍ଥାରୁ ଯଦି  ସ୍ୱାଧୀନ ଦୃଷ୍ଟିଭଙ୍ଗୀ ଓ ମାନବ ଜାତିର ଏକତ୍ୱ ପ୍ରତି ଭାବନା ଉଦ୍ରେକ କରାଯାଇପାରେ ତେବେ ଗୋଟିଏ ଶିଶୁର ଦୃଷ୍ଟିଭଙ୍ଗୀ ସେହିପରି ବିକାଶ ଲାଭ କରିଥାଏ ।

## ବୈଚାରିକ ଦୃଷ୍ଟିକୋଣ :

କୋଭୁରଙ୍କ ଜୀବନର ଯେଉଁ ଏକକ ସଂକଳ୍ପ ରହିଥିଲା ତାହା ହେଉଛି ସମାଜରୁ ସକଳ ଅନ୍ଧବିଶ୍ୱାସ, କୁସଂସ୍କାର ଓ ଧର୍ମୀୟ ବିଚ୍ଛିନ୍ନତାବାଦକୁ ଦୂର କରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦର ପ୍ରସାର କରାଇବା । ଏତଦ୍‌ବ୍ୟତୀତ ବିଚାରଶୀଳତାର (rationalism) ପ୍ରାଧାନ୍ୟକୁ ସେ ସବୁଠାରୁ ଅଧିକ ମହତ୍ତ୍ୱ ଦେଉଥିଲେ । ସମାଜର ପ୍ରଚଳିତ କୁସଂସ୍କାର ଓ ଆନୁଷଙ୍ଗିକ ଔପଚାରିକତାକୁ ସେ ବିରୋଧ କରି ଆସୁଥିଲେ । ଜଣେ ବୁଦ୍ଧିଜୀବୀ ଭାବରେ ବିଚାରଶୀଳତାର ମହତ୍ତ୍ୱକୁ ପ୍ରତିପାଦନ କରିବା ସହ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ହାସଲ କରିବା ତାଙ୍କର ଅନ୍ୟତମ ଲକ୍ଷ୍ୟ ରହିଥିଲା । ତାଙ୍କର ଆବିର୍ଭାବ ପୂର୍ବରୁ କେରଳରେ ଏକ ହେତୁବାଦୀ ଓ ନିରୀଶ୍ୱରବାଦୀ ପରମ୍ପରା ମଧ୍ୟ ରହିଥିଲା । ନାରାୟଣ ଗୁରୁ କେରଳରେ ଏକ ସଂସ୍କାରବାଦୀ ଆନ୍ଦୋଳନ ଆରମ୍ଭ କରିବା ସହ ହେତୁବାଦୀ ବିଚାର ବିମର୍ଶର ମୂଳଦୂଆ ପକାଇଥିଲେ । ସହୋଦରାନ ଆୟାପ୍ପା ଓ ଜେ.କେ. ପିଲାଇଙ୍କ ପରି ଲେଖକମାନେ ନାରାୟଣ ଗୁରୁଙ୍କର ବିଚାରକୁ ନେଇ କେତେକ ସାହିତ୍ୟ ସୃଷ୍ଟି କରିଥିଲେ । କେରଳ ହେତୁବାଦୀ ଆନ୍ଦୋଳନର ପ୍ରମୁଖ ନେତା ଏମ.ସି.ଯୋଶେଫ ହେତୁବାଦୀ ଚିନ୍ତନ ପ୍ରସାର ଦିଗରେ ମଧ୍ୟ ଉଲ୍ଲେଖନୀୟ ଭୂମିକା ନେଇଥିଲେ । ଏ ସମସ୍ତଙ୍କର ବିଚାରଧାରା ତାଙ୍କ ଚିନ୍ତାମାନସକୁ ପ୍ରଭାବିତ କରିଥିଲା । କେରଳର ସାମାଜିକ ଜୀବନ ଧାରାରେ ମୁକ୍ତ ଚିନ୍ତନ ଓ ହେତୁବାଦୀ ଦୃଷ୍ଟିଭଙ୍ଗୀର ଯେଉଁ ପରମ୍ପରାଟି ସୃଷ୍ଟି ହୋଇଥିଲା ତାକୁ ଅଗ୍ରଣୀ କରାଇବାରେ ସେ ସମସ୍ତଙ୍କ ଅପେକ୍ଷା ଅଧିକ ଦୃଷ୍ଟି ଆକର୍ଷଣ କରିଥିଲେ । ଜଣେ ପ୍ରବୀଣ ଅଧ୍ୟାପକ ଭାବେ ପାଶ୍ଚାତ୍ୟ ଚିନ୍ତା ମାନସ ସହ ସେ ଯଥେଷ୍ଟ ପରିଚିତ ଥିଲେ । ତାଙ୍କ ସମସାମୟିକ ଯୁଗର ବିଶିଷ୍ଟ କ୍ରାନ୍ତିକାରୀ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ ତାଙ୍କୁ ଯଥେଷ୍ଟ ପ୍ରଭାବିତ କରିଥିଲେ । କିନ୍ତୁ ରସେଲ ଥିଲେ ଜଣେ ଦାର୍ଶନିକ । ବିଶ୍ୱକୁ ପରମାଣୁ ଅସ୍ତ୍ର ମୁକ୍ତ କରିବା ପାଇଁ ସେ ଆନ୍ତର୍ଜାତିକ ସ୍ତରରେ ଏକ ଆଲୋଡନ ସୃଷ୍ଟି କରିଥିଲେ । ଏକ ଯୁଦ୍ଧ ଓ ବିଭୀଷିକା ରହିତ ବିଶ୍ୱର ସ୍ୱପ୍ନ ସେ ଦେଖୁଥିଲେ । ନୋବେଲ ପୁରସ୍କାର ପ୍ରାପ୍ତ ରସେଲ ସମସ୍ତ ଧର୍ମକୁ ପତ୍ୟାଖ୍ୟାନ କରି ପୃଥିବୀରେ ଶାନ୍ତି ସ୍ଥାପନ ପାଇଁ ଜୀବନବ୍ୟାପୀ ସଂଗ୍ରାମ ଚଳାଇଥିଲେ । ଅପର ପକ୍ଷରେ କୋଭୁର ବୈଜ୍ଞାନିକ ଭାବରେ କୁସଂସ୍କାର ମାନଙ୍କର ମନସ୍ତାତ୍ତ୍ୱିକ ଭିତ୍ତି ନେଇ ପରୀକ୍ଷା ନିରୀକ୍ଷା କରୁଥିଲେ ।

ରସେଲଙ୍କର ଚିନ୍ତା ତାତ୍ତ୍ୱିକ ଓ ଅମୂର୍ତ୍ତ ହେବା ବେଳେ କୋଭୁର ଏକ ବସ୍ତୁନିଷ୍ଠ ପ୍ରଣାଳୀରେ ଘଟଣା ପ୍ରବାହର ବିଶ୍ଳେଷଣ କରିବାକୁ ଚାହୁଁଥିଲେ । ସେମାନଙ୍କର ବିଶ୍ଳେଷଣ ପଦ୍ଧତି ଭିନ୍ନ ଥିଲେ ବି ଉଭୟ ବୈଚାରିକ ସ୍ତରରେ ହେତୁବାଦୀ ଜୀବନ ଦୃଷ୍ଟିକୁ ଶ୍ରେୟ ଭାବରେ ଗ୍ରହଣ କରିଥିଲେ ।

କୋଭୁରଙ୍କ ସମସାମୟିକ ବ୍ୟକ୍ତିଥିଲେ ଗୋପରାଜୁ ରାମଚନ୍ଦ୍ର ରାଓ ବା ଗୋରା । ଗୋରା ବି ଅଧ୍ୟାପକ ଜୀବନ ଭିତରୁ ସମାଜ ସଂସ୍କାର ସ୍ତରକୁ ଆସିଥିଲେ । ଗୋରା ସଚେତନ ଭାବରେ ସକାରାତ୍ମକ ନିରୀଶ୍ୱରବାଦକୁ ଏକ ଦର୍ଶନ ଭାବରେ ପ୍ରଚାର କରିଥିଲେ । ଗୋରା ଓ କୋଭୁର ଉଭୟ ଜୀବ ବିଜ୍ଞାନରେ ଅଧ୍ୟାପକ ଥିଲେ ବି ଗୋରା ଜାତୀୟ ଆନ୍ଦୋଳନରେ ଅଂଶ ଗ୍ରହଣ କରି ଏକ ରାଜନୈତିକ ଦୃଷ୍ଟିକୋଣ ପୋଷଣ କରିଥିଲେ । କୋଭୁରଙ୍କର କୌଣସି ରାଜନୈତିକ ବିଚାର ବିମର୍ଶ ନ ଥିଲା । ଗୋରା ବ୍ୟକ୍ତି ସ୍ୱାଧୀନତାକୁ ସର୍ବଶ୍ରେଷ୍ଠ ମୂଲ୍ୟ ଦେଉଥିଲେ ଓ ଏପରିକି ଧର୍ମ-ବିରୋଧୀ ମାର୍କ୍ସବାଦକୁ ଈଶ୍ୱରହୀନ ଆସ୍ତିକତାବାଦ ବୋଲି ନେଉଥିଲେ । ଯାହା ବ୍ୟକ୍ତିର ଜୀବନକୁ କୌଣସି ଶକ୍ତି ପାଖରେ ଅଧସ୍ତନ କରି ବ୍ୟକ୍ତି ସ୍ୱାଧୀନତାକୁ କ୍ଷୁର୍ଣ୍ଣ କରିଥାଏ ତାହା ଗୋରାଙ୍କ ମାନଦଣ୍ଡରେ ଆସ୍ତିକତାବାଦ ହେବାବେଳେ ଯାହା ବ୍ୟକ୍ତିକୁ ପୂର୍ଣ୍ଣ ସ୍ୱାଧୀନ ବୋଲି ନେଇଥାଏ ତାହା ନିରୀଶ୍ୱରବାଦ ଅଟେ । କୋଭୁର ଓ ଗୋରାଙ୍କ ଭିତରେ ଏହି କ୍ଷେତ୍ରରେ ବୈଚାରିକ ପାର୍ଥକ୍ୟ ରହିଥିଲା ।

ପେରିୟାର ରାମସାମୀ ସେହି ସମୟର ଆଉ ଜଣେ ସଂସ୍କାରକ ଓ ନିରୀଶ୍ୱରବାଦୀ । ପେରିୟାର ତାମିଲନାଡୁରେ ଏକ ସାମାଜିକ ଆନ୍ଦୋଳନର ସୂତ୍ରପାତ କରିଥିଲେ । ଜାତିପ୍ରଥା ଓ ଅସ୍ପୃଶ୍ୟତା ପରି ସାମାଜିକ ବ୍ୟାଧି ଗୁଡିକର ଦୂରୀକରଣ ପାଇଁ ସେ ନିରୀଶ୍ୱରବାଦକୁ ଜନଗଣଙ୍କ ମଧ୍ୟରେ ପ୍ରସାର କରିବାକୁ ଚାହିଁଥିଲେ । ଧର୍ମୀୟ ଔପଚାରିକତା ଓ ପୂଜା ପାର୍ବଣର ପ୍ରଚଣ୍ଡ ବିରୋଧ କରି ପେରିୟାର ତାମିଲନାଡୁରେ ଦଳିତ ମାନଙ୍କ ମଧ୍ୟରେ ଏକ ନୂତନ ଜାଗରଣ ଆଣିଥିଲେ । ବୈଜ୍ଞାନିକ ଦୃଷ୍ଟିକୋଣ ଦ୍ୱାରା ସେ ବି ସମାଜରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ପ୍ରୟାସ କରିଥିଲେ । ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ସେ ତାଙ୍କର ସମସ୍ତ ଶକ୍ତିକୁ ନିୟୋଜିତ କରିବା ବେଳେ କୋଭୁର ଜଣେ ବୈଜ୍ଞାନିକ ଭାବରେ ହେତୁବାଦର ପ୍ରସାର ପାଇଁ ପ୍ରୟାସ କରିଥିଲେ । ରସେଲ, ଗୋରା, ପେରିୟାର ଓ କୋଭୁର ସମାଜର ପ୍ରଚଳିତ

କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ପ୍ରତ୍ୟାଖ୍ୟାନ କରିବା ଭିତରେ ପ୍ରତ୍ୟେକ ନିଜସ୍ୱ ଶୈଳୀ ଦେଖାଇଛନ୍ତି । କିନ୍ତୁ ସମସ୍ତେ ଥିଲେ ପ୍ରଗତିଶୀଳ ବିଚାରଧାରାର ପ୍ରବର୍ତ୍ତକ ଓ ହେତୁବାଦୀ ଜୀବନ ଦୃଷ୍ଟିର ପୃଷ୍ଠପୋଷକ ।

କୋଭୁରଙ୍କ ସାମଗ୍ରିକ ଚିନ୍ତନ ପରିପ୍ରେକ୍ଷୀରେ ତାଙ୍କୁ ଜଣେ ପ୍ରକୃତିବାଦୀ (naturalist) ବୋଲି ଗ୍ରହଣ କରାଯାଇପାରେ । ପ୍ରକୃତିବାଦର ବିଚାରଧାରାଟି ୟୁରୋପୀୟ ପୁନର୍ଜାଗରଣ ଯୁଗର ଏକ ନିଷ୍କର୍ଷ ଭାବରେ ଆସିବା ପରେ ବିଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଯାଇଥିଲା । ଏହାର ମୌଳିକ ଆଭିମୁଖ୍ୟ ହେଉଛି ପ୍ରାକୃତିକ ନିୟମ ଉପରେ ଗୁରୁତ୍ୱ ଦେଇ ଧର୍ମୀୟ ଅଲୌକିକତାକୁ ପରିହାର କରିବା । ପ୍ରକୃତିରେ ସୃଷ୍ଟ ପ୍ରତ୍ୟେକଟି ଘଟଣା ପ୍ରାକୃତିକ ନିୟମ ଧାରାରେ ବିଶ୍ଳେଷଣ କରାଯାଇପାରିବ, ପ୍ରାକୃତିକ ଘଟଣା ପଶ୍ଚାତରେ ଅଲୌକିକ ବା ଦୈବୀ କାରଣ ରହି ପାରିବ ନାହିଁ । ଏହି ବିଚାର ବିମର୍ଶ ପ୍ରଭାବରେ ବୈଜ୍ଞାନିକ କ୍ରିୟାଶୀଳତା ତ୍ୱରାନ୍ୱିତ ହେବା ଦେଖାଯାଏ । ସେହି ମାନଦଣ୍ଡରେ କୋଭୁର ହେଉଛନ୍ତି ଜଣେ ପ୍ରକୃତିବାଦୀ କାରଣ ସେ ମଧ୍ୟ ପ୍ରତ୍ୟେକଟି ଘଟଣାକୁ ବସ୍ତୁନିଷ୍ଠ ଭାବରେ ଓ ପ୍ରାକୃତିକ ନିୟମ ଧାରାରେ ବିଶ୍ଳେଷଣ କରିବାକୁ ପ୍ରୟାସ କରିଛନ୍ତି । ପ୍ରକୃତିରେ ଅନେକ ରହସ୍ୟ ରହିଥିଲେ ବି କୌଣସି ଅଲୌକିକତା ବା ଦୈବୀ ନିୟମ ନାହିଁ ବୋଲି ତାଙ୍କର ଦୃଢ଼ ପ୍ରତ୍ୟୟ ରହିଥିଲା । ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଉଦ୍ଦେଶ୍ୟକୁ (teleology) ପ୍ରତିଷ୍ଠା କରାଯାଇ ପାରିବ ନାହିଁ । ପ୍ରାକୃତିକ ଜଗତ ଓ ଘଟଣାର ବିଶ୍ଳେଷଣ ପାଇଁ ଈଶ୍ୱର ବା ସେପରି କିଛି ଆଧିଦୈବିକ ଶକ୍ତିର ପ୍ରକଳ୍ପ ପ୍ରମାଣ ରହିତ ମନେହୁଏ । ମଣିଷ ଏହି ପ୍ରାକୃତିକ ଜଗତର ଅଂଶ ବିଶେଷ ମାତ୍ର । ମଣିଷର ଶରୀର ମନ ଇତ୍ୟାଦି ପ୍ରାକୃତିକ ପ୍ରକ୍ରିୟାର ପରିଣାମ ଓ ମଣିଷ ସତ୍ତାର କୌଣସି ସଚେତନ ଅଂଶ ଅମର ବା ଅବିନଶ୍ୱର ନୁହେଁ । ପ୍ରକୃତିବାଦର ଏହି ସୈଦ୍ଧାନ୍ତିକ ବିଚାର ଗୁଡିକ ସହିତ କୋଭୁରଙ୍କ ଚିନ୍ତା ମାନସ ସମତାଳ ରକ୍ଷାକରିବା ପରିପ୍ରେକ୍ଷୀରେ ତାଙ୍କୁ ପ୍ରକୃତିବାଦୀ ବୋଲି କହିବା ଅସମୀଚୀନ ହେବ ନାହିଁ ।

ମୋଟା ମୋଟି ଭାବରେ ତାଙ୍କର ଜୀବନଦୃଷ୍ଟିକୁ 'ବୈଜ୍ଞାନିକ ମାନବବାଦ' ବୋଲି କୁହାଯାଇପାରେ । ସ୍ଥୁଳ ବିଶେଷରେ ନୈତିକ ଜୀବନ ଦୃଷ୍ଟି ଧର୍ମୀୟ ଭାବଧାରାକୁ ଆସିଥାଏ କାରଣ ଧର୍ମବିଶ୍ୱାସ ସମୟରେ ନୈତିକ ଜୀବନ ଯାପନ

ପାଇଁ ଅଭିନିବେଶ ଯୋଗାଇଥାଏ । କିନ୍ତୁ ଏହି ଅଭିନିବେଶକୁ ମନସ୍ତାତ୍ତ୍ୱିକ ଭିତ୍ତି ଉପରେ ପ୍ରତିଷ୍ଠା କରାଯାଇପାରେ, ତାର୍କିକ ଭିତ୍ତି ଉପରେ ନୁହଁ । କାରଣ ନୈତିକ ଜୀବନଯାପନ ପାଇଁ ବା ମାନବବାଦୀ ମୂଲ୍ୟବୋଧକୁ ଗ୍ରହଣ କରିବା କ୍ଷେତ୍ରରେ ଅନ୍ୟାନ୍ୟ ବଳିଷ୍ଠ ଅଭିନିବେଶ ରହିଥାଏ । ଏପରିକି ଧର୍ମବିଶ୍ୱାସ ଓ ନୈତିକତା ପରସ୍ପରଠାରୁ ଭିନ୍ନ ହୋଇପାରନ୍ତି କାରଣ ସେମାନଙ୍କର ସୈଦ୍ଧାନ୍ତିକ ଭିତ୍ତି ସମ୍ପୂର୍ଣ୍ଣ ପୃଥକ ଅଟେ । ସେହି ମାନଦଣ୍ଡରେ କୋଭୁର ସଚେତନ ଭାବରେ ଧର୍ମକୁ ପ୍ରତ୍ୟାଖ୍ୟାନ କରିଥିଲେ ବି ନୈତିକ ଦୃଷ୍ଟିକୋଣରୁ ଏକ ଆଦର୍ଶ ଜୀବନଦୃଷ୍ଟିର ଅଧିକାରୀ ଥିଲେ । ଜଣେ ବୈଜ୍ଞାନିକର ନୈତିକ ଅଙ୍ଗୀକାରବଦ୍ଧତା ନେଇ ସେ ଯଥେଷ୍ଟ ସଚେତନ ଥିଲେ । ବିଜ୍ଞାନ ଓ ମାନବବାଦ ଭିତରେ କୌଣସି ବିରୋଧାଭାସ ନ ରଖି ସେ ଉଭୟର ସମନ୍ୱୟକୁ ବ୍ୟକ୍ତି ଓ ସାମାଜିକ ଜୀବନର ଶ୍ରେୟ ଭାବରେ ଗ୍ରହଣ କରିଥିଲେ । ଏହି ଦୃଷ୍ଟିରୁ ତାଙ୍କ ବୈଚାରିକ ଦୃଷ୍ଟିକୋଣକୁ ବୈଜ୍ଞାନିକ ମାନବବାଦ କହିବା ସମୀଚୀନ ମନେହୁଏ ।



# ବିଜ୍ଞାନ ଓ ଦର୍ଶନ

କୋଭୁର ଦାର୍ଶନିକ ନଥିଲେ, କିନ୍ତୁ ଦର୍ଶନର ସାମଗ୍ରିକ ଅର୍ଥକୁ ବିଚାରକୁ ନେଲେ ତାଙ୍କର ମୋଟାମୋଟି ଭାବରେ ଯେ ଏକ ଜୀବନଦର୍ଶନ ଥିଲା ଏହା କହିବା ଅସମୀଚୀନ ହେବନାହିଁ । ନିଜର କର୍ମକ୍ଷେତ୍ରରେ ସେ ବିଜ୍ଞାନର ଅଧ୍ୟାପକ ଥିଲେ ଓ ବୈଜ୍ଞାନିକ ଦୃଷ୍ଟିକୋଣକୁ ନିଜର ଜୀବନଧାରାରେ ମିଶାଇ ଦେଇଥିଲେ । ମଣିଷ ଜ୍ଞାନର ପରିସର ବହୁ ବ୍ୟାପକ ହେଲେ ବି ବୈଜ୍ଞାନିକ ପ୍ରଣାଳୀ ମାଧ୍ୟମରେ ଜ୍ଞାନର ଭିତ୍ତିକୁ ସୁଦୃଢ଼ କରାଯାଇ ପାରିବ ବୋଲି ସେ ଗ୍ରହଣ କରୁଥିଲେ । ମଣିଷ ସଭ୍ୟତାର କ୍ରମ ବିକାଶଧାରାରେ ବିଜ୍ଞାନର ବିକାଶ କେତେ ନୂଆ ନୂଆ ଦିଗନ୍ତର ସମ୍ଭାବନା ସୃଷ୍ଟି କରିଛି । ମଣିଷର କ୍ରମ ବିକାଶ ଉପରେ ମତ ପ୍ରକାଶକରି ସେ କହିଛନ୍ତି ଯେ କେତେକ ପଶୁ ପକ୍ଷୀଙ୍କର ପ୍ରତ୍ୟକ୍ଷ କରିବାର ଶକ୍ତି ଅଧିକ ହେଲେ ବି ମଣିଷର ଚିନ୍ତା କରିବାର ସାମର୍ଥ୍ୟ ଯୋଗୁଁ ମଣିଷ ଜାତି ସର୍ବଦା ପ୍ରଗତି କରିଚାଲିଛି । ପ୍ରତ୍ୟେକ ଯୁଗରେ ଓ ବିଭିନ୍ନ ସମାଜରେ କିଛି ଚିନ୍ତାଶୀଳ ବ୍ୟକ୍ତି ପ୍ରକୃତି ଓ ପରିବେଶକୁ ବୁଝି ନୂଆ ନୂଆ ଜ୍ଞାନ ମଣିଷ ଜାତିକୁ ଦେଇଛନ୍ତି । ସେହି ଚିନ୍ତାଶୀଳ ବା ବୁଦ୍ଧିମାନ ଲୋକମାନେ ନିଜର ସକୀୟ ଚିନ୍ତନ ଯୋଗୁଁ ମଣିଷ ସମାଜରେ ନୂତନ ପରିବର୍ତ୍ତନ ଆଣିଛନ୍ତି । ସୁତରାଂ ସାମାଜିକ ଜୀବନ ପ୍ରବାହରେ ସର୍ବଦା ଗୁଣାତ୍ମକ ପରିବର୍ତ୍ତନ ସଂଘଟିତ ହୋଇ ଆସିଛି । ଇତର ଜୀବଜନ୍ତୁମାନେ ଆଜକୁ ଲକ୍ଷ ଲକ୍ଷ ବର୍ଷ ତଳେ ଯେଉଁ ସ୍ତରରେ ଜୀବନ ବଞ୍ଚୁଥିଲେ ଆଜି ମଧ ସେହି ସ୍ତରରେ ଜୀବନ ବଞ୍ଚୁଛନ୍ତି । ସେମାନଙ୍କ ଜୀବନଧାରାରେ ବିଶେଷ ପରିବର୍ତ୍ତନ ହୋଇନାହିଁ । କିନ୍ତୁ ମଣିଷ ସମାଜ ସର୍ବଦା ପ୍ରଗତି କରି ଚାଲିଛି । ଏହା ପଶ୍ଚାତରେ ହଜାର ହଜାର ବର୍ଷର ଉଦ୍ୟମ ରହିଛି । ଆଜି ଆମେ ଆମର ପରିବେଶ ଓ ପ୍ରକୃତିର ରହସ୍ୟକୁ ବୁଝିବାରେ ଯେଉଁ ସାମର୍ଥ୍ୟ ଲାଭ କରିଛେ ତାହା ମୁଷ୍ଟିମେୟ ବୁଦ୍ଧିମାନ ଲୋକଙ୍କର ଅବଦାନ ଦ୍ୱାରା ସମ୍ଭବ ହୋଇଛି । ଏକଦା ମଣିଷ ଆଦିମ ସ୍ତରରେ ବଣ ଜଙ୍ଗଲରେ ରହୁଥିଲା ଓ ପଶୁ ପକ୍ଷୀ ଶିକାରକରି ସେମାନଙ୍କର କଞ୍ଚାମାଂସ ଖାଉଥିଲା । ଏପରିକି ନିଆଁର ବ୍ୟବହାର ଓ

ରୋଷେଇ କରି ଖାଇବା ଶିଖିବାକୁ ମଣିଷକୁ କେତେ ହଜାର ବର୍ଷ ଲାଗିଯାଇଛି । ବିଭିନ୍ନ ଭାଷାର ବିକାଶ ଓ ଲିପିର ବ୍ୟବହାର ପଶ୍ଚାତରେ କେତେ ହଜାର ବର୍ଷର କାହାଣୀ ରହିଛି । ସେହିପରି କୃଷିକରି ଜୀବିକା ନିର୍ବାହ କରିବା, ବିଭିନ୍ନ ରୋଗର କାରଣ ଜାଣି ତାହାର ନିଦାନ ବାହାର କରିବା, ଗମନାଗମନର ବିକାଶ କରାଇବା ପଶ୍ଚାତରେ ହଜାର ହଜାର ବର୍ଷର ଇତିହାସ ରହିଛି । ମଣିଷର ସୃଜନଶୀଳ ଚିନ୍ତା ସାମର୍ଥ୍ୟ ଯୋଗୁଁ ସେ ଏକ ଆଦିମ ସ୍ତରରୁ କ୍ରମବିକାଶ ଲାଭ କରି ଆଜି କମ୍ପୁଟର, ରକେଟ ଓ ଇଲେକ୍‌ଟ୍ରୋନିକ୍ ଯୁଗରେ ଉପନୀତ ହୋଇପାରିଛି । ଏପରିକି ଆଜକୁ ମାତ୍ର ଦୁଇ ଶହ ବର୍ଷ ତଳେ ଅଚିନ୍ତନୀୟ ଥିବା ବୈଜ୍ଞାନିକ ଚାଷ ପ୍ରଣାଳୀ, ଉପଗ୍ରହ ମାଧ୍ୟମରେ ସମ୍ବାଦ ପ୍ରେରଣ, କୃତ୍ରିମ ଅଙ୍ଗ ରୋପଣ, ମହାକାଶ ଭ୍ରମଣ ଇତ୍ୟାଦି ସାମ୍ପ୍ରତିକ ଯୁଗରେ ସମ୍ଭବପର ହୋଇଛି । ଏ ବିଶାଳ ପ୍ରକୃତିକୁ ବୈଜ୍ଞାନିକ ଧାରାରେ ବୁଝିବାର ସାମର୍ଥ୍ୟ ଜନିତ ଜ୍ଞାନ ଆହରଣରୁ ଏ ସଫଳତା ସମ୍ଭବ ହୋଇଛି । ଏହି ପୃଷ୍ଠଭୂମିରେ କେତେକ ପ୍ରତ୍ୟୟ ଉପରେ ସେ ଯେଉଁ ମତ ପୋଷଣ କରିଛନ୍ତି ତାହା ଏଠାରେ ବିଚାର୍ଯ୍ୟ ।

**ଜ୍ଞାନ :**

ମଣିଷ କିପରି ଏହି ବିଶାଳ ପ୍ରକୃତିକୁ ଜାଣିବାକୁ ସମର୍ଥ ବା ଅନ୍ୟ ଭାବରେ କହିଲେ ଜ୍ଞାନ ଲାଭର ଆଧାରଟି କଣ ? ଜ୍ଞାନମୀମାଂସା ଏକ ଜଟିଳ ଦାର୍ଶନିକ ପ୍ରଶ୍ନ ଓ ଦର୍ଶନର ପରିସରରେ ଏହା ବିସ୍ତୃତ ଆଲୋଚନା ହୋଇଛି । କୋଭୁର ଏହି କ୍ଷେତ୍ରରେ କୌଣସି ଦାର୍ଶନିକ ତତ୍ତ୍ୱ ଦେଇ ନାହାନ୍ତି । ବରଂ ବୈଜ୍ଞାନିକ ଦୃଷ୍ଟିକୋଣ ଭିତରେ ଏହି ପ୍ରଶ୍ନକୁ ସ୍ଥଳ ବିଶେଷରେ ଆଲୋଚନା କରିଛନ୍ତି । ପ୍ରବୃତ୍ତି ଜନିତ କେତେକ ବ୍ୟବହାର ସାମଞ୍ଜସ୍ୟ ବ୍ୟକ୍ତି ସ୍ୱଭାବରେ ପରିଲକ୍ଷିତ ହୋଇଥାଏ । ଗୋଟିଏ ଶିଶୁ ଜନ୍ମ ପରେ ଅସ୍ୱାଭାବିକ ଅନୁଭୂତି ବା ଭୋକ ଯୋଗୁଁ କାନ୍ଦିଥାଏ । ଏହା ପ୍ରବୃତ୍ତିଗତ । ସେହିପରି ଭଲ ପାଇବା,ଘୃଣା କରିବା, ରାଗିବା ଇତ୍ୟାଦି ମଣିଷର ପ୍ରବୃତ୍ତିଗତ ଗୁଣ । କିନ୍ତୁ ଆମେ ଯାହା କିଛି ଜାଣୁ ତାର ମୂଳ ଆଧାର ହେଉଛି ଆମର ଇନ୍ଦ୍ରିୟ । ଇନ୍ଦ୍ରିୟଦ୍ୱାରା ବସ୍ତୁନିଷ୍ଠ ଜ୍ଞାନର ବିକାଶ ସମ୍ଭବପର ଓ ଏହି ଇନ୍ଦ୍ରିୟମାନଙ୍କର ଅଭାବରେ କୌଣସି ଜ୍ଞାନ ସମ୍ଭବପର ନୁହେଁ । ଇନ୍ଦ୍ରିୟ ରହିତ ସ୍ଥିତିରେ ଜ୍ଞାନଲାଭ ଅସମ୍ଭବ ।

ପାଶ୍ଚାତ୍ୟ ଦର୍ଶନ ଇତିହାସର ଆଧୁନିକ ଯୁଗରେ ସୃଷ୍ଟ ଦୁଇଟି ବିଦ୍ୟାଳୟ ଅନୁଭବବାଦ (Empiricism) ଓ ତର୍କ ବୁଦ୍ଧିବାଦ (Rationalism) ଜ୍ଞାନଲାଭର ମୌଳିକ ଆଧାର ଉପରେ ନାନା ଆଲୋଚନା କରିଛନ୍ତି । ମଧ୍ୟଯୁଗୀୟ ବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ବୈଜ୍ଞାନିକ ଧାରାରେ ଜ୍ଞାନ ଲାଭ ପାଇଁ ଅନୁଭବବାଦ ଓ ତର୍କ ବୁଦ୍ଧିବାଦ ଉଦ୍ୟମ କରିଥିଲେ । ମନୁଷ୍ୟର ଜ୍ଞାନକୁ ସୁଦୃଢ଼ ପଦ୍ଧତି ଉପରେ ପ୍ରତିଷ୍ଠା କରିବା ପାଇଁ ଉଭୟ ବିଦ୍ୟାଳୟରେ ଉଦ୍ୟମ ହେଉଥିଲେ ବି ଜ୍ଞାନର ଉତ୍ପତ୍ତି ଓ ପଦ୍ଧତି ନେଇ ସେମାନଙ୍କ ମଧ୍ୟରେ ମୌଳିକ ପାର୍ଥକ୍ୟ ପରିଲକ୍ଷିତ ହୁଏ । କୋଭୁରଙ୍କର ସାମଗ୍ରିକ ଚିନ୍ତନ ପରିପ୍ରେକ୍ଷୀରେ ସେ ଇନ୍ଦ୍ରିୟ ପ୍ରତ୍ୟକ୍ଷବାଦକୁ ଜ୍ଞାନଲାଭର ମୂଳ ଭିତ୍ତି ଭାବେ ନେଇଥିବା ହେତୁ ତାଙ୍କୁ ଅନୁଭବବାଦ ବିମର୍ଶର ନିକଟତର କହିବା ଅଯୌକ୍ତିକ ହେବ ନାହିଁ । କାରଣ ଅନୁଭବବାଦୀ ପରମ୍ପରାରେ ଅନୁଭବପରକ ବସ୍ତୁନିଷ୍ଠ ସତ୍ୟତାକୁ ଜ୍ଞାନଲାଭର ମୂଳ ଭିତ୍ତି ଭାବରେ ଗ୍ରହଣ କରାଯାଏ । କହିବା ନିଷ୍ପ୍ରୟୋଜନ ଯେ ଆଜି ବୈଜ୍ଞାନିକ ଜ୍ଞାନର ଯେଉଁ ବିରାଟ ସୌଧ ଗଢି ଉଠିଛି ତାର ପଶ୍ଚାତରେ ଅନୁଭବବାଦର ଦାର୍ଶନିକ ନିଷ୍କର୍ଷ ମୂଳ ଭିତ୍ତି ଯୋଗାଇଛି । କାରଣ ଏହି ପରମ୍ପରାର ଦାର୍ଶନିକମାନେ ବଳିଷ୍ଠ ଯୁକ୍ତିଦ୍ୱାରା ଅନୁଭବପରକ ପରୀକ୍ଷଣାତ୍ମକ ପଦ୍ଧତିକୁ ଜ୍ଞାନଲାଭର ଏକ ମାତ୍ର ପନ୍ଥା ଭାବେ ପ୍ରତିଷ୍ଠା କରିଛନ୍ତି । ଅବଶ୍ୟ ଅନୁଭବବାଦ ଓ ତର୍କବୁଦ୍ଧିବାଦର ତାର୍କିକ ପରିଣାମରୁ ସମୀକ୍ଷାବାଦ ନାମକ ଦାର୍ଶନିକ ବିଚାର ପରବର୍ତ୍ତୀ ପର୍ଯ୍ୟାୟରେ ମୁଣ୍ଡ ଟେକିଛି । ଦର୍ଶନ ପୃଷ୍ଠଭୂମିରେ ଏସବୁ ବିଚାର ବିମର୍ଶ ଭିତରେ ନାନା ଜଟିଳ ଓ ତାତ୍ତ୍ୱିକ ପ୍ରଶ୍ନ ମାନଙ୍କର ବିଶ୍ଳେଷଣ ହୋଇଛି ।

କୋଭୁର ବୈଜ୍ଞାନିକ ଜ୍ଞାନର ଆଧାର ଭାବେ ଅନୁଭବବାଦ ବା ଇନ୍ଦ୍ରିୟ ପ୍ରତ୍ୟକ୍ଷବାଦକୁ ମୂଳ ଭିତ୍ତି ଭାବରେ ନେଇଛନ୍ତି । ଏହା ସହିତ ଜ୍ଞାନର ସତ୍ୟାସତ୍ୟ ନିରୂପଣ ପାଇଁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ବିଁ ମୂଳାଧାର ଭାବରେ ସ୍ୱୀକୃତ ହୋଇଛି । ପ୍ରାକୃତିକ ପରିବେଶରେ ସୃଷ୍ଟ ବସ୍ତୁ, ଗୁଣ, ଘଟଣା ଇତ୍ୟାଦିର ନିୟନ୍ତ୍ରିତ ପ୍ରତ୍ୟକ୍ଷାନୁଭୂତିକୁ ପର୍ଯ୍ୟବେକ୍ଷଣ ବୋଲି ଗ୍ରହଣ କରାଯାଏ । ପର୍ଯ୍ୟବେକ୍ଷଣୀୟ ବସ୍ତୁ, କ୍ରିୟା ଇତ୍ୟାଦି ପାରିପାର୍ଶ୍ୱିକ ଅବସ୍ଥାକୁ ପ୍ରାକ୍-ନିୟନ୍ତ୍ରଣ ମଧ୍ୟରେ ରଖି ଫଳାଫଳ ଅନୁସନ୍ଧାନ କରିବାକୁ ପରୀକ୍ଷଣ କୁହାଯାଏ । ପର୍ଯ୍ୟବେକ୍ଷଣ ପ୍ରାକୃତିକ ପରିବେଶ

ମଧ୍ୟରେ ସଂଘଟିତ ହେଉଥିବାରୁ ତାହାର ଆନୁଷଙ୍ଗିକ ପାରିପାର୍ଶ୍ୱିକ ପରିସ୍ଥିତି ପର୍ଯ୍ୟବେକ୍ଷକର କର୍ତ୍ତୃତ୍ୱାଧୀନ ନଥାଏ । ଅପରପକ୍ଷରେ ସନିୟନ୍ତ୍ରିତ ଆଦର୍ଶ ପରିସ୍ଥିତିରେ ପର୍ଯ୍ୟବେକ୍ଷକ ତ୍ରୁଟିଶୂନ୍ୟ ଭାବେ ବସ୍ତୁ, କ୍ରିୟା ବା ଘଟଣାକୁ ସଂଘଟିତ କରାଇ ପରୀକ୍ଷଣରେ ତାହାର ପୁଂଖାନୁପୁଂଖ ବିଶ୍ଳେଷଣ କରିଥାଏ । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ପଦ୍ଧତି ବସ୍ତୁନିଷ୍ଠ ଭାବରେ ପ୍ରକୃତିର ରହସ୍ୟ ଓ ନିୟମକୁ ଉନ୍ମୋଚିତ କରିଥାଏ ଓ ଏହି ପଦ୍ଧତିର ଆଧାର ଉପରେ ବୈଜ୍ଞାନିକ ଜ୍ଞାନ ହିଁ ସମ୍ଭବପର ହୋଇଥାଏ । ସୁତରାଂ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଉପରେ ଆଧାରିତ ଇନ୍ଦ୍ରିୟ ପ୍ରତ୍ୟକ୍ଷବାଦ ବା ଅନୁଭବବାଦର ମୂଳ ଲକ୍ଷ୍ୟ ହେଉଛି ଜ୍ଞାନ ଆହରଣ । କୋଭୁର ତାଙ୍କର ଚିନ୍ତନ ଓ ବିଶ୍ଳେଷଣ କ୍ଷେତ୍ରରେ ଏହି ପଦ୍ଧତିକୁ ଗ୍ରହଣ କରିଛନ୍ତି । କୌଣସି ପୂର୍ବ ଧାରଣାର ବଶବର୍ତ୍ତୀ ନ ହୋଇ ମୁକ୍ତ ମନ ନେଇ ଏହି ବସ୍ତୁନିଷ୍ଠ ପଦ୍ଧତି ମାଧ୍ୟମରେ ସେ ତାଙ୍କର ବୈଜ୍ଞାନିକ ଓ ହେତୁବାଦୀ ବିଚାରର ବିକାଶ କରିଛନ୍ତି । କୌଣସି ତଥାକଥିତ ଅଲୌକିକ ପ୍ରକ୍ରିୟା, ଆଧିଦୈବିକ ଶକ୍ତି ବା ଅତୀନ୍ଦ୍ରିୟ ବିଶ୍ୱାସକୁ ଜ୍ଞାନ ଆହରଣ ପଦ୍ଧତିର କଷଟିରେ ସେ ପରଖି କରିବାକୁ ସର୍ବଦା ପ୍ରୟାସ କରିଛନ୍ତି । ସେହି ପରଖରେ ଜ୍ଞାନ ରୂପକ ସୁବର୍ଣ୍ଣକୁ ବିଶ୍ୱାସ ଆଧାରିତ ଖାଦଠାରୁ ଅଲଗା କରିଛନ୍ତି । ଆମର ବିଶ୍ୱାସ ସକଳ ଯେତେ ପ୍ରାଚୀନ, ଶାସ୍ତ୍ର ସମ୍ମତ, ମହାତ୍ମା ମାନଙ୍କର ମୁଖ ନିସୃତ ବା ବହୁଜନ ଆଦୃତ ହେଲେ ବି ଜ୍ଞାନର କଷଟିରେ ପରୀକ୍ଷିତ ନ ହୋଇପାରିଲେ ତାହା ଯେ ନିଷ୍ଫଳ ତାହା ସେ ଦୃଢତାର ସହ ଦର୍ଶାଇଛନ୍ତି ।

## ଈଶ୍ୱର ଓ ନୈତିକତା :

ଜ୍ଞାନଲାଭର ଏହି ପଦ୍ଧତି ଆଧାରରେ ଈଶ୍ୱର ପ୍ରତୀତିକୁ କିପରି ବିଶ୍ଳେଷଣ କରାଯାଇ ପାରିବ ? କୋଭୁରଙ୍କର ଈଶ୍ୱର ବିଶ୍ୱାସ ରହିଥିଲା କି ନାହିଁ ? ଈଶ୍ୱର ପ୍ରତୀତିକୁ ନେଇ ଆସ୍ତିକବାଦ ଓ ନିରୀଶ୍ୱରବାଦ ଦୁଇଟି ପୃଥକ ଦୃଷ୍ଟିଭଙ୍ଗୀ ଦେଖିବାକୁ ମିଳେ । ପ୍ରତ୍ୟେକଟି ଦୃଷ୍ଟିଭଙ୍ଗୀର ବିଭିନ୍ନ ପ୍ରକାରଭେଦ ମଧ୍ୟ ରହିପାରେ । ଆସ୍ତିକବାଦ ବିଭିନ୍ନ ପ୍ରକାରର ହୋଇପାରେ ଯଥା ଏକେକାଧି ଈଶ୍ୱରବାଦ (Henotheism), ବହୁ ଈଶ୍ୱରବାଦ (Polytheism) ଓ ଏକେଶ୍ୱରବାଦ (Monotheism) । ଈଶ୍ୱର ଓ ସୃଷ୍ଟି ମଧ୍ୟରେ ସମ୍ପର୍କ ନେଇ ବିଭିନ୍ନ ମତ ମଧ୍ୟ ରହିଛି । ଗୋଟିଏ ମତାନୁଯାୟୀ ଈଶ୍ୱର ବିଶ୍ୱକୁ ସୃଷ୍ଟି କରିଥଲେ ବି ବିଶ୍ୱର ଘଟଣା ପ୍ରବାହ

ସହିତ ତାଙ୍କର ସମ୍ବନ୍ଧ ନାହିଁ ଓ ପ୍ରାକୃତିକ ଶୃଙ୍ଖଳାଦ୍ୱାରା ସବୁକିଛି ପରିଚାଳିତ ହେଉଛି । ଅନ୍ୟ ଏକ ମତ ଅନୁଯାୟୀ ସବୁ କିଛି ହିଁ ଈଶ୍ୱର, ପ୍ରତ୍ୟେକ ବସ୍ତୁ ଓ ସତ୍ତା ଈଶ୍ୱରଙ୍କର ଅଭିବ୍ୟକ୍ତି । ଏକ ଭିନ୍ନ ମତ ଅନୁସାରେ ଈଶ୍ୱର ହିଁ ସତ୍ୟ ଏବଂ ସୃଷ୍ଟି ଅସତ୍ୟ ଓ ମାୟା । ଏହି ପ୍ରତ୍ୟେକଟି ମତର ପୁନଶ୍ଚ ନାନା ବିଭାଜନ ଓ ଉପମତ ରହିଛି । ଆସ୍ତିକତାବାଦ ଏହିପରି ବିଭିନ୍ନ ପ୍ରକାରର ଓ ପରସ୍ପର ବିରୋଧୀ ହେଲେ ବି ସମସ୍ତଙ୍କ ମଧ୍ୟରେ ଏକ ସାମଞ୍ଜସ୍ୟ ଥିବା ପରିଲକ୍ଷିତ ହୋଇଥାଏ । ତାହା ହେଉଛି ଏହି ଦୃଷ୍ଟିଭଙ୍ଗୀରେ ଏକ ଇନ୍ଦ୍ରିୟାତୀତ, ଅଲୌକିକ ଓ ଆଧିଦୈବିକ ଶକ୍ତିକୁ ଗ୍ରହଣ କରାଯାଏ । ସେହିପରି ସଂଶୟବାଦ, ଅଜ୍ଞେୟବାଦ, ପ୍ରକୃତିବାଦ ଇତ୍ୟାଦି ବିଚାର ବିମର୍ଶ ନିରୀଶ୍ୱରବାଦକୁ ସମର୍ଥନ କରନ୍ତି । କୌଣସି ଐଶ୍ୱରୀୟ ଶକ୍ତିକୁ ସନ୍ଦେହ କରିବା ସଂଶୟବାଦ ଅଟେ । କୌଣସି ଯୁକ୍ତି ସମ୍ମତ ଓ ପରୀକ୍ଷଣ ପଦ୍ଧତିରେ ଈଶ୍ୱର ବା ଆଧିଦୈବିକ ଶକ୍ତିର ପ୍ରତିଷ୍ଠା କରିବା ସମ୍ଭବ ନୁହଁ ବୋଲି ଅଜ୍ଞେୟବାଦ ମତ ଦେଇଥାଏ । ପ୍ରକୃତିବାଦ ଅନୁଯାୟୀ ପ୍ରକୃତିର ପତ୍ୟେକଟି ଘଟଣା ବା କାର୍ଯ୍ୟକୁ ପ୍ରାକୃତିକ ନିୟମଧାରାରେ ବୁଝାଇବା ସମ୍ଭବ । ପ୍ରାକୃତିକ ଘଟଣା ବା କ୍ରିୟା ସହିତ କୌଣସି ଆଧିଦୈବିକ ଶକ୍ତିକୁ ସଂଶ୍ଳିଷ୍ଟ କରିବା ଅବୈଧ ଓ ଭିତ୍ତିହୀନ ଅଟେ ।

ଈଶ୍ୱର ଭାବନାର ଉତ୍ପତ୍ତି ଓ ବିକାଶ ଉପରେ ସମାଜ-ବିଜ୍ଞାନ ବିଶ୍ଳେଷଣ କରିଛି । ଧର୍ମ ମାନଙ୍କର ତୁଳନାତ୍ମକ ଅଧ୍ୟୟନରୁ ବିଭିନ୍ନ ଧର୍ମର ଈଶ୍ୱର ପ୍ରତୀତି ପୃଥକ୍ ଥିବା ଜଣା ପଡିଲା । ନୃତାତ୍ତ୍ୱିକ, ମନସ୍ତାତ୍ତ୍ୱିକ ଓ ସମାଜ ଶାସ୍ତ୍ରିକ ଅଧ୍ୟୟନରୁ ସୁବ୍ୟବସ୍ଥିତ ସାମାଜିକ ଜୀବନର ବିକାଶ ପୂର୍ବରୁ ନାନା ଅଲୌକିକ ବିଶ୍ୱାସ ସମାଜରେ ରହିଥିବା ଜଣାଯାଏ । ନିରାପଦହୀନ ସାମାଜିକ ଜୀବନ ଓ ପ୍ରକୃତିର ରହସ୍ୟକୁ ବୁଝିବାର ଅସାମର୍ଥ୍ୟ ଭିତରୁ ମଣିଷ ଅଲୌକିକ ଶକ୍ତିର ପରିକଳ୍ପନା କରିଥିଲା । ଏ ବିଶାଳ ଜଗତ ଓ ଜୀବନର ଘନଘଟାକୁ ବୁଝିବା ପାଇଁ ଅଲୌକିକ ଓ ଆଧିଦୈବିକ ବିଶ୍ୱାସ ସକଳ ମଣିଷର ମାନସିକତାକୁ ପ୍ରଭାବିତ କରିବା ଅତ୍ୟନ୍ତ ସ୍ୱାଭାବିକ ଥିଲା । ସଂଗଠିତ ଧର୍ମ ଧାରଣା ଓ ଦାର୍ଶନିକ ଚିନ୍ତନର ବିକାଶ ପୂର୍ବରୁ ବିଭିନ୍ନ ସମାଜରେ ବହୁ ଈଶ୍ୱରଙ୍କୁ ବିଶ୍ୱାସ କରାଯାଉଥିଲା । ପ୍ରକୃତିର ବିଭିନ୍ନ ଦିଗ ଭିନ୍ନ ଭିନ୍ନ ଦେବତାଙ୍କ ନିୟନ୍ତ୍ରଣରେ ପରିଚାଳିତ ହେଉଥିବା ବିଶ୍ୱାସ ସମାଜରେ ରହିଥିଲା । ବର୍ଷା, ବାୟୁ, ଅଗ୍ନି, ମୃତ୍ୟୁ, ବିଦ୍ୟା ଇତ୍ୟାଦି ପାଇଁ ବିଭିନ୍ନ ଦେବତାଙ୍କର ଆରାଧନା କରାଯାଉଥିଲା

ଓ ଏବେ ମଧ୍ୟ ତାହା କେତେକ ସମାଜରେ ପ୍ରଚଳିତ ରହିଛି । ବିଭିନ୍ନ ଗୋଷ୍ଠୀ ନିଜ ଗୋଷ୍ଠୀର ଆରାଧ୍ୟ ଦେବ, ଦେବୀଙ୍କୁ ପରିକଳ୍ପନା କରି ତାଙ୍କୁ ପୂଜା କରୁଥିବା ସମାଜ ବିଜ୍ଞାନ ଅଧ୍ୟୟନରୁ ସ୍ପଷ୍ଟ ହୋଇଥାଏ । ଆନୁଷ୍ଠାନିକ ଧର୍ମମାନଙ୍କର ଉତ୍ପତ୍ତି ଓ ବିକାଶ ସହିତ ଏକେଶ୍ୱରବାଦର ପରିକଳ୍ପନା ଆସିଲା । ଈଶ୍ୱର ସର୍ବଜ୍ଞ, ସର୍ବଶକ୍ତିମାନ, ଦୟାଳୁ ଓ ବିଶ୍ୱର ସ୍ରଷ୍ଟା ବୋଲି ଧାରଣା ଧର୍ମ ଓ ଦାର୍ଶନିକ ଚିନ୍ତନ ମାଧ୍ୟମରେ ସୃଷ୍ଟି ହେଲା । ଏପରିକି ଈଶ୍ୱରଙ୍କର ଅସ୍ତିତ୍ୱକୁ ଯୁକ୍ତିନିଷ୍ଠ ଭାବେ ପ୍ରମାଣ କରାଯିବାକୁ ଦର୍ଶନ ଶାସ୍ତ୍ରରେ ଉଦ୍ୟମ ହେଲା । ଧର୍ମ ପରମ୍ପରାର ଦାର୍ଶନିକମାନେ ତର୍କ ପରକ ବ୍ରହ୍ମବିଦ୍ୟା (Rational theology) ମାଧ୍ୟମରେ ଈଶ୍ୱରଙ୍କର ଅସ୍ତିତ୍ୱ ପାଇଁ ବିଭିନ୍ନ ଯୁକ୍ତିର ଅବତାରଣା କଲେ । ତାତ୍ତ୍ୱିକ ଯୁକ୍ତିରେ ଏହା କୁହାଗଲା ଯେ ଈଶ୍ୱର ସଂପ୍ରତ୍ୟୟରେ ହିଁ ଈଶ୍ୱର ସତ୍ତାର ଅସ୍ତିତ୍ୱ ଅନ୍ତର୍ନିହିତ । ସେହିପରି ଈଶ୍ୱର ଆଦିମୂଳ ସତ୍ତା ବା ବିଶ୍ୱକାରଣ ବୋଲି କାର୍ଯ୍ୟକାରଣ ଯୁକ୍ତିଦ୍ୱାରା କୁହାଗଲା । ଉଦ୍ଦେଶ୍ୟ ସଂସ୍ଥାପକ ଯୁକ୍ତିରେ କୁହାଗଲା ଯେ କାର୍ଯ୍ୟକାରଣ ନିୟମାନୁବର୍ତ୍ତୀ ଶୃଙ୍ଖଳା, ପ୍ରକୃତିର ବିଭିନ୍ନ ସ୍ତରରେ ପରିଲକ୍ଷିତ ହେଉଥିବା ବୈଚିତ୍ର୍ୟ ଓ ନିୟମ ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରତିପାଦନ କରୁଛି । ସେହିପରି ନୈତିକ ମୂଲ୍ୟବୋଧର ସନ୍ତୁଳନ ପାଇଁ ଏକ କରୁଣାମୟ ଈଶ୍ୱରଙ୍କର ପରିକଳ୍ପନା କରାଗଲା । କିନ୍ତୁ ଏହି ଯୁକ୍ତିଗୁଡିକ ପରବର୍ତ୍ତୀ ଯୁଗରେ ଦାର୍ଶନିକ ସମୀକ୍ଷାରୁ ତାର୍କିକ ଦୋଷଯୁକ୍ତ ବୋଲି ସ୍ୱୀକୃତ ହେଲା । ଡେଭିଡ ହ୍ୟୁମ ଓ ଇମାନୁଏଲ କାଣ୍ଟଙ୍କ ପରି ମହାନ ଚିନ୍ତାନାୟକମାନେ ଜ୍ଞାନର ଆଧାର ଓ ମଣିଷ ବୋଧିର ସୀମାକୁ ନିର୍ଣ୍ଣୟ କରି ଏହି ସମସ୍ତ ଯୁକ୍ତିର ଅସାରତା ପ୍ରତିପାଦନ କଲେ । ତାର୍କିକ ଯୁକ୍ତିଦ୍ୱାରା ଈଶ୍ୱରଙ୍କର ଅସ୍ତିତ୍ୱ ଯୁକ୍ତିର ପରିସରରୁ ଯାଇ ଅନୁଭୂତିର ଭିତ୍ତି ଉପରେ ରହିଲା । ଅର୍ଥାତ୍ ଏହା କୁହାଗଲା ଯେ ଈଶ୍ୱର ଯୁକ୍ତି ରହିତ, କେବଳ ଅନୁଭବ୍ୟ । କିନ୍ତୁ ତଥାକଥିତ ଈଶ୍ୱରାନୁଭୂତି ବ୍ୟକ୍ତିନିଷ୍ଠ ଆବେଗ ମାତ୍ର ଯାହା ମାନସିକ ସ୍ଥିତିରୁ ଉତ୍ପନ୍ନ ହୋଇଥାଏ । ସମ୍ମୋହନଦ୍ୱାରା – ତାହା ନିଜସ୍ୱ ହୋଇପାରେ ବା ପରତାନ୍ତ୍ରିକ ହୋଇପାରେ- ବ୍ୟକ୍ତିର ମନ ଯେପରି ସର୍ତ୍ତବଦ୍ଧ ହୁଏ ବ୍ୟକ୍ତିର ଅନୁଭୂତି ମଧ୍ୟ ସେହିପରି ହୋଇଥାଏ । ଏହି ଅନୁଭୂତି କିନ୍ତୁ ମନସ୍ତାତ୍ତ୍ୱିକ । ଏହି ଅନୁଭୂତି ସ୍ଥଳ ବିଶେଷରେ ଭ୍ରମ ପ୍ରତ୍ୟକ୍ଷରୁ ଉତ୍ପନ୍ନ ହୁଏ । ସୁତରାଂ ମନସ୍ତାତ୍ତ୍ୱିକ ଭିତ୍ତିଭୂମିରୁ ତଥାକଥିତ ଦିବ୍ୟାନୁଭୂତି କେବଳ ଏକ ସର୍ତ୍ତ-ଆବଦ୍ଧ ମାନସିକ ଅବସ୍ଥା ମାତ୍ର,ଏହା ସତ୍ୟନିଷ୍ଠ ନୁହଁ । ସୁତରାଂ ଈଶ୍ୱର ପରି ଏକ ଆଧିଦୈବିକ ସତ୍ତା ଏକ କଳ୍ପନା ବା ପ୍ରକଳ୍ପ ମାତ୍ର । ଏହା ଜ୍ଞାନାଧାରିତ ନୁହେଁ । ଈଶ୍ୱର ପ୍ରତୀତର ଏହି ବ୍ୟାଖ୍ୟା ପୃଷ୍ଠଭୂମିରେ କୋଭୁରଙ୍କର ମତାମତ ବିଚାର୍ଯ୍ୟ ।

ଏ ବିଶାଳ ବିଶ୍ୱର ଜଣେ ସୃଷ୍ଟିକର୍ତ୍ତା ରହିଛନ୍ତି ଏହାକୁ କୌଣସି ବୈଜ୍ଞାନିକ ମାନଦଣ୍ଡରେ ପ୍ରତିଷ୍ଠା କରିବା ସମ୍ଭବ ନୁହେଁ । ବରଂ ପ୍ରକୃତିର ଯେତିକି ରହସ୍ୟ ଉଦ୍‌ଘାଟିତ ହେବାରେ ଲାଗିଛି ସେଥିରେ ବିଶ୍ୱର ବିଶାଳତା ଅଚିନ୍ତନୀୟ ମନେହେଉଛି । ଏହି ବିଶ୍ୱରେ କୋଟି କୋଟି ଛାୟାପଥ ଓ ସୌରମଣ୍ଡଳ ରହିଛି । ସୌରମଣ୍ଡଳ ମାନଙ୍କର ବ୍ୟାସ ଲକ୍ଷ ଲକ୍ଷ ଆଲୋକ ବର୍ଷ ଅଟେ । ସେହିପରି ଈଶ୍ୱରଙ୍କୁ ସର୍ବଜ୍ଞ କହିବା ସମୀଚୀନ ମନେହୁଏ ନାହିଁ । କାରଣ ଜ୍ଞାତାର ମାନସିକ ପ୍ରକ୍ରିୟାର ଅଭାବରେ କୌଣସି କିଛି ଜ୍ଞେୟ ହେବା ସମ୍ଭବପର ନୁହେଁ । କେତେକ ଜୈବିକ ଓ ସ୍ନାୟବିକ କାରଣରୁ ମାନସିକ କ୍ରିୟା ସମ୍ଭବପର ହୋଇଥାଏ । ମାନସିକ ପ୍ରକ୍ରିୟାର ଅଭାବରେ କୌଣସି କିଛି ଜାଣିବା ଅସମ୍ଭବ ଅଟେ । ଈଶ୍ୱରଙ୍କୁ ସର୍ବଜ୍ଞ କହିବା ପୂର୍ବରୁ ତାଙ୍କର ଶାରୀରିକ ସ୍ଥିତି ଓ ମାନସିକ କ୍ରିୟାକୁ ପ୍ରତିଷ୍ଠା କରିବାକୁ ହେବ । କୌଣସି ମାନସିକ କ୍ରିୟାର ଅଭାବରେ କିଛି ଜାଣିବା ବା ଅବଗତ ହେବାକୁ ବ୍ୟାଖ୍ୟା କରଯାଇପାରିବ ନାହିଁ । ମଣିଷ ଯେ ନାନା ମନସ୍ତାତ୍ତ୍ୱିକ କାରଣରୁ ଈଶ୍ୱର ବିଷୟରେ କଳ୍ପନା କରିଛି ଓ ସେହି କାଳ୍ପନିକ ଈଶ୍ୱରଙ୍କୁ- ତାହା ଏକ ବା ଅନେକ ହୋଇପାରେ ଓ ଭିନ୍ନ ଭିନ୍ନ ବି ହୋଇପାରେ - ନିଜ ମାନଦଣ୍ଡରେ ନାନା ମହନୀୟ ଗୁଣ ଓ ଅସୀମତା ପ୍ରଦାନ କରିଛି ଏହା ମନେହୁଏ ।

ଅବଶ୍ୟ ପ୍ରଶ୍ନ ଉଠିପାରେ – ଈଶ୍ୱର ବିଶ୍ୱାସ ସହିତ ମଣିଷର ନୈତିକ ଜୀବନ ସମ୍ବନ୍ଧିତ ନୁହେଁ କି ? ସମାଜରେ ଈଶ୍ୱର ବିଶ୍ୱାସ ନ ରହିଲେ ନୈତିକ ଶୃଙ୍ଖଳା ବିପର୍ଯ୍ୟସ୍ତ ହେବ ନାହିଁକି ? ଈଶ୍ୱର ଓ ନୈତିକତାର ସମ୍ବନ୍ଧ ଉପରେ ଦର୍ଶନ ଶାସ୍ତ୍ରରେ ବହୁ ଚର୍ଚ୍ଚା ହୋଇଛି । ଦର୍ଶନ ଶାସ୍ତ୍ରର ନିଷ୍କର୍ଷ ଅନୁଯାୟୀ ଈଶ୍ୱର ଓ ନୈତିକତା ପୃଥକ୍ ପ୍ରତ୍ୟୟ ଅଟନ୍ତି । ସେ ଦୁଇ ପ୍ରତ୍ୟୟ ମଧ୍ୟରେ ମନସ୍ତାତ୍ତ୍ୱିକ ସମ୍ବନ୍ଧ ଛଡା କୌଣସି ତାର୍କିକ ସମ୍ବନ୍ଧ ନାହିଁ । ଜଣେ ଈଶ୍ୱର ବିଶ୍ୱାସୀ ହୋଇ ବାସ୍ତବ ଜୀବନରେ ନୈତିକତାକୁ ପ୍ରତ୍ୟାଖ୍ୟାନ କରିପାରନ୍ତି ଅଥଚ ଜଣେ ନିରୀଶ୍ୱରବାଦୀ ହୋଇ ଏକ ଶୃଙ୍ଖଳିତ ନୈତିକ ଜୀବନ ଯାପନ କରି ପାରନ୍ତି । ହୁଏତ ଈଶ୍ୱର ବିଶ୍ୱାସରୁ ସ୍ଥଳ ବିଶେଷରେ ନୈତିକ ଜୀବନ ଯାପନ ପାଇଁ ପ୍ରେରଣା ସୃଷ୍ଟି ହୋଇଥାଏ ବୋଲି କେହି କହିପାରନ୍ତି । ଏଥିରୁ ନୈତିକତା ଓ ଈଶ୍ୱର ବିଶ୍ୱାସ ଭିତରେ କୌଣସି ତାତ୍ତ୍ୱିକ ସମ୍ବନ୍ଧ ପ୍ରତିଷ୍ଠା ହେଉନାହିଁ । ପରନ୍ତୁ ନୈତିକ ଜୀବନ ପାଇଁ ବହୁ ସ୍ତରରୁ ଅଭିନିବେଶ ଆସିଥାଏ ଓ ପ୍ରତ୍ୟେକ ନୈତିକ

କାର୍ଯ୍ୟ ପଶ୍ଚାତରେ ଈଶ୍ୱର ବିଶ୍ୱାସ ନଥାଏ । ନୈତିକତାକୁ ଏକ ସାମାଜିକ ଆଦର୍ଶ ଭାବରେ ଗ୍ରହଣ କରିବା ଦ୍ୱାରା ଏହାର ତାତ୍ତ୍ୱିକ ଭିତ୍ତି ସୁଦୃଢ଼ ହେବା ସହିତ ସାମାଜିକ ଜୀବନ ପରିପ୍ରେକ୍ଷୀରେ ଏହାର ଉପଯୋଗିତା ଆସିଥାଏ । ସୁତରାଂ ନୈତିକ ଆଚରଣ ଈଶ୍ୱର- ନିରପେକ୍ଷ ମନେହୁଏ ।

ବିଭିନ୍ନ ଧର୍ମମାନଙ୍କରେ ରହିଥିବା ନାନା ବିଶ୍ୱାସ ଓ କାଳ୍ପନିକ କାହାଣୀ ଗୁଡିକ ଯେପରି ଅବୈଜ୍ଞାନିକ ସେହିପରି ସମାଜ ପାଇଁ କ୍ଷତିକାରକ । ଶିକ୍ଷାନୁଷ୍ଠାନ ମାନଙ୍କରେ ସେସବୁ ଶିକ୍ଷା ଦେବା ଦ୍ୱାରା ନୈତିକ ମୂଲ୍ୟବୋଧ ପରିବର୍ତ୍ତେ ପିଲାମାନଙ୍କର କୌତୂହଳ ଦୃଷ୍ଟିକୋଣକୁ ନଷ୍ଟ କରିବା ସହିତ ସେମାନଙ୍କୁ କୁସଂସ୍କାର ଶିକ୍ଷା ଦେବା ସମାନ ବୋଲି କୋଭୁର ଭାବୁଥିଲେ । ବିଦ୍ୟାଳୟରେ ଧର୍ମଶିକ୍ଷା ପ୍ରସଙ୍ଗ ଉପରେ ତାଙ୍କ ଲେଖାରୁ ଏହି ବିବରଣୀଟି ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ମନେହୁଏ ।

୧୯୬୨ରେ କଲୋମ୍ବୋସ୍ଥିତ ବୁଦ୍ଧିଷ୍ଟ ମହିଳା ମହାବିଦ୍ୟାଳୟରେ ଜାତକ ଗଳ୍ପର ଏକ କାହାଣୀ ଶ୍ରେଣୀରେ ପଢାଯାଉଥାଏ । ଏହି ଗଳ୍ପ ଅନୁଯାୟୀ ବୁଦ୍ଧ ତାଙ୍କର ଏକ ପୂର୍ବଜନ୍ମରେ କୁଶ ନାମରେ ଜନ୍ମ ହୋଇଥିଲେ । ସେ ଜଣେ ସୁନ୍ଦରୀ ରାଜକୁମାରୀ ପବାବତୀଙ୍କୁ ବିବାହ କଲେ । କିନ୍ତୁ ତାଙ୍କର କୌଣସି ସନ୍ତାନ ହେଲା ନାହିଁ ।

ଦେବତାମାନଙ୍କର ଅଧିପତି ଶକ୍ର ଏକ ବଡ ପଥରକୁ ନିଜର ଉପବେଶନ ଭାବରେ ବ୍ୟବହାର କରୁଥିଲେ । ଏହା ଗଦି ପରି ବଡ ଆରାମଦାୟକ ଥିଲା, କିନ୍ତୁ ମର୍ତ୍ତ୍ୟରେ କୌଣସି ବିଶିଷ୍ଟ ବ୍ୟକ୍ତି ପ୍ରତିକୂଳ ଅବସ୍ଥାରେ ପଡିଲେ ପଥରଟି ଉତ୍ତପ୍ତ ହୋଇଯାଉଥିଲା । ଶକ୍ର ଏହି ଉତ୍ତାପ ଅନୁଭବ କରି ଧ୍ୟାନ ବଳରେ କୁଶ ନିଃସନ୍ତାନ ଥିବା ଜାଣିପାରିଲେ । ପବାବତୀ ଗାଢ ନିଦରେ ଶୋଇଥିବାବେଳେ ଶକ୍ର ଗୁପ୍ତରେ ତାଙ୍କ ଶୟନ କକ୍ଷରେ ପ୍ରବେଶ କରି ଗୋଡର ବୁଢା ଆଙ୍ଗୁଠିରେ ପବାବତୀଙ୍କ ନାଭିକୁ ଛୁଇଁ ଦେଲେ । ଏହାଦ୍ୱାରା ପବାବତୀ ଅନ୍ତଃସତ୍ତ୍ୱା ହେଲେ ।

ଶ୍ରେଣୀରେ ଥିବା ତିରିଶ ଜଣ ଛାତ୍ରୀଙ୍କ ମଧ୍ୟରୁ ଜଣେ କୋଡିଏ ବର୍ଷ ବୟସ୍କା ଛାତ୍ରୀ ପ୍ରଶ୍ନ କଲେ ଯେ ସେପରି ସନ୍ତାନ ଲାଭ କରିବା ସମ୍ଭବ କି ? ପଢାଉଥିବା ଅଧ୍ୟାପକ ଜଣକ ଯଦି ନା କହୁଛନ୍ତି ତେବେ ବର୍ଣ୍ଣିତ ଗଳ୍ପ ଯେ ଏକ ଆଇମା କାହାଣୀ ଏହା ସ୍ୱୀକାର କରିବାକୁ ହେବ । ହଁ କହିବାଦ୍ୱାରା ଜଣେ ଅନୁସନ୍ଧିତ୍ସୁ ଛାତ୍ରୀଙ୍କୁ ଏକ

ମିଥ୍ୟା କହି ତାଙ୍କର କୌତୂହଳୀ ମନୋଭାବକୁ ଦବାଇଦେବା ହେବ । ଅଧ୍ୟାପକ ଏହି ଦ୍ୱନ୍ଦ୍ୱରେ ରହି ଉତ୍ତର ଦେଇପାରି ନଥିଲେ ।

ବୌଦ୍ଧ ଜାତକର ନାଭି ସ୍ପର୍ଶରୁ ଗର୍ଭ ଯେପରି ଏକ କାହାଣୀ, ସେହିପରି ଖ୍ରୀଷ୍ଟଧର୍ମରେ କୁମାରୀ ମେରୀ ଅସ୍ୱାଭାବିକଭାବରେ ଯୀଶୁଙ୍କୁ ଗର୍ଭରେ ଧରିବା ବା ରାମାୟଣରେ ବର୍ଣ୍ଣିତ ଦଶରଥଙ୍କର ରାଣୀମାନେ ଚରୁ ସେବନ କରି ଗର୍ଭବତୀ ହେବା ମଧ୍ୟ କାଳ୍ପନିକ କାହାଣୀ ଅଟେ । ଧର୍ମ ନାମରେ ଏହି ସବୁ ବିଷୟ କୌତୂହଳୀ କିଶୋର ଛାତ୍ର ଛାତ୍ରୀଙ୍କୁ ଶିକ୍ଷାଦେବା ଉଚିତ ହେବ କି ?

ନୈତିକ ଆଚରଣ ଶିକ୍ଷା ଦେବାପାଇଁ ଧର୍ମଯାଜକମାନେ ଶିକ୍ଷାନୁଷ୍ଠାନମାନଙ୍କରେ ଧର୍ମଶିକ୍ଷା ଉପରେ ଗୁରୁତ୍ୱ ଦେଉଛନ୍ତି । ମଧ୍ୟ ପ୍ରାଚ୍ୟରେ ବିସ୍ତାର ଲାଭ କରିଥିବା ଇହୁଦିଧର୍ମ, ଖ୍ରୀଷ୍ଟଧର୍ମ ଓ ଇସଲାମ ଧର୍ମ ଆଦିରେ ନୈତିକତାର ଭିତ୍ତିକୁ ଏକ ସର୍ବଶକ୍ତିମାନ ଈଶ୍ୱରଙ୍କ ସହିତ ସଂଶ୍ଳିଷ୍ଟ କରାଯାଇଛି । ସୃଷ୍ଟିର କର୍ତ୍ତା, ପାଳକ ଓ ସଂହର୍ତ୍ତା ଭାବରେ ଏକ ଈଶ୍ୱରଙ୍କର ପରିକଳ୍ପନା କରାଯାଇ ତାଙ୍କ ଉପରେ ବିଶ୍ୱାସ ସ୍ଥାପନକୁ ନୈତିକ ଆଚରଣର ମୂଳ ଭାବରେ ନିଆଯାଇଛି ଓ ତାଙ୍କୁ ଅବିଶ୍ୱାସ କରିବାକୁ ଅନୈତିକ ବୋଲି ଦର୍ଶାଯାଇଛି । ବୌଦ୍ଧ ବା ଜୈନ ଧର୍ମରେ ସେପରି କିଛି ଈଶ୍ୱରଙ୍କର ବିଶ୍ୱାସ ନାହିଁ । ସେହିପରି ପ୍ରକୃତିବାଦୀ, ସଂଶୟବାଦୀ, ଅଜ୍ଞେୟବାଦୀ ଓ ହେତୁବାଦୀମାନେ 'ଈଶ୍ୱର' ଏକ ପ୍ରତ୍ୟୟ ଭାବରେ ନେଇ ତାଙ୍କର ଅସ୍ତିତ୍ୱରେ ସନ୍ଦେହ ପ୍ରକାଶ କରନ୍ତି । କିନ୍ତୁ ଏହି ଭିତ୍ତିରେ ସେମାନଙ୍କୁ ଅନୈତିକ କୁହାଯିବ କି ?

କେତେକ ଅହେତୁକ ଧର୍ମବିଶ୍ୱାସୀଙ୍କ ପାଇଁ ସେମାନଙ୍କର ଧର୍ମ ହିଁ ନୈତିକତାର ଏକମାତ୍ର ଉତ୍ସ । କିନ୍ତୁ ଯଦି ସମାଜରେ ଭଲ-ମନ୍ଦ, ନ୍ୟାୟ- ଅନ୍ୟାୟ ଧାରଣା ଗୁଡିକର କ୍ରମବିକାଶକୁ ଦେଖାଯାଏ, ତେବେ ଏହା ସ୍ପଷ୍ଟ ହୁଏ ଯେ ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ପୂର୍ବରୁ ସେ ସବୁ ସୃଷ୍ଟି ହୋଇଥିଲା । ଏପରିକି ଆଦିମ ସମାଜରେ ରହିଥିବା ଲୋକମାନଙ୍କ ମଧ୍ୟରେ କେତେକ ଆଚରଣ ବିଧି ରହିଥିଲା । ପ୍ରଥମେ ପରିବାର ମଧ୍ୟରେ, ପରେ ଗୋଷ୍ଠୀ କ୍ଷେତ୍ରରେ ଓ ରାଷ୍ଟ୍ର କ୍ଷେତ୍ରରେ ନୈତିକ ବିଧି ବିକାଶ ଲାଭକଲା । ସମାଜ ଯେତିକି ଦୃଢ଼ ଓ ବିସ୍ତାରିତ ହେବାକୁ ଲାଗିଲା, ପାରିବାରିକ ସ୍ତରରେ ରହିଥିବା ଆଚରଣ ବିଧି ଗୁଡିକ ଆସ୍ତେ ଆସ୍ତେ ବିସ୍ତାର ଲାଭ କରି ବୃହତ୍ତର

ସାମାଜିକ ପରିବେଶରେ ନୈତିକ ଆଦର୍ଶ ଭାବରେ ସ୍ୱୀକୃତ ହେବାକୁ ଲାଗିଲା । ଏପରିକି ବିବର୍ତ୍ତନ ପ୍ରକ୍ରିୟାରେ ପଶୁ ଜଗତରେ କେତେକ ଶୃଙ୍ଖଳା ରହିଥିବା ସେମାନଙ୍କ ଉପରେ ଅଧ୍ୟୟନରୁ ଜଣାପଡିଛି । ପଶୁମାନଙ୍କ ମଧ୍ୟରେ କେତେକ ସାମାଜିକ ସ୍ୱଭାବ ପ୍ରବୃତ୍ତି ଭାବରେ ରହିଛି । ସେଥିରୁ ସେମାନଙ୍କ ବ୍ୟବହାରକୁ ଭଲ ବା ମନ୍ଦ କୁହାଯାଇ ପାରିବ । ମାତୃସ୍ନେହ, ପାରସ୍ପରିକ ସହଯୋଗ ଓ ଦୁର୍ବଳର ଯତ୍ନ ଇତ୍ୟାଦି ପଶୁ ସ୍ୱଭାବରେ ରହିଥିବା ବେଳେ ଈର୍ଷା, ସ୍ୱାର୍ଥପରତା ପରି ମନ୍ଦ ସ୍ୱଭାବ ମଣିଷ ସ୍ୱଭାବରେ ଦେଖାଯାଏ ।

ବଞ୍ଚି ରହିବା ପାଇଁ ସଂଗ୍ରାମ ଓ ପରିବେଶ ସହିତ ସମତାଳ ରକ୍ଷାକରି ରହି ପାରିଥିବା ଶକ୍ତିଶାଳୀ ପ୍ରାଣୀମାନଙ୍କ ମଧ୍ୟରେ ସାମାଜିକ ସ୍ୱଭାବ ସୃଷ୍ଟି ହୋଇଛି । ମାତୃ ସ୍ନେହ, ପାରସ୍ପରିକ ସହଯୋଗ, ଖାଦ୍ୟ ଓ ବାସ ପାଇଁ ପରସ୍ପରକୁ ସାହାଯ୍ୟ ଓ ନିଜ ଗୋଷ୍ଠୀର ନିରାପତ୍ତା ପାଇଁ ବ୍ୟକ୍ତି ବିଶେଷଙ୍କର ଆତ୍ମ ତ୍ୟାଗ ଇତ୍ୟାଦି ସାମାଜିକ ପ୍ରବୃତ୍ତି ମଧ୍ୟରୁ ନୈତିକ ଭାବନା ଉଦ୍ରେକ ହୋଇଛି । ପଶୁ ଜଗତରେ ଏହି ସ୍ୱଭାବ ପ୍ରବୃତ୍ତିଗତ ହୋଇ ରହିବା ବେଳେ ମଣିଷ ସମାଜରେ ଏହା ବିକଶିତ ହୋଇ ନୈତିକ ଶୃଙ୍ଖଳା ହୋଇଛି । ସମାଜର ଗୁଣାତ୍ମକ ବିକାଶ ସହିତ ମଣିଷର ନୈତିକ ଅଙ୍ଗୀକାରବୋଧ ଉନ୍ନତ ଓ ଦୃଢ ହୋଇଛି । ବଣ ଜଙ୍ଗଲର ଗୁମ୍ଫା ବା ଗଛ ଉପରେ ବାସ କରୁଥିବା ଆଦିମ ଲୋକଙ୍କର ସାମାଜିକ ସ୍ୱଭାବ ଓ ମହୁମାଛି, ପିମ୍ପୁଡିମାନଙ୍କ ଭିତରେ ଥିବା ସାମାଜିକ ପ୍ରବୃତ୍ତି ଭିତରେ ବହୁ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଏହି ସାମାଜିକ ପ୍ରବୃତ୍ତିରୁ ନ୍ୟାୟ-ଅନ୍ୟାୟ, ଭଲ-ମନ୍ଦର ଧାରଣା ପରବର୍ତ୍ତୀ ପର୍ଯ୍ୟାୟରେ ବିକାଶ ଲାଭ କରିଛି । ସାମାଜିକ ଚରିତ୍ର ଓ ନିଜଗୋଷ୍ଠୀ ପାଇଁ ତ୍ୟାଗଜନିତ ମନୋଭାବରୁ ତ୍ୟାଗ, କରୁଣା, ପ୍ରେମ,ଦୟା ଇତ୍ୟାଦି ମହତ୍ତର ଗୁଣଗୁଡିକ ସମାଜରେ ଆଦୃତ ହୋଇଛି । ସୁତରାଂ ସମାଜରେ ଆମେ ଯେଉଁ ନୈତିକ ମୂଲ୍ୟବୋଧ ଦେଖୁଛେ ତାହା କ୍ରମବିକାଶ ଧାରାରେ ମଣିଷ ଭିତରେ ଥିବା ସାମାଜିକ କର୍ତ୍ତବ୍ୟ ଭାବରେ ସମାଜରେ ସୃଷ୍ଟି ହୋଇଛି । ସଂଗଠିତ ଧର୍ମମାନଙ୍କର ବହୁ ପୂର୍ବରୁ ସମାଜ ଓ ସାମାଜିକ ସଂଗଠନର ବିକାଶ ସହିତ ନୈତିକ, ବ୍ୟବସ୍ଥା ଓ ଭଲ-ମନ୍ଦର ଦୃଷ୍ଟିକୋଣ ଉଦ୍‌ଭବ ହୋଇଛି ।

## ବିଶ୍ୱ :

ବିଭିନ୍ନ ଧର୍ମଶାସ୍ତ୍ର ଗୁଡିକ ଲେଖାହେବା ସମୟରେ ବିଶ୍ୱ ସଂକ୍ରାନ୍ତରେ ସେପରି କିଛି ବୈଜ୍ଞାନିକ ଧାରଣା ସୃଷ୍ଟି ହୋଇନଥିଲା । ସୃଷ୍ଟିତତ୍ତ୍ୱ ସଂକ୍ରାନ୍ତରେ ବିଭିନ୍ନ ଧର୍ମମାନଙ୍କରେ କେତେ କେତେ କାଳ୍ପନିକ ବ୍ୟାଖ୍ୟା ଦେଖିବାକୁ ମିଳିଥାଏ । ଧର୍ମମାନଙ୍କର ବିଶ୍ୱାସକୁ ଆଧାର କରି ପୃଥିବୀ ଈଶ୍ୱର-କୃତ, ସ୍ଥିର, ସମତଳ, ସସୀମ ଓ ବିଶ୍ୱର କେନ୍ଦ୍ରସ୍ଥଳ ବୋଲି ଗ୍ରହଣ କରାଯାଉଥିଲା । ଇଟାଲୀର ବିଶିଷ୍ଟ ଦାର୍ଶନିକ, ସ୍ୱାଧୀନଚିନ୍ତାର ପ୍ରବର୍ତ୍ତକ ଓ ବୈଜ୍ଞାନିକ ଜିଓର୍ଡାନୋ ବ୍ରୁନୋ (୧୫୪୮-୧୬୦୦) ପୃଥିବୀ ବିଶ୍ୱର କେନ୍ଦ୍ରସ୍ଥଳ ଓ ବିଶ୍ୱ ସସୀମ ଓ ସୀମିତ ଧାରଣାର ବିରୋଧ କରିଥିଲେ । ସୂର୍ଯ୍ୟ ଆମ ସୌର ଜଗତର କେନ୍ଦ୍ରବିନ୍ଦୁ ଓ ଏ ବିଶ୍ୱର ବ୍ୟାପ୍ତି ଅସୀମ ବୋଲି ସେ ମତ ପୋଷଣ କରିଥିଲେ । ସେତେବେଳେ ତାଙ୍କର ବୈଜ୍ଞାନିକ ମତ ପାଇଁ ତାଙ୍କୁ ବହୁ ମୂଲ୍ୟ ଦେବାକୁ ପଡିଥିଲା । ତାଙ୍କର ମତ ଧର୍ମ-ବିରୋଧୀ ବୋଲି ଧର୍ମଯାଜକମାନେ ଅଭିଯୋଗ କଲେ । ଫଳରେ ରୋମାନ୍ କ୍ୟାଥୋଲିକ ଚର୍ଚ୍ଚଦ୍ୱାରା ତାଙ୍କୁ ଜୀଅନ୍ତା ପୋଡି ମାରି ଦିଆଗଲା । ପୋଲାଣ୍ଡର ବୈଜ୍ଞାନିକ ନିକୋଲାସ କୋପରନିକସ୍ (୧୪୭୩-୧୫୪୩) ଓ ଇଟାଲୀର ଗାଲିଲିଓ (୧୫୬୪-୧୬୪୨) ଧର୍ମୀୟ ମତର ବିରୁଦ୍ଧାଚରଣ କରି ପୃଥିବୀ ଗତିଶୀଳ ବୋଲି ଦର୍ଶାଇଲେ । ପୂର୍ବରୁ ସୂର୍ଯ୍ୟ ଗତିଶୀଳ ଓ ପୃଥିବୀ ସ୍ଥିର ବୋଲି ଧାରଣା ସର୍ବତ୍ର ରହିଥିଲା । କୋପରନିକସ୍ ସୂର୍ଯ୍ୟ ସ୍ଥିର ଓ ପୃଥିବୀ ଓ ଅନ୍ୟାନ୍ୟ ଗ୍ରହ ସକଳ ସୂର୍ଯ୍ୟ ଚାରିପଟେ ଘୂର୍ଣ୍ଣାୟମାନ ବୋଲି ଧାରଣା ଦେଇ ପୂର୍ବରୁ ଥିବା ଟଲେମିଙ୍କ ମତକୁ ଖଣ୍ଡନ କରିଥିଲେ । ଏହାଛଡା ପୃଥିବୀର ଉର୍ଦ୍ଧ୍ୱରେ ଓ ତାକୁ ଆବରଣ କରି ଯେ ସ୍ୱର୍ଗ ରହିଛି ସେହି ମତକୁ ଅମୂଳକ ବୋଲି ଦର୍ଶାଇଥିଲେ । ନିଜର ନାମକୁ ଗୋପନ ରଖି ଅତି ସତର୍କତାର ସହ ସେ ନିଜର ମତ ଦେଇଥିଲେ । ପରେ ଗାଲିଲିଓ ପୃଥିବୀ ଓ ସୌର ମଣ୍ଡଳର ଅନ୍ୟାନ୍ୟ ଗ୍ରହ ସୂର୍ଯ୍ୟ ଚାରିପଟେ ଗତିଶୀଳ, ଓ ସୂର୍ଯ୍ୟ ସ୍ଥିର ପ୍ରକଳ୍ପକୁ ଦୃଢ ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠା କଲେ । ଗାଲିଲିଓଙ୍କର ଏହି ମତ ଯୋଗୁଁ ତାଙ୍କୁ ନାନା ନିର୍ଯ୍ୟାତନା ସହ୍ୟ କରିବାକୁ ହୋଇଛି । ଧର୍ମୀୟ ବିରୋଧ ସତ୍ତ୍ୱେ ବୈଜ୍ଞାନିକମାନଙ୍କର କେତେକ ବୈପ୍ଳବିକ ଆବିଷ୍କାର ଓ ଉଦ୍‌ଭାବନ ଯୋଗୁଁ ସଂପ୍ରତି ବିଶ୍ୱ ସଂକ୍ରାନ୍ତରେ ବହୁ ତଥ୍ୟ ମଣିଷ ଜାତି ଲାଭ କରିବାକୁ ସମର୍ଥ ହୋଇଛି । ଜ୍ୟୋତିର୍ବିଜ୍ଞାନ ଓ ଖଗୋଳ ପଦାର୍ଥ ବିଜ୍ଞାନ ବିଶ୍ୱ ସଂକ୍ରାନ୍ତରେ ଜ୍ଞାନର ଦିଗନ୍ତକୁ ବିସ୍ତାରିତ

କରି ଚାଲିଛନ୍ତି । ସେହି ଜ୍ଞାନର ଆଧାର ଉପରେ ମହାକାଶ ଯାନ, ଉପଗ୍ରହ ଜରିଆରେ ସମ୍ବାଦ ପ୍ରେରଣ, ଟେଲିଭିଜନ, ଇଣ୍ଟରନେଟ୍ ଇତ୍ୟାଦି ବହୁ ବିସ୍ମୟକର ବିଷୟ ଆଜି ସମ୍ଭବ ହୋଇପାରିଛି ।

## ଜୀବନ ଓ ଆତ୍ମା :

ସାଂପ୍ରତିକ ଗବେଷଣାରୁ ଏହା ଜଣାପଡିଛି ଯେ ପୃଥିବୀର ଉତ୍ପତ୍ତି ପ୍ରାୟ ୪୦୦ କୋଟି ବର୍ଷ ପୂର୍ବରୁ ହୋଇଛି । ପୃଥିବୀର ଉତ୍ପତ୍ତିର ବହୁ ବର୍ଷ ପରେ ଯେତେବେଳେ ତାର ଉତ୍ତାପ ଓ ବାୟୁମଣ୍ଡଳର ଅବସ୍ଥା ଅନୁକୂଳ ହେଲା ନାନା ରାସାୟନିକ ପ୍ରକ୍ରିୟା ମଧ୍ୟ ଦେଇ ଜୀବନ ଉଦ୍‌ଭବ ହେଲା । ସେହି ସମୟର ପୃଥିବୀ ପୃଷ୍ଠର ଉତ୍ତାପ ଓ ଆଗ୍ନେୟ ଶକ୍ତିର ପ୍ରଭାବରେ ମିଥେନ, ଆମୋନିଆ ଓ ଜଳର ସଂଯୋଗ ମଧ୍ୟ ଦେଇ ଜୈବିକ ଅଣୁ ସୃଷ୍ଟି ହେଲା । ସଂପ୍ରତି ମଧ୍ୟ ସେହି ସମୟର ପରିବେଶ ଓ ଉତ୍ତାପକୁ ଅନୁମାନ କରାଯାଇ କୃତ୍ରିମ ଉପାୟରେ ନିୟନ୍ତ୍ରିତ ପରିସ୍ଥିତି ଭିତରେ ବିଜ୍ଞାନଗାରରେ ଜୈବିକ ଅଣୁ ସୃଷ୍ଟି କରିବା ସମ୍ଭବ ହୋଇଛି । ଏହି ଅଣୁରୁ ଅକ୍ସିଡେସନ ଜନିତ ରାସାୟନିକ ପ୍ରକ୍ରିୟା ମଧ୍ୟ ଦେଇ ଶକ୍ତି କ୍ଷରଣ ସମ୍ଭବ ହେଲା ଓ ଆସ୍ତେ ଆସ୍ତେ ଏଥିରେ ଶ୍ୱାସକ୍ରିୟା ସଂଘଟିତ ହେବାକୁ ଲାଗିଲା । ବସ୍ତୁରଏହିପରି ଅନୁକୂଳ ସ୍ଥିତିରେ ଯେତେବେଳେ ଶ୍ୱାସ-ପ୍ରକ୍ରିୟା ଜନିତ ପ୍ରାଣଶକ୍ତିର ଉଦ୍‌ଭବ ହେଲା ତାହା ଏକ ଜୀବନ ସତ୍ତାର ଶରୀର ହେବାକୁ ସମର୍ଥ ହେଲା ।

ଜୈବିକ ବସ୍ତୁର ଅଣୁରୁ ଲକ୍ଷ ଲକ୍ଷ ବର୍ଷର ଅନେକ ପରିବର୍ତ୍ତନ ମଧ୍ୟ ଦେଇ ଏକ କୋଷୀ ସଜୀବ ପ୍ରାଣୀର ଉଦ୍ଭବ ହେଲା । ଏହି ଏକ କୋଷୀ ଜୀବମାନଙ୍କଠାରୁ ଲକ୍ଷ ଲକ୍ଷ ବର୍ଷର ବିବର୍ତ୍ତନ ପ୍ରକ୍ରିୟା ଓ ପ୍ରାକୃତିକ ସନ୍ତୁଳନ ମଧ୍ୟ ଦେଇ ଆଜିର ଜୀବ ଜଗତ ସମ୍ଭବ ହୋଇଛି । ଏପରିକି କେତେକ ଜ୍ୟୋତିଃ ପଦାର୍ଥ ବିଜ୍ଞାନୀଙ୍କ ମତରେ ଏହି ବିଶ୍ୱ ବ୍ରହ୍ମାଣ୍ଡରେ ଥିବା ଅସଂଖ୍ୟ ଗ୍ରହ ଉପଗ୍ରହରେ ଜୀବନର ସତ୍ତା ରହିବା ଅସମ୍ଭବ ନୁହେଁ । ଏପରିକି କୌଣସି ଗ୍ରହରେ ମଣିଷଠାରୁ ଅଧିକ ବୁଦ୍ଧିମାନ ଜୀବ ସତ୍ତାର ବିବର୍ତ୍ତନ ହେବାବି ସମ୍ଭବ ହୋଇଥାଇପାରେ । ଜୀବନର ସୃଷ୍ଟି ଓ ବିବର୍ତ୍ତନ ପାଇଁ ହୁଏତ କୌଣସି ଗ୍ରହରେ ପୃଥିବୀ ଅପେକ୍ଷା ଅଧିକ ଅନୁକୂଳ ଅବସ୍ଥା ଥାଇପାରେ ।

ସୁତରାଂ ରାସାୟନିକ ମାନଦଣ୍ଡରୁ ଶ୍ୱାସକ୍ରିୟା ଓ ଅକ୍ସିଡେସନ ପ୍ରକ୍ରିୟାରେ ଗ୍ଲୁକୋଜ, ଫ୍ୟାଟ୍ ଓ ପ୍ରୋଟିନ ମଧ୍ୟ ଦେଇ ଜୀବକୋଷରେ ସୃଷ୍ଟି ହେଉଥିବା ଶକ୍ତିକୁ ହିଁ ଜୀବନ ଭାବରେ ନିଆଯାଇପାରେ । ଅର୍ଥାତ୍ କୋଷ ଭିତରେ ସଂଘଟିତ ରାସାୟନିକ ପ୍ରକ୍ରିୟାରୁ ଜୀବନର ଉଦ୍ଭବ ହେଉଛି । ସୁତରାଂ ଜୀବନର ଅସ୍ତିତ୍ୱ ଶରୀର ଭିତରେ ସଂଘଟିତଏକ ସୂକ୍ଷ୍ମାତିସୂକ୍ଷ୍ମ ସତ୍ତା ଭାବରେ ଥିବା ଧାରଣା ଠିକ୍ ନୁହେଁ । ବରଂ ଗୋଟିଏ ଶରୀରରେ ଥିବା ଅସଂଖ୍ୟ ଜୀବକୋଷ ମଧ୍ୟରେ ସଂପନ୍ନ ହେଉଥିବା ଅକ୍ସିଡେସନ ପ୍ରକ୍ରିୟା ଯୋଗୁଁ ଜୀବନ ରହିପାରିଛି । ଏହି ପ୍ରକ୍ରିୟା ଶ୍ୱାସକ୍ରିୟା ଓ ରକ୍ତ ସଞ୍ଚାଳନ ଯୋଗୁଁ ସମ୍ଭବ ହେଉଛି । ଯେତେବେଳେ ଏହି ସମସ୍ତ ରାସାୟନିକ କ୍ରିୟାର ପରିସମାପ୍ତି ଘଟେ ବା ତାହା ବନ୍ଦ ହୋଇଯାଏ ସେତେବେଳେ ଜୀବ ମୃତ୍ୟୁ ମୁଖରେ ପଡେ । ସୁତରାଂ ମୃତ୍ୟୁର ଅର୍ଥ ଶରୀର ମଧ୍ୟରୁ ଏକ ଚେତନ ସତ୍ତା ବା ଆତ୍ମା ପୃଥକ୍ ହୋଇଯିବାକୁ ବୁଝାଏ ନାହିଁ ବରଂ ଏକ ରାସାୟନିକ କ୍ରିୟାର ପରିସମାପ୍ତିକୁ ବୁଝାଏ ।

ଏହି ପ୍ରକ୍ରିୟାକୁ ସାଦୃଶ୍ୟ ଯୁକ୍ତି ମାଧ୍ୟମରେ କୋଭୁର ଏକ ଦହନ ବସ୍ତୁ ସହିତ ତୁଳନା କରିଛନ୍ତି । କୌଣସି ଇନ୍ଧନ ବା ଏକ ମହମବତି ଜଳିବାରୁ ଯେଉଁ ଅଗ୍ନି ଉତ୍ପନ୍ନ ହୁଏ ତାହା ଏକ ରାସାୟନିକ କ୍ରିୟାର ମଧ୍ୟ ପରିଣାମ । ନିଆଁର ଉତ୍ପତ୍ତି ଯେପରି କୌଣସି ଇନ୍ଧନର ଦହନ ଅଭାବରେ ହେବା ସମ୍ଭବ ନୁହେଁ, ସେହିପରି ଜୀବନର ଉତ୍ପତ୍ତି ଶରୀର ଓ ଶରୀର ଭିତରେ ଥିବା କୋଷ ମଧ୍ୟସ୍ଥ ରାସାୟନିକ କ୍ରିୟାର ଅଭାବରେ ରହିବା ସମ୍ଭବପର ନୁହେଁ । ଅମ୍ଳଜାନ,ଉତ୍ତାପ ଓ ହାଇଡ୍ରୋକାର୍ବନ ମଧ୍ୟରେ ରାସାୟନିକ କ୍ରିୟା ଯୋଗୁଁ ଇନ୍ଧନର ଦହନ ସମ୍ଭବପର ହୋଇଥାଏ । ଏହି ପ୍ରକ୍ରିୟା ବନ୍ଦ ହେଲେ ଇନ୍ଧନ ଜଳେ ନାହିଁ ଓ ପୁନଶ୍ଚ ଆରମ୍ଭ ହେଲେ ତାହା ଜଳିଥାଏ । କିନ୍ତୁ ଇନ୍ଧନ ଭିତରୁ କିଛି ଶକ୍ତି ଲିଭିବାରେ ବାହାରି ଯାଉଛି ଓ ପୁଣି ଜଳିବାଦ୍ୱାରା ପ୍ରବେଶ କରୁଛି କହିବା ଯେପରି ଭ୍ରମାତ୍ମକ ସେହିପରି ମୃତ ଜୀବ ଦେହରୁ କିଛି ଚେତନା ବାହାରି ଯାଉଛି କହିବା ମଧ୍ୟ ଭୁଲ ଅଟେ । ଜୀବନ ଅର୍ଥ ଶରୀର ଓ ଆତ୍ମା ପରି ଦୁଇଟି ସତ୍ତାର ମିଶ୍ରଣ ନୁହେଁ ବରଂ ଗୋଟିଏ ସତ୍ତା ମଧ୍ୟରେ ସଂଘଟିତ ହେଉଥିବା ଏକ ରାସାୟନିକ ପ୍ରକ୍ରିୟାର ପରିଣତି ମାତ୍ର । ଜୀବନ ଏକ ସତ୍ତା ନୁହଁ, ଏହା ଏକ ପ୍ରକ୍ରିୟା ।

କୌଣସି ଜୀବର ସ୍ୱାଭାବିକ ମୃତ୍ୟୁ ପୂର୍ବରୁ ଜୀବକୋଷର ମୃତ୍ୟୁ ଓ ନୂଆ ଜୀବକୋଷର ସୃଷ୍ଟି ଅନବରତ ଚାଲିଥାଏ । ଏକ ପ୍ରାଣୀ ଏକ ପରାଙ୍ଗପୁଷ୍ଟ ଭାବରେ ମାତୃ ଗର୍ଭରେ ଜୀବନ ଆରମ୍ଭ କରେ ଓ ଜନ୍ମ ପରେ ତାର ଅନେକ ଜୀବକୋଷ ନଷ୍ଟ ହୋଇଯାଏ । ଜନ୍ମପରଠୁ ଏକ ପ୍ରାଣୀର ଜୀବକୋଷ ନଷ୍ଟ ହେଉଥାଏ ଓ ନୂତନ କୋଷର ସୃଷ୍ଟିରେ ତାହାର ବୃଦ୍ଧି ହେଉଥାଏ । ମଣିଷ ଚୁଳ ଓ ନଖ କାଟିଥାଏ ଓ ମଲା ଚମ ପରି ଦୈହିକ ଉପାଦାନକୁ ପରିତ୍ୟାଗ କରୁଥାଏ । ସେହିପରି ଆକସ୍ମିକ କଟିଯିବା, କୌଣସି ରୋଗ-ଜୀବାଣୁ ଶରୀର ଭିତରେ ପ୍ରବେଶ କରିବା, କ୍ଷତ ହେବା, ଅସ୍ତ୍ରୋପଚାର ଦ୍ୱାରା ଶରୀରର କୌଣସି ଅଂଶ ବାହାର କରିଦେବା, ଅମ୍ଳଯୁକ୍ତ ଖାଦ୍ୟ ବା ନିଶା ଦ୍ରବ୍ୟ ସେବନ କରିବା ଦ୍ୱାରା ଶରୀରର ଅନେକ କୋଷ ମଧ୍ୟ ନଷ୍ଟ ହୁଏ । ଯୁବକ ଅବସ୍ଥାରେ ନୂତନ କୋଷର ସୃଷ୍ଟି କୋଷର ମୃତ୍ୟୁ ତୁଳନାରେ ଅଧିକ ହେଉଥାଏ, କିନ୍ତୁ ଆସ୍ତେ ଆସ୍ତେ ଏହା ସମାନ ସ୍ତରକୁ ଆସି ପରେ କୋଷର ମୃତ୍ୟୁହାର ତ୍ୱରାନ୍ୱିତ ହୋଇଚାଲେ । ଯେତେବେଳେ ଶରୀରର କୌଣସି କୋଷ ନୂତନ କୋଷ ସୃଷ୍ଟି କରିବାକୁ ସକ୍ଷମ ହୁଏ ନାହିଁ ବା ଜୀବିତ ରୁହେ ନାହିଁ ସେତେବେଳେ ବ୍ୟକ୍ତି ଭିତରେ ଚାଲୁଥିବା ରାସାୟନିକ କ୍ରିୟା ଓ ମସ୍ତିଷ୍କର କାର୍ଯ୍ୟ ଅଚଳ ସ୍ତରକୁ ଚାଲିଆସେ ଓ ଏହାକୁ ମୃତ୍ୟୁ କୁହାଯାଏ । ଏପରିକି ମୃତ୍ୟୁ ପରେ ଶରୀରର କୌଣସି ଅଂଶ ଅନ୍ୟ ଏକ ବ୍ୟକ୍ତିର ଶରୀରରେ ରୋପଣ କରଯାଇ ପାରିଲେ ସେଠାରେ ପୁନଶ୍ଚ ତାହା ଅନ୍ୟ ଶରୀରର କୋଷ ଦ୍ୱାରା ପୁଷ୍ଟ ହୋଇ କାର୍ଯ୍ୟ କରିପାରେ । ଜଣେ ବ୍ୟକ୍ତିର ଶରୀରରୁ ଜୀବଦଶା ଭିତରେ ଯେଉଁ ଅସଂଖ୍ୟ ମୃତକୋଷ ଓ ଟିସୁ ବାହାରି ଯାଇଥାଏ ତାହାର ଓଜନ ବ୍ୟକ୍ତି ଶରୀରର ହଜାର ହଜାର ଗୁଣ ହୋଇଥାଏ । ସେହିପରି ଯୌନ କ୍ରିୟାରେ ବ୍ୟକ୍ତି ଦେହରୁ ଯେଉଁ କୋଷ ଭିନ୍ନ ଲିଙ୍ଗୀ ବ୍ୟକ୍ତିର କୋଷ ସହିତ ମିଳିତ ହୁଏ ସେଥିରୁ ନୂତନ ଜୀବନର ସଂଚାର ହୁଏ ଓ ତାହା ପ୍ରଥମରେ ପରାଙ୍ଗପୁଷ୍ଟ ହୋଇ ଗଢି ଉଠିବା ସହିତ ଜନ୍ମ ପରେ ସ୍ୱାଧୀନ ଭାବରେ ବଞ୍ଚିରହେ । ସୁତରାଂ ଜୀବନ ଓ ମୃତ୍ୟୁ ବସ୍ତୁର ରାସାୟନିକ ପ୍ରକ୍ରିୟାର ପରିଣାମ ମାତ୍ର । ଏହା ଦୁଇଟି ପୃଥକ ସତ୍ତା ଶରୀର ଓ ଆତ୍ମାର ସଂଯୋଗ ନୁହଁ ବା ମୃତ୍ୟୁ ଶରୀର ଓ ଆତ୍ମାର ପୃଥକୀକରଣ ନୁହଁ ।

ଜୀବନ ମନ ସହିତ ସମାନ ନୁହେଁ । କାରଣ ଗୋଟିଏ ଏକ କୋଷୀ ବା ବହୁ କୋଷୀ ପ୍ରାଣୀ ହେଉ ପ୍ରତ୍ୟେକଥିରେ ଜୀବନ ଥାଏ । ଗୋଟିଏ ବୃକ୍ଷ, କୀଟ ବା ମଣିଷର

ଜୀବନ ଭିତରେ ଏହି ମାନଦଣ୍ଡରୁ ପାର୍ଥକ୍ୟ ନଥାଏ । ଏମାନଙ୍କ ମଧ୍ୟରେ ଉଲ୍ଲେଖନୀୟ ପାର୍ଥକ୍ୟ ସେମାନଙ୍କ ଭିତରେ ହୋଇଥିବା ମାନସିକ ବିକାଶର ପାର୍ଥକ୍ୟ ଉପରେ ପର୍ଯ୍ୟବସିତ । ମାନସିକ ବିବର୍ତ୍ତନ ଧାରାରେ ଯେଉଁ ଗୁଣାତ୍ମକ ପାର୍ଥକ୍ୟ ଦେଖାଯାଏ ତାହା ସ୍ନାୟବିକ ବିକାଶ ଉପରେ ନିର୍ଭର କରିଥାଏ । ଗୋଟିଏ ଜୀବନ୍ତ ଆଳୁ ମଧ୍ୟରେ ମନର ବିକାଶ ହୋଇ ନ ଥିଲାବେଳେ ଗୋଟିଏ କୀଟ ପାଖରେ ଏହା ଅବଦମିତ ଅବସ୍ଥାରେ ଥାଏ କିନ୍ତୁ ମନୁଷ୍ୟ କ୍ଷେତ୍ରରେ ଏହାର ଅତ୍ୟନ୍ତ ବିକାଶ ହୋଇଥାଏ । ହୁଏତ ମନୁଷ୍ୟଠାରୁ ଅଧିକ ବିକଶିତ ମାନସିକ ସ୍ଥିତି ଥିବା କୌଣସି ଜୀବ ବିରାଟ ବିଶ୍ୱର ଅନ୍ୟ କେଉଁ ଗ୍ରହରେ ଥିବା ଅସମ୍ଭବ ନୁହେଁ ।

ମୋଟ ଉପରେ ସମସ୍ତ ସଜୀବ ବସ୍ତୁଠାରେ ଜୀବନ ସାଧାରଣ ଭାବରେ ରହିଥିବାବେଳେ ଯେଉଁ ଜୀବମାନଙ୍କ ପାଖରେ କେତେକ ନିର୍ଦ୍ଦିଷ୍ଟ କୋଷ ଥାଏ (ଯାହାକୁ ନିଉରନ୍ କୁହାଯାଏ ଓ ଯାହା ପ୍ରାଣୀର ମସ୍ତିଷ୍କ ଗଠନ କରିଥାଏ) ସେମାନଙ୍କ ପାଖରେ ମନର ବିକାଶ ହୋଇଥାଏ । ନିଉରନ ମଧ୍ୟରେ ସଂଘଟିତ ହେଉଥିବା ଶାରୀରିକ- ରାସାୟନିକ କ୍ରିୟାର ପରିଣାମରୁ ମାନସିକ ସାମର୍ଥ୍ୟ ସୃଷ୍ଟି ହୋଇଥାଏ । ବିବର୍ତ୍ତନ ଧାରାରେ  ଆମେ ଯେତିକି ଯେତିକି ତଳକୁ ଆସିବା ମାନସିକ କ୍ରିୟା ବା ସାମର୍ଥ୍ୟ କ୍ଷେତ୍ରରେ ମଧ୍ୟ ସେତିକି ଗୁଣାତ୍ମକ ପାର୍ଥକ୍ୟ ଲକ୍ଷ୍ୟ କରିବା; କିନ୍ତୁ ଜୀବନ କ୍ଷେତ୍ରରେ ଏହି ପାର୍ଥକ୍ୟ ଦେଖିବା ନାହିଁ । ବାହ୍ୟ ପରିସ୍ଥିତି ପ୍ରତି ମାନସିକ ପ୍ରତିକ୍ରିୟା ପ୍ରକାଶ କରିବା କ୍ଷେତ୍ରରେ ପରିମାଣାତ୍ମକ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ଗୋଟିଏ ମେରୁଦଣ୍ଡୀ ପ୍ରାଣୀର ମସ୍ତିଷ୍କର ବିକାଶ ନିଉରନରେ ପୁଷ୍ଟ ହୋଇଛି । ମଣିଷ ପାଖରେ ଯେଉଁ ମସ୍ତିଷ୍କ ଦେଖିବାକୁ ମିଳେ ତାହା ଧରାପୃଷ୍ଠରେ ଥିବା ସମସ୍ତ ଜୀବଠାରୁ ଉନ୍ନତ । ସୃଜନଶୀଳ ଚିନ୍ତନ, ବିଚାର ସାମର୍ଥ୍ୟ ଓ ଭାଷା ମାଧ୍ୟମରେ ଅନ୍ୟ ସହିତ ସମ୍ପର୍କ ସ୍ଥାପନ କରିବାକୁ ମଣିଷ ସମର୍ଥ ହୋଇପାରୁଛି । ବିଶିଷ୍ଟ ସ୍ନାୟୁବିଜ୍ଞାନୀ ୱାଲଟର ହେସମାନ୍ ମାନସିକ ପ୍ରକ୍ରିୟା ଉପରେ ମୌଳିକ ଗବେଷଣା ଯୋଗୁଁ ନୋବେଲ ପୁରସ୍କାର ପାଇଛନ୍ତି । ସେ କୃତ୍ରିମ ପଦ୍ଧତିରେ ମସ୍ତିଷ୍କର ନିୟନ୍ତ୍ରିତ ସ୍ନାୟୁକେନ୍ଦ୍ରରେ ବୈଦ୍ୟୁତିକ ସଂଚାଳନ ଦ୍ୱାରା ମାନସିକ ଆବେଗ ସୃଷ୍ଟି ହେବା ଦର୍ଶାଇଛନ୍ତି । ଏପରିକି ସାଂପ୍ରତିକ ଗବେଷଣାରୁ ଜଣାପଡୁଛି ଯେ ପ୍ରେମ, ଘୃଣା, ରାଗ, ଦୟା ଇତ୍ୟାଦି ମାନସିକ ଆବେଗ ମସ୍ତିଷ୍କ ଦ୍ୱାରା ନିୟନ୍ତ୍ରିତ ସ୍ନାୟବିକ କେନ୍ଦ୍ରରେ ବୈଦ୍ୟୁତିକ ଉଦ୍ଦୀପନା

ଯୋଗୁଁ ସୃଷ୍ଟି କରାଯାଇପାରେ । ସୁତରାଂ ଆମେ ଯାହାକୁ ମନ କହୁଛେ ତାହା ମସ୍ତିଷ୍କର ନିଉରନରେ ବୈଦ୍ୟୁତିକ ସଞ୍ଚାଳନ ଜନିତ କେତେକ ରାସାୟନିକ ପ୍ରକ୍ରିୟାର ପରିଣାମ ଅଟେ । ମସ୍ତିଷ୍କ, ନିଉରନ ଓ ତତ୍‌ଜନିତ ପ୍ରକ୍ରିୟାର ଅଭାବରେ ମାନସିକ କାର୍ଯ୍ୟ ହେବା ଯେପରି ଅସମ୍ଭବ, ସେହିପରି ଶରୀରରୁ ପୃଥକ ହୋଇ ପାରୁଥିବା ଏକ ମନର ସ୍ଥିତିର କଳ୍ପନା ମଧ୍ୟ ଅସମ୍ଭବ । ସୁତରାଂ ମନ ଓ ମାନସିକ ପ୍ରକ୍ରିୟା ବୋଲି ଯାହା କୁହାଯାଉଛି ତାହା ଯେ ଶାରୀରିକ ପ୍ରକ୍ରିୟାରୁ ଉତ୍ପନ୍ନ ଏହା ସାଂପ୍ରତିକ ଗବେଷଣାରୁ ସ୍ପଷ୍ଟ ହେବାରେ ଲାଗିଛି ।

ସେହିପରି ଆତ୍ମା ପ୍ରତୀତି ସଂକ୍ରାନ୍ତରେ ଏହା କୁହାଯାଇପାରେ ଯେ ଏହା କେବଳ ଏକ ଧର୍ମୀୟ ବିଶ୍ୱାସ । କୌଣସି ଶାରୀରିକ ସ୍ଥିତି ନ ଥାଇ ଏକ ଚେତନ ସ୍ଥିତି ରହିବା ସମ୍ଭବ କି ? ଆତ୍ମା ସଂକ୍ରାନ୍ତରେ କୌଣସି ଏକକ ପ୍ରତୀତି ନଥାଇ ବରଂ ଧର୍ମମାନଙ୍କ ମଧ୍ୟରେ ନାନାବିଧ ପ୍ରତ୍ୟୟ ଦେଖିବାକୁ ମିଳେ । ଏପରିକି ବିଭିନ୍ନ ଦର୍ଶନ ବିଦ୍ୟାଳୟ ମଧ୍ୟରେ ଆତ୍ମାର ସ୍ୱରୂପ ନେଇ ଭିନ୍ନ ଭିନ୍ନ ଧାରଣା ରହିବା ଦେଖାଯାଏ । ଆତ୍ମାର ସ୍ଥିତି କୌଣସି ବସ୍ତୁନିଷ୍ଠ ତଥ୍ୟ ଉପରେ ପର୍ଯ୍ୟବସିତ ନ ଥିବାରୁ ଆତ୍ମା ନେଇ ଏକକ ପ୍ରତୀତି ନାହିଁ । ଈଶ୍ୱରଙ୍କୁ କଳ୍ପନା କଲା ପରି ଶରୀରରୁ ପୃଥକ ହୋଇ ପାରୁଥିବା ଏକ ଆତ୍ମାର କଳ୍ପନା ଭିତରେ ଏହାର ସ୍ୱରୂପ ନେଇ ଭିନ୍ନ ଭିନ୍ନ ଧର୍ମ ଓ ଦର୍ଶନ ଧାରାରେ ଭିନ୍ନ ଭିନ୍ନ କଳ୍ପନା ଦେଖିବାକୁ ମିଳେ । କେତେକ ଆତ୍ମାକୁ ଜୀବନ ସହିତ ସମାନ କଲାବେଳେ ଅନ୍ୟ କେତେକ ଏହାକୁ ମନ ସହିତ ସମାନ କରି ହୃଦୟରେ ଏହାର ସ୍ଥିତିକୁ କଳ୍ପନା କରିଛନ୍ତି । କିନ୍ତୁ ସଂପ୍ରତି ଚିକିତ୍ସା ବିଜ୍ଞାନର ବିକାଶ ଯୋଗୁଁ ଅସ୍ତ୍ରୋପଚାର ଦ୍ୱାରା ଜଣଙ୍କର ହୃଦୟ ଅନ୍ୟ ଜଣଙ୍କ ପାଖରେ ଆରୋପିତ ହେଉଥିବା ସମ୍ଭବ ହେଉଥିବାରୁ ଏହି ପ୍ରକଳ୍ପ ଯେ ହାସ୍ୟାସ୍ପଦ ଏହା କୋଭୁର ଦର୍ଶାଇଛନ୍ତି । ସେହିପରି ଯଦି ଆତ୍ମାର ଅଧିଷ୍ଠାନ ମସ୍ତିଷ୍କ ବୋଲି କୁହାଯାଏ ତେବେ ଯେଉଁ ଜୀବମାନଙ୍କର ଶିରଚ୍ଛେଦ ପରେ ସେମାନେ ବଞ୍ଚି ରହୁଛନ୍ତି (ଏ ପ୍ରକାର ଅନେକ କୀଟ ଓ ଜୀବ ରହିଛନ୍ତି) ସେମାନଙ୍କର ଆତ୍ମା କୁଆଡେ ଯାଉଛି ? ଯଦି ଆତ୍ମା ସମସ୍ତ ଶରୀରରେ ବିସ୍ତାର ଲାଭ କରି ରହିଛି ବୋଲି କୁହାଯାଏ ତେବେ ଜଟିଳ ସମସ୍ୟା ଆସିବ ଯାହା ସମାଧାନ କରଯାଇପାରିବ ନାହିଁ । କେତେକ ଜୀବ ସେମାନଙ୍କର ଚର୍ମର ରନ୍ଧ୍ର ଦେଇ ଅମ୍ଳଜାନ ଗ୍ରହଣକରି ବଞ୍ଚନ୍ତି, ସେମାନଙ୍କୁ ଖଣ୍ଡ ଖଣ୍ଡ କରି କାଟିବା ପରେ ମଧ୍ୟ

ପ୍ରତ୍ୟେକଟି ଅଂଶ ଅମ୍ଳଜାନ ଗ୍ରହଣକରି ପୁନଶ୍ଚ ବୃଦ୍ଧି ହୋଇ ପୂର୍ଣ୍ଣ ଜୀବରେ ପରିଣତ ହୋଇଥାନ୍ତି । ସେ କ୍ଷେତ୍ରରେ ନୂତନ ଜୀବର ଆତ୍ମା କଣ ମୂଳ ଜୀବର ଆତ୍ମାର କେତେକ ଅଂଶ ପାଇଛି ବୋଲି କୁହାଯିବ ? ଅର୍ଥାତ୍ ଆତ୍ମା ଛେଦ୍ୟ ହେଉଛି କି ? ବିଭିନ୍ନ ସ୍ତନ୍ୟପାୟୀ ଜୀବଙ୍କ କ୍ଷେତ୍ରରେ ଓ ବିଶେଷତଃ ମଣିଷ ପାଖରେ ଶାରୀରିକ ଛେଦନ ଦ୍ୱାରା ନୂତନ ଜୀବର ସୃଷ୍ଟି ସମ୍ଭବ ନୁହେଁ । କାରଣ ମନୁଷ୍ୟ ଓ ଅନ୍ୟ ସ୍ତନ୍ୟପାୟୀ ଜୀବଙ୍କ ଶରୀର କ୍ଷେତ୍ରରେ ଏକ କେନ୍ଦ୍ରୀୟ ଶ୍ୱାସକ୍ରିୟା ବ୍ୟବସ୍ଥା ରହିଛି । କିନ୍ତୁ ଗୋଟିଏ ଶାରୀରିକ କ୍ରିୟାର ବିକାଶ ପୂର୍ବରୁ ମାତୃ ଗର୍ଭରେ ଭ୍ରୂଣ ଅବସ୍ଥାରେ ଥିବାବେଳେ ତାହା କେତେକ ଅଂଶରେ ବିଭକ୍ତ ହୋଇଗଲେ ବିଭିନ୍ନ ଅଂଶ ସମଭାବରେ ମାତୃ ଗର୍ଭରେ ବିକାଶଲାଭ କରିଥାଏ ଓ ଜଣେ ମହିଳା ଏକକାଳୀନ ଦୁଇ, ତିନି ବା ଅଧିକ ଜାଆଁଳା ସନ୍ତାନ ଜନ୍ମ କରିବାର ଦୃଷ୍ଟାନ୍ତ ବିରଳ ନୁହେଁ । ସୁତରାଂ ଅବିଭକ୍ତ ଭ୍ରୂଣ ମଧ୍ୟରେ ଥିବା ଆତ୍ମା କଣ ବିଭିନ୍ନ ଅଂଶରେ ଭାଗ ହୋଇ ଜନ୍ମିତ ଜାଆଁଳା ଶିଶୁମାନଙ୍କ ପାଖରେ ସ୍ଥାନ ପାଏ ?

ଜୀବର ମୃତ୍ୟୁରେ ତାର ଆତ୍ମା ଶରୀରରୁ ପୃଥକ ହୋଇଥାଏ ବୋଲି ଯେଉଁ ବିଶ୍ୱାସ ରହିଛି ତାହା ପଶ୍ଚାତରେ କୌଣସି ବୈଜ୍ଞାନିକ ଭିତ୍ତି ନାହିଁ ବୋଲି କୋଭୁର ସୂଚାଇଛନ୍ତି । ବରଂ ସାମ୍ପ୍ରତିକ ବୈଜ୍ଞାନିକ ବିଶ୍ଳେଷଣରୁ ଏହି ବିଶ୍ୱାସ ଅମୂଳକ ବୋଲି ଜଣାପଡୁଛି । ଗୋଟିଏ ମୃତ ଶରୀରକୁ ନିର୍ଦ୍ଦିଷ୍ଟ ଉତ୍ତାପ ଭିତରେ ରଖାଯାଇ ବହୁ ବର୍ଷ ପରେ କୃତ୍ରିମ ଭାବେ କ୍ରାଓଜେନିକ ବ୍ୟବସ୍ଥାରେ ଜୀବିତ କରାଇବା ସମ୍ଭବ ବୋଲି ଜଣାପଡିଛି । ସେ କ୍ଷେତ୍ରରେ କଣ ଏହା କୁହାଯିବ ଯେ ମୃତ ଶରୀରରୁ ତାର ଆତ୍ମା ଚାଲିଯାଏ ଓ ପୁନଶ୍ଚ ଜୀବିତ ହେଲେ ଆତ୍ମା ପୂର୍ବ ଶରୀରକୁ ଫେରିଆସେ ? ସେହିପରି କୃତ୍ରିମ ଅଙ୍ଗରୋପଣ ଚିକିତ୍ସା ବିଜ୍ଞାନରେ ସମ୍ଭବ ହେଉଥିବାରୁ ଜଣେ ବ୍ୟକ୍ତି ପାଖରେ ଯଦି ବିଭିନ୍ନ ଲୋକଙ୍କର ଅଙ୍ଗ ରୋପଣ କରାଯାଏ ତେବେ ଏପରି କଣ କୁହାଯିବ ଯେ ତାଙ୍କ ପାଖରେ ବିଭିନ୍ନ ବ୍ୟକ୍ତିଙ୍କର ଆତ୍ମାର ଅଂଶ ରହିଛି ?

କୋଭୁରଙ୍କ ମତରେ ପ୍ରତ୍ୟେକ ଜୀବିତ ପ୍ରାଣୀ ଭିତରେ ଅବିନାଶୀ ଆତ୍ମାର ସ୍ଥିତି ଓ ମୃତ୍ୟୁ ପରେ ଶରୀରରୁ ଅଲଗା ହୋଇଯାଉଥିବା ଏକ ଚେତନସତ୍ତା ବା ଆତ୍ମା ଏକ ଭିତ୍ତିହୀନ କାଳ୍ପନିକ ଧର୍ମୀୟ ବିଶ୍ୱାସ ଛଡା ଅନ୍ୟ କିଛି ନୁହେଁ । ଏହା ପଶ୍ଚାତରେ କୌଣସି ପରୀକ୍ଷିତ ବସ୍ତୁନିଷ୍ଠ ଆଧାର ନାହିଁ । ଅବଶ୍ୟ ସମୟେ ସମୟେ କେତେକ

ବ୍ୟକ୍ତିଙ୍କର ଅସ୍ୱାଭାବିକ ବ୍ୟବହାର ଦେଖିବାକୁ ମିଳିଥାଏ । ବିଶେଷକରି କେହି ବ୍ୟକ୍ତି କୌଣସି ମୃତ ବ୍ୟକ୍ତିଙ୍କର ବ୍ୟବହାର ସହ ସାମଞ୍ଜସ୍ୟ ଥିବା ବା ତାଙ୍କ କଥା କହିପାରୁଥିବା ଭଳି ଲକ୍ଷଣ ଦେଖାଇଥାନ୍ତି । ସୁତରାଂ ବିଭିନ୍ନ ସମାଜରେ ଧାରଣା ରହିଛି ଯେ ମୃତ ବ୍ୟକ୍ତିର ଆତ୍ମା ଅନ୍ୟ ଜୀବିତ ବ୍ୟକ୍ତି ଭିତରେ ପ୍ରବେଶ କରିବାରୁ ଜୀବିତ ବ୍ୟକ୍ତି ମୃତ ବ୍ୟକ୍ତିପରି ବ୍ୟବହାର କରୁଛନ୍ତି । ଅଶରୀର ଆତ୍ମାର ଘଟ ପ୍ରବେଶ ବା ଭୂତ ଲାଗିବାରେ ବହୁଲୋକ ବିଶ୍ୱାସ କରନ୍ତି । ଏହି ସଂକ୍ରାନ୍ତୀୟ ବହୁ ବାସ୍ତବ ଘଟଣାକୁ ପରୀକ୍ଷା କରି ତଥାକଥିତ ଭୂତ ଲାଗିଥିବା ବ୍ୟକ୍ତିଗଣ ଯେ ମାନସିକ ବିକାରଗ୍ରସ୍ତ ଏହା ସେ ଦେଖିଛନ୍ତି । ମାନସିକ ଉତ୍ତେଜନା, ଭୟ,ମନସ୍ତାତ୍ତ୍ୱିକ ଅସନ୍ତୁଳନ, ଶରୀରରେ ହରମୋନ ଜନିତ ବ୍ୟତିକ୍ରମ ଇତ୍ୟାଦି ନାନାବିଧ କାରଣରୁ କେତେକ ବ୍ୟକ୍ତି ମାନସିକ ଭାରସାମ୍ୟତା ହରାଇ ଅପ୍ରାକୃତିକ ବ୍ୟବହାର ପ୍ରଦର୍ଶନ କରିଥାନ୍ତି । ନିଜର ସାମାଜିକ ପରିବେଶରୁ ଭୂତ ପ୍ରେତର ଧାରଣା ସଂକ୍ରାନ୍ତୀୟ ଅନେକ କାଳ୍ପନିକ କାହାଣୀ ଶୁଣି ଅବଚେତନ ମନରେ ସେସବୁ ବିଶ୍ୱାସ ଦୃଢ ହୋଇଥାଏ । ପରିଣାମ ସ୍ୱରୂପ ସାମାଜିକ ଜୀବନରେ କୌଣସି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାଦ୍ୱାରା ମାନସିକ ବିକୃତି ଆରମ୍ଭ ହୁଏ ଓ ସମାଜରୁ ଲାଭ କରିଥିବା ଧାରଣା ଅନୁଯାୟୀ କେତେକ ଅପ୍ରାକୃତିକ ବ୍ୟବହାର ପ୍ରଦର୍ଶନ କରିଥାନ୍ତି । ଏହିଭଳି ଶତାଧିକ ଘଟଣାକୁ କୋଭୁର ପରୀକ୍ଷାକରି ଅସୁସ୍ଥ ବ୍ୟକ୍ତିଙ୍କର ମାନସିକ ସ୍ୱାସ୍ଥ୍ୟ ଫେରାଇ ଆଣିବାରେ ସଫଳ ହୋଇଛନ୍ତି । ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ଏଭଳି କେତେଗୁଡିଏ ଘଟଣାର ଆଲୋଚନା କରାଯାଇଛି ।

ଏହି ଆଲୋଚନା ପରିପ୍ରେକ୍ଷୀରେ ହୁଏତ ପ୍ରଶ୍ନ ଉଠିପାରେ ଯେ ଈଶ୍ୱର, ଆତ୍ମା, ଜନ୍ମାନ୍ତରବାଦ ଆଦି ପ୍ରସଙ୍ଗ ଗୁଡିକ ବିଜ୍ଞାନର ପରିସର ଭିତରେ ଆଲୋଚନା ହେବା ଅସଙ୍ଗତ । ବିଜ୍ଞାନ କେବଳ ବସ୍ତୁନିଷ୍ଠ ବା ଇନ୍ଦ୍ରିୟଲବ୍ଧ ବିଷୟବସ୍ତୁ ଉପରେ କହିବାକୁ ସମର୍ଥ, ଅଥଚ ଇନ୍ଦ୍ରିୟାତୀତ ବିଷୟ ଉପରେ ବୈଜ୍ଞାନିକ ଆଲୋଚନା ସମ୍ଭବପର ନୁହେଁ । କେବଳ ପ୍ରଜ୍ଞାବାନ ଦାର୍ଶନିକମାନେ ହିଁ ଏହିସବୁ ପ୍ରସଙ୍ଗ ଉପରେ ବିଚାର ବିମର୍ଶ କରିପାରିବେ । ଧର୍ମମାନଙ୍କରେ ବ୍ୟକ୍ତ ହୋଇଥିବା ଈଶ୍ୱର, ଆତ୍ମା, ସ୍ୱର୍ଗ, ନର୍କ ଇତ୍ୟାଦି ଗୂଢ ତତ୍ତ୍ୱ ଇତ୍ୟାଦି ବିଷୟକୁ ଦାର୍ଶନିକ ଚିନ୍ତନଦ୍ୱାରା ହିଁ ପ୍ରତିଷ୍ଠା କରାଯାଇ ପାରିବ । ଯଦିବା କୋଭୁରଙ୍କ ବୈଚାରିକ ସିଦ୍ଧାନ୍ତ ସକଳ ବୈଜ୍ଞାନିକ ମାନଦଣ୍ଡରୁ ଗଢିଉଠିଛି, ବିଜ୍ଞାନ ଓ ଦର୍ଶନ ପରସ୍ପରର ପରିପନ୍ଥୀ ନୁହନ୍ତି । କୌଣସି ଘଟଣା, କ୍ରିୟା ଓ ଅବସ୍ଥିତି ଇତ୍ୟାଦି ପ୍ରସଙ୍ଗ ଉପରେ ବିଜ୍ଞାନ ହିଁ ବସ୍ତୁନିଷ୍ଠ ଭାବରେ ନିର୍ଦ୍ଧାରିତ ପଦ୍ଧତି

ଅନୁଯାୟୀ ବିଶ୍ଳେଷଣ କରିଥାଏ । ଯାହା ବିଜ୍ଞାନଦ୍ୱାରା ସମର୍ଥିତ ତାହାକୁ ଦର୍ଶନ ଅସ୍ୱୀକାର କରିପାରେ ନାହିଁ । ଦର୍ଶନ କ୍ଷେତ୍ରରେ ବିଶ୍ଳେଷଣାତ୍ମକ ପଦ୍ଧତିରେ ବିଭିନ୍ନ ମୌଳିକ ପ୍ରତ୍ୟୟମାନଙ୍କର ସଂଜ୍ଞା ଓ ଚିନ୍ତା କ୍ଷେତ୍ରରେ ସେମାନଙ୍କର ଭୂମିକାକୁ ବ୍ୟାଖ୍ୟା କରାଯାଏ । ଈଶ୍ୱର, ଆତ୍ମା, ଜନ୍ମାନ୍ତରବାଦ ଇତ୍ୟାଦି ପ୍ରଶ୍ନ ଗୁଡିକ ଉପରେ ବିଭିନ୍ନ ଦାର୍ଶନିକ ବିଦ୍ୟାଳୟମାନଙ୍କରେ ଆଲୋଚନା ହୋଇ କେତେ କେତେ ତାତ୍ତ୍ୱିକ ସିଦ୍ଧାନ୍ତମାନ ଗଢି ଉଠିଛି । ବିଭିନ୍ନ ଧର୍ମୀୟ ମତ ଗୁଡିକର ତୁଳନାତ୍ମକ ଅଧ୍ୟୟନରୁ ସେହି ମତ ଗୁଡିକ କିପରି ପରସ୍ପର ବିରୋଧୀ ଏହା ପ୍ରତୀୟମାନ ହୋଇଥାଏ । କେଉଁ ପ୍ରକାରର ତାର୍କିକ ତ୍ରୁଟି ଓ ବୈଚାରିକ ଜଟିଳତା ଯୋଗୁଁ ସେଗୁଡିକ ଏପରି ପରସ୍ପର ବିରୋଧୀ ହୋଇଛନ୍ତି ତାହା ଗଭୀର ଦାର୍ଶନିକ ବିଶ୍ଳେଷଣରୁ ଜଣାପଡେ । ସୁତରାଂ ଦାର୍ଶନିକ ଅନୁଶୀଳନଦ୍ୱାରା ଈଶ୍ୱର ବା ଆତ୍ମାର ସ୍ଥିତିକୁ ପ୍ରତିଷ୍ଠା କରାଯାଏନାହିଁ । ବରଂ ଈଶ୍ୱର, ଆତ୍ମା, କର୍ମବାଦ, ପୁନର୍ଜନ୍ମ ଇତ୍ୟାଦି ପ୍ରକଳ୍ପର ବାସ୍ତବ ସ୍ଥିତି କ୍ଷେତ୍ରରେ ଦିଆଯାଉଥିବା ପ୍ରମାଣ ଗୁଡିକର ତାର୍କିକ ବୈଧତାକୁ ଦର୍ଶନ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଥାଏ । ଏସବୁ କ୍ଷେତ୍ରରେ ରହିଥିବା ଯୁକ୍ତି କିପରି ଦୋଷଯୁକ୍ତ ତାହା ଦର୍ଶନ ଇତିହାସରେ ବିଶ୍ଳେଷଣଦ୍ୱାରା ଦର୍ଶାଯାଇଛି । ବିଜ୍ଞାନ ପର୍ଯ୍ୟବେକ୍ଷଣ, ପରୀକ୍ଷଣ, ପ୍ରକଳ୍ପ ପ୍ରଣୟନ, ସାମାନ୍ୟୀକରଣ ଓ ବସ୍ତୁନିଷ୍ଠ ସମର୍ଥନ ଦ୍ୱାରା ଏହାର ଜ୍ଞାନର ସୌଧକୁ ନିର୍ମାଣ କରୁଥିବାବେଳେ ଦର୍ଶନ ବିଶ୍ଳେଷଣାତ୍ମକ ପଦ୍ଧତିରେ ଜ୍ଞାନ ସ୍ତରରେ ସଂଶ୍ଳିଷ୍ଟ ଥିବା ମୌଳିକ ପ୍ରତ୍ୟୟ ଗୁଡିକର ତାର୍କିକ ଭିତ୍ତି ସ୍ୱଷ୍ଟ କରିଥାଏ । ସୁତରାଂ ବିଜ୍ଞାନ ଓ ଦର୍ଶନର ପରିସର ପୃଥକ ହେଲେ ବି ଉଭୟ ଜ୍ଞାନର ପରିସରକୁ ଭିନ୍ନ ଭିନ୍ନ ମାନଦଣ୍ଡରୁ ଋଦ୍ଧିମନ୍ତ କରିଥାନ୍ତି । ବିଜ୍ଞାନ ଦୃଶ୍ୟମାନ ଜଗତ ଉପରେ ଜ୍ଞାନ ଦେବାକୁ ଉଦ୍ଦିଷ୍ଟ କିନ୍ତୁ ଦର୍ଶନ ଇନ୍ଦ୍ରିୟାତୀତ ପାରଲୌକିକ ବିଷୟ ଉପରେ ଜ୍ଞାନ ଦେବାକୁ ଅଭିପ୍ରେତ ଭାବିବା ଏକ ଭିତ୍ତିହୀନ ଓ ଭ୍ରମାତ୍ମକ ବିଚାର ଅଟେ ।

ବିଶେଷ କରି ଈଶ୍ୱର, ଆତ୍ମା,ଜନ୍ମାନ୍ତରବାଦ ଇତ୍ୟାଦି ଧର୍ମୀୟ ବିଶ୍ୱାସ ଗୁଡିକ ଉପରେ ହୋଇଥିବା ଦାର୍ଶନିକ ଅନୁଶୀଳନରୁ ଏହା ସ୍ୱଷ୍ଟ ହୋଇଉଠିଛି ଯେ ଏହି ସବୁ ପ୍ରତୀତି ଗୁଡିକର ସୈଦ୍ଧାନ୍ତିକ ଭିତ୍ତି ସୁଦୃଢ ନୁହେଁ । ସେଗୁଡିକ କେବଳ ବିଶ୍ୱାସ ମାତ୍ର ଓ ଅନ୍ୟାନ୍ୟ ବିଶ୍ୱାସ ପରି ସେମାନେ ଉପଯୋଗୀ ବା କ୍ଷତିକାରକ ହୋଇପାରନ୍ତି ।



# ଭ୍ରମ ପ୍ରତ୍ୟକ୍ଷ ଓ ମାନସିକ ବିକୃତି

## ଭ୍ରମ ପ୍ରତ୍ୟକ୍ଷ :

ପୂର୍ବରୁ ଆଲୋଚନା ହୋଇଛି ଯେ କୋଭୁର ଅନୁଭବବାଦ ବା ଇନ୍ଦ୍ରିୟ ପ୍ରତ୍ୟକ୍ଷବାଦକୁ ଜ୍ଞାନଲାଭର ଭିତ୍ତି ଭାବରେ ଗ୍ରହଣ କରିଛନ୍ତି । ବସ୍ତୁନିଷ୍ଠ ଜ୍ଞାନଲାଭର ମୂଳ ଭିତ୍ତି ହେଉଛି ଆମର ଇନ୍ଦ୍ରିୟ । ଏ ବିଶାଳ ବିଶ୍ୱ ସମ୍ପର୍କରେ ଆମେ କେବଳ ଆମର ଇନ୍ଦ୍ରିୟ ସାହାଯ୍ୟରେ ଜାଣିବାକୁ ସମର୍ଥ । ଏହାଛଡା ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣର ଆଧାର ଉପରେ କୌଣସି ତଥ୍ୟର ସତ୍ୟତାକୁ ସ୍ଥିର କରାଯିବା ସମ୍ଭବ । ଅବଶ୍ୟ ଇନ୍ଦ୍ରିୟବାଦକୁ ଜ୍ଞାନଲାଭର ମୂଳ ଭିତ୍ତି ଭାବେ ଗ୍ରହଣ କଲେ ମଧ୍ୟ ସେ ଏକ ସଙ୍କୁଚିତ ଅର୍ଥରେ ଏହା କରିନାହାନ୍ତି । ତାଙ୍କର ସମଗ୍ର ଚିନ୍ତନରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅପରିହାର୍ଯ୍ୟତାକୁ ଦେଖିବାକୁ ମିଳେ । କାରଣ କେତେକ ବସ୍ତୁ ବିଷୟରେ ବୈଜ୍ଞାନିକ ଜ୍ଞାନ ଅତ୍ୟନ୍ତ ଅଭ୍ରାନ୍ତ ମନେହେଲେ ବି ସେହି ବସ୍ତୁଗୁଡିକ ଇନ୍ଦ୍ରିୟଗ୍ରାହ୍ୟ ନୁହନ୍ତି । ଅମ୍ଳଜାନ, ପରମାଣୁ, ଆଣବିକ ରଶ୍ମି ସାଧାରଣ ଭାବେ ଇନ୍ଦ୍ରିୟ-ଲବ୍ଧ ନ ହେଲେ ମଧ୍ୟ ସେଗୁଡିକ ବିଷୟରେ ବୈଜ୍ଞାନିକ ପଦ୍ଧତିରେ ଅନେକ କିଛି ଜାଣିବା ସମ୍ଭବ । କାରଣ ଏସବୁ ବିଷୟ ଉପରେ ଆମେ ଯେଉଁ ଜ୍ଞାନ ଲାଭ କରିବାକୁ ସମର୍ଥ, ତାର ପ୍ରଣାଳୀ ସ୍ୱୀକୃତ ବୈଜ୍ଞାନିକ ପଦ୍ଧତି ଦ୍ୱାରା ହିଁ ହୋଇଥାଏ । ସୁତରାଂ ପ୍ରତ୍ୟକ୍ଷବାଦ ଏକ ବସ୍ତୁନିଷ୍ଠ ପଦ୍ଧତିକୁ ଜ୍ଞାନଲାଭର ଭିତ୍ତି ଭାବରେ ନେଇ ପ୍ରକୃତିକୁ ବିଶ୍ଳେଷଣ କରିବାକୁ ସମର୍ଥ ହେଉଛି । କୌଣସି ବସ୍ତୁର ସ୍ଥିତି ବା ଧର୍ମ ଓ କୌଣସି ଘଟଣା ସଂକ୍ରାନ୍ତରେ ଆମେ ଇନ୍ଦ୍ରିୟ ସାହାଯ୍ୟରେ ଏକ ସ୍ୱୀକୃତ ପଦ୍ଧତି ଅବଲମ୍ବନରେ ଜାଣିବାକୁ ସମର୍ଥ ହୋଇ ପାରୁଛେ । ବିଚାରଶୀଳତା ବା ବୁଦ୍ଧିବାଦ ଓ ଅନୁଭବ ବା ପ୍ରତ୍ୟକ୍ଷବାଦ ଜ୍ଞାନଲାଭର ଯେ ଆଧାର ଏହା କୋଭୁର ଗ୍ରହଣ କରିଛନ୍ତି ।

ତାଙ୍କର ଏହି ମତ ବିପକ୍ଷରେ କେହି ସମାଲୋଚନା କରି କହିପାରନ୍ତି ଯେ ଜଣେ ବ୍ୟକ୍ତିର ନିଜସ୍ୱ ଅନୁଭବଦ୍ୱାରା ତାଙ୍କର ବିଶ୍ୱାସ ରୂପରେଖ ନେଇଥାଏ । ଅନ୍ୟ

ଜଣଙ୍କର ଅନୁଭୂତି ଆମେ ଲାଭ କରିବାକୁ ଅସମର୍ଥ ବୋଲି ତାଙ୍କର ଅନୁଭୂତିକୁ ପ୍ରତ୍ୟାଖ୍ୟାନ କରିବା ଯଥାର୍ଥ କି ? ଦୃଷ୍ଟିଶକ୍ତି ହରାଇଥିବା ଜଣେ ବ୍ୟକ୍ତି ରାତ୍ରିରେ ଆକାଶକୁ ଚାହିଁଲେ କୌଣସି ନକ୍ଷତ୍ର ଦେଖି ପାରିବେ ନାହିଁ । କିନ୍ତୁ ତାଙ୍କରି ପାଖରେ ଛିଡା ହୋଇ ମୁକ୍ତ ଆକାଶରେ ଅସଂଖ୍ୟ ତାରାମାନଙ୍କୁ ଦେଖୁଥିବା ଅନ୍ୟଜଣେ ବ୍ୟକ୍ତିର ଅନୁଭୂତିକୁ ଦୃଷ୍ଟିଶକ୍ତି ହରାଇଥିବା ବ୍ୟକ୍ତି ଅସ୍ୱୀକାର କରିବା ଠିକ୍ ହେବ କି ? ଜଣେ ନିଉଟନ ବା ଆଇନଷ୍ଟାଇନ ନିଜର ଶାଣିତ ବୁଦ୍ଧିଦ୍ୱାରା ପ୍ରକୃତିର ଯେଉଁ ରହସ୍ୟକୁ ଉଦ୍‌ଘାଟନ କରିବାକୁ ସମର୍ଥ, ଅଗଣିତ ବ୍ୟକ୍ତି ତାହା କରିବାକୁ ସକ୍ଷମ ନୁହନ୍ତି । ସେ କ୍ଷେତ୍ରରେ ସେମାନଙ୍କର ପର୍ଯ୍ୟବେକ୍ଷଣକୁ ଅନ୍ୟମାନେ ପ୍ରତ୍ୟାଖ୍ୟାନ କରିବା ଉଚିତ ହେବ କି ? ସେହିପରି କେତେକ ବ୍ୟକ୍ତି ନିଜସ୍ୱ ପ୍ରତିଭାରେ ଗୂଢ଼ ଆଧ୍ୟାତ୍ମିକ ଅନୁଭୂତି ଲାଭ କରିଥାନ୍ତି, ସେହି ଅନୁଭୂତି ପାଇନଥିବା ବ୍ୟକ୍ତି ସେସବୁକୁ ଅସ୍ୱୀକାର କରିବା ଯଥାର୍ଥ କି ? ଜଣଙ୍କର ଅନୁଭୂତିର ଆଧାର ଉପରେ ତାଙ୍କର ବିଶ୍ୱାସ ସକଳ ଗଢ଼ି ଉଠିଥାଏ । ସେହିପରି କେହି ଯଦି ଅନ୍ୟପ୍ରକାର ଅନୁଭୂତିକୁ ନେଇ ଭିନ୍ନ ବିଶ୍ୱାସ ପୋଷଣ କରିଥାନ୍ତି ତେବେ ତାଙ୍କର ବିଶ୍ୱାସକୁ ଅବାନ୍ତର କହିହେବ କି ? ଏହି ଯୁକ୍ତି ଯଦିବା ବିଭ୍ରାନ୍ତିକର ତଥାପି କେତେକଙ୍କ ପାଇଁ ଯଥାର୍ଥ ମନେହୋଇପାରେ । ଆମର ଅନୁଭୂତି ବ୍ୟକ୍ତିନିଷ୍ଠ ବା ବସ୍ତୁନିଷ୍ଠ ହୋଇପାରେ । କୌଣସି ବସ୍ତୁନିଷ୍ଠ ଅନୁଭୂତିକୁ ପର୍ଯ୍ୟବେକ୍ଷଣ, ପରୀକ୍ଷଣ ବା କୌଣସି ସ୍ୱୀକୃତ ପଦ୍ଧତି ମାଧ୍ୟମରେ ଯଥାର୍ଥ କି ନୁହଁ ସ୍ଥିର କରିବା ସମ୍ଭବପର ହୋଇଥାଏ । କିନ୍ତୁ ବ୍ୟକ୍ତିନିଷ୍ଠ ଅନୁଭୂତି କେତେଦୂର ସତ୍ୟପରକ ତାହା ସ୍ଥିର କରିବା କଷ୍ଟସାଧ୍ୟ । ଏହି ପୃଷ୍ଠଭୂମିରେ ଆମର ଅନୁଭୂତିର ଆଧାରକୁ ବିଶ୍ଳେଷଣ କରିବା ପ୍ରାସଙ୍ଗିକ ମନେହୁଏ ।

ଖାଲି ଆଖିରେ ହେଉ ବା ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ହେଉ ରାତ୍ରିର ଆକାଶରେ ଅସଂଖ୍ୟ ନକ୍ଷତ୍ରମାନଙ୍କୁ ଦେଖିବା ବସ୍ତୁପରକ ଓ ସତ୍ୟ, କାରଣ ଅନ୍ୟମାନେ ମଧ୍ୟ ଏହାକୁ ପରୀକ୍ଷାକରି ଦେଖିପାରିବେ । କିନ୍ତୁ ବ୍ୟକ୍ତିନିଷ୍ଠ ଅନୁଭୂତି ବସ୍ତୁପରକ ନୁହଁ, ଯଦିବା ସ୍ଥଳ ବିଶେଷରେ ତାହା ସତ୍ୟ ଅଟେ । ଯାହା ତଥ୍ୟପରକ ତାହା ପରୀକ୍ଷଣ ଦ୍ୱାରା ସ୍ଥିର କରାଯିବା ସମ୍ଭବ, କିନ୍ତୁ ଯାହା ତଥ୍ୟପରକ ନ ହୋଇ କେବଳ ଆତ୍ମନିଷ୍ଠ ଅନୁଭୂତି ଉପରେ ପର୍ଯ୍ୟବସିତ ତାହା ପରୀକ୍ଷଣ ଦ୍ୱାରା ସ୍ଥିର ହେବା ସମ୍ଭବ ନୁହେଁ । କିନ୍ତୁ ଏକ ବ୍ୟକ୍ତିନିଷ୍ଠ ଅନୁଭୂତିର ସାର୍ଥକତା ନେଇ ପରୀକ୍ଷା କରିବା

ଯେ ସଂପୂର୍ଣ୍ଣ ଅସମ୍ଭବ, ଏହା ମଧ୍ୟ ସତ୍ୟ ନୁହେଁ । ବ୍ୟକ୍ତିନିଷ୍ଠ ଅନୁଭୂତି କିପରି ନାନା ଭ୍ରମାତ୍ମକ ଭାବରେ ସୃଷ୍ଟି ହୋଇଥାଏ ତାହାର ମନସ୍ତାତ୍ତ୍ୱିକ କାରଣ ଗୁଡିକୁ ଆଲୋଚନା କରାଯାଇପାରେ । ସେହି ଆଲୋଚନାରୁ ଆତ୍ମନିଷ୍ଠ ଅନୁଭୂତି ସତ୍ୟ-ଭିତ୍ତିକ ବା ଭ୍ରମାତ୍ମକ ତାହା ସ୍ଥିର କରିବାକୁ ମାନଦଣ୍ଡ ବାହାର କରାଯାଇ ପାରିବ ।

ପ୍ରତ୍ୟକ୍ଷାନୁଭୂତି ଜ୍ଞାନଲାଭର ଏକ ମୌଳିକ ଆଧାର ହେଲେ ବି ସମସ୍ତ ପ୍ରତ୍ୟକ୍ଷ ସତ୍ୟ ଆଧାରିତ ନୁହେଁ । ପ୍ରତ୍ୟକ୍ଷ ବାସ୍ତବ ହୋଇପାରେ ବା ଭ୍ରମାତ୍ମକ ହୋଇପାରେ । ଭ୍ରମ ପ୍ରତ୍ୟକ୍ଷକୁ କୋଭୁର ତିନୋଟି ଶ୍ରେଣୀରେ ବିଭକ୍ତ କରିଛନ୍ତି ଯଥା (୧) ବସ୍ତୁଭ୍ରମ ପ୍ରତ୍ୟକ୍ଷ (illusion) (୨) ମତିଭ୍ରମ ପ୍ରତ୍ୟକ୍ଷ (hallucination) ଓ (୩) ବିକୃତି ଜନିତ ପ୍ରତ୍ୟକ୍ଷ (delusion) । ଯଦି କୌଣସି ବସ୍ତୁକୁ ତାର ଯଥାର୍ଥ ସ୍ୱରୂପରେ ପ୍ରତ୍ୟକ୍ଷ ନ କରି ଅନ୍ୟ ଭାବରେ କରାଯାଏ ତେବେ ତାହାକୁ ବସ୍ତୁଭ୍ରମ ପ୍ରତ୍ୟକ୍ଷ କୁହାଯାଏ । ସେହିପରି କୌଣସି ବସ୍ତୁ ବା ଘଟଣାର ଅଭାବରେ ମଧ୍ୟ ଯଦି ମାନସିକ ସ୍ତରରେ ତାହାକୁ ପ୍ରତ୍ୟକ୍ଷ କରାଯାଏ, ତେବେ ମତିଭ୍ରମ ପ୍ରତ୍ୟକ୍ଷ ହୋଇଥାଏ । କୌଣସି ମାନସିକ ବିକୃତି ବା ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଅସୁସ୍ଥ ମନରେ ଯେଉଁ ଭ୍ରମାତ୍ମକ ପ୍ରତ୍ୟକ୍ଷ ହୋଇଥାଏ ତାହାକୁ ବିକୃତି ଜନିତ ପ୍ରତ୍ୟକ୍ଷ କୁହାଯାଏ ।

କୌଣସି ବସ୍ତୁକୁ ତାର ଯଥାର୍ଥ ସ୍ୱରୂପରେ ନ ଜାଣି ଅନ୍ୟ ଭାବରେ ଜାଣିବାକୁ ବସ୍ତୁଭ୍ରମ ପ୍ରତ୍ୟକ୍ଷ କୁହାଯାଏ । ଦଉଡିକୁ ସାପ, ଶାମୁକାକୁ ରୂପା, ବାଲିସ୍ତୁପକୁ ଜଳାଶୟ ଇତ୍ୟାଦି ବୋଲି ସମୟେ ସମୟେ ଆମେ ଦେଖିଥାଉ । ଏସବୁ ଦୃଶ୍ୟଜନିତ ଭ୍ରମ ପ୍ରତ୍ୟକ୍ଷ ଅଟେ । ସେହିପରି ଶ୍ରବଣ-ଜନିତ, ସ୍ପର୍ଶଜନିତ, ସ୍ୱାଦ ଜନିତ ବା ଘ୍ରାଣ ଜନିତ ଭ୍ରମ ପ୍ରତ୍ୟକ୍ଷ ହୋଇପାରେ । କୌଣସି ପକ୍ଷୀର ଶବ୍ଦକୁ ଜଣେ ବନ୍ଧୁଙ୍କର ସ୍ୱର ବୋଲି ଭାବିବା, ଗୋଟିଏ କପଡାର ସ୍ପର୍ଶକୁ ଏକ ଜୀବର ସ୍ପର୍ଶ ବୋଲି ଅନୁଭବ କରିବା, ସାଧାଜଳକୁ ମିଠାଯୁକ୍ତ ବୋଲି ସ୍ୱାଦ କରିବା, କୌଣସି ଫୁଲର ବାସ୍ନାକୁ ଏକ ଖାଦ୍ୟର ବାସ୍ନା ବୋଲି ଘ୍ରାଣ କରିବା ଇତ୍ୟାଦିକୁ ବସ୍ତୁଭ୍ରମ ଜନିତ ପତ୍ୟକ୍ଷ କୁହାଯାଉଛି । ଏ କ୍ଷେତ୍ରରେ ଯେଉଁ ଭ୍ରମ ସୃଷ୍ଟିହୁଏ, ପରବର୍ତ୍ତୀ ମୁହୂର୍ତ୍ତରେ ପରୀକ୍ଷା ଫଳରେ ଯଥାର୍ଥ ସ୍ୱରୂପକୁ ନିର୍ଣ୍ଣୟ କରିବାଦ୍ୱାରା ଏହା ଦୂର ହୋଇଥାଏ ।

ବହୁ ସମୟରେ ପୂର୍ବ ଧାରଣାର ବଶବର୍ତ୍ତୀ ହୋଇଥିବା ଯୋଗୁଁ ଭ୍ରମାତ୍ମକ ପ୍ରତ୍ୟକ୍ଷ ମଧ୍ୟ ହୋଇଥାଏ । ଭୂତ, ପ୍ରେତ, ଦେବତା, ଡାଆଣୀ, ଠାକୁରାଣୀ, ପରୀ,

ଅପ୍‌ସରା ଇତ୍ୟାଦି ଧାରଣା ପୋଷଣ କରୁଥିବା ବ୍ୟକ୍ତିଗଣ ସ୍ଥଳବିଶେଷରେ ନିଜର ବିଶ୍ୱାସ ଅନୁଯାୟୀ ଅନୁଭୂତି ଲାଭ କରିଥାନ୍ତି । ପିଲାଟି ସମୟରୁ କେତେକ ଭ୍ରାନ୍ତ ଧାରଣା ସାମାଜିକ ପରିବେଶରୁ ପାଇ ସେ ସବୁଥିରେ ବିଶ୍ୱାସ ରହିଯାଇଥାଏ । ସୁତରାଂ ଅନ୍ଧାରରେ ଗୋଟିଏ ଖୁଣ୍ଟକୁ ଭୂତ ବୋଲି ଭାବିବା, ଦୂରର ଏକ ଆଲୋକକୁ ଦେବତାର ଆବିର୍ଭାବ ବୋଲି ନେବା ଇତ୍ୟାଦି ପ୍ରତ୍ୟକ୍ଷକୁ ପ୍ରଥମ ଶ୍ରେଣୀର ଭ୍ରମାତ୍ମକ ଅନୁଭୂତି ଭାବେ ନିଆଯାଇପାରେ । କିନ୍ତୁ ପର୍ଯ୍ୟବେକ୍ଷଣ ବା ପରୀକ୍ଷା ଦ୍ୱାରା ଏହି ପ୍ରତ୍ୟକ୍ଷ କିପରି ଭ୍ରମାତ୍ମକ ତାହା ଜଣାପଡିଥାଏ । ସେହିପରି କୌଣସି ଯାଦୁ ଦେଖୁଥିବା ବେଳେ ଯାଦୁକର ଦୃଶ୍ୟମାନ ଭ୍ରମ-ପ୍ରତ୍ୟକ୍ଷ ସୃଷ୍ଟି କରିଥାନ୍ତି । ଯାଦୁକର ପ୍ରତ୍ୟେକଟି ଘଟଣାର ବାସ୍ତବ ସ୍ୱରୂପ ଅବଗତ ହେଉଥିଲେ ବି ଦର୍ଶକ ଏହା ଜାଣି ନ ପାରି ତାଙ୍କର କୌଶଳକୁ ସତ୍ୟ ବୋଲି ହୁଏତ ଗ୍ରହଣ କରିଥାଏ । କିନ୍ତୁ ଏହା ଅଜ୍ଞତାର ପରିଚାୟକ । ସେହିପରି ନିଜକୁ ଦେବ ପୁରୁଷ ବୋଲି କହି ଧାରଣା ସୃଷ୍ଟି କରିଥିବା କେହି କେହି ତଥାକଥିତ ଧର୍ମଗୁରୁ ନିଜର ହାତ ସଫାଇଦ୍ୱାରା ତାଙ୍କର ଭକ୍ତମାନଙ୍କ ମନରେ ଅଲୌକିକ ଧାରଣା ସୃଷ୍ଟି କରିଥାନ୍ତି । ଏକ ହାତସଫେଇ କଳାକୁ ଯଥାର୍ଥ ବୋଲି ମନେ କରି କେହି କେହି ଏହାକୁ ସତ୍ୟ ବୋଲି ଗ୍ରହଣ କରିଥାନ୍ତି । କିନ୍ତୁ ସେହି ପ୍ରକାର ଅନୁଭୂତି ଯେ ଭ୍ରମାତ୍ମକ ତାହା ପରୀକ୍ଷାଦ୍ୱାରା ସ୍ପଷ୍ଟ ହୋଇଥାଏ ।

ମତିଭ୍ରମ ପ୍ରତ୍ୟକ୍ଷ କ୍ଷେତ୍ରରେ ଏକ ବାହ୍ୟ ବସ୍ତୁର ଅନୁପସ୍ଥିତିରେ ମଧ୍ୟ ଜଣେ ବାହ୍ୟ ଅନୁଭୂତି ଲାଭ କରିଥାନ୍ତି । ଏହା ଅନେକାଂଶରେ ମାନସିକ । ଏହା ପଶ୍ଚାତରେ ଶାରୀରିକ, ରାସାୟନିକ, ଜୈବିକ ଓ ମନସ୍ତାତ୍ତ୍ୱିକ କାରଣମାନ ରହିପାରେ । ଇନ୍ଦ୍ରିୟମାନଙ୍କର ଲୟାତ୍ମକ ଅନୁଭୂତି ଜନିତ ସର୍ତ୍ତବଦ୍ଧତାରୁ ମଧ୍ୟ ଏହି ଭ୍ରମ ପ୍ରତ୍ୟକ୍ଷ ସୃଷ୍ଟି ହୋଇଥାଏ । ଜଣେ ଯଦି ନିର୍ଦ୍ଦିଷ୍ଟ ବ୍ୟବଧାନରେ ଏକ ସଂଗୀତ ବା ସେପରି କିଛି ଶବ୍ଦ ଶୁଣୁଛି ବା କୌଣସି ନିର୍ଦ୍ଦିଷ୍ଟ ଅନୁଭୂତି ପାଉଛି, ତେବେ ଏହା ସୃଷ୍ଟି କରୁଥିବା ବାହ୍ୟ କାରଣର ଅନୁପସ୍ଥିତିରେ ମଧ୍ୟ ଅନ୍ୟାନ୍ୟ ଅନୁକୂଳ ଅବସ୍ଥାରେ ମାନସିକ ସର୍ତ୍ତବଦ୍ଧତା ଯୋଗୁଁ ସେହି ପ୍ରକାରର ଅନୁଭୂତି ଲାଭ କରିପାରେ । ପୂଜା, ଆରାଧନା, ଧ୍ୟାନ, ସମ୍ମୋହନ ଇତ୍ୟାଦିଦ୍ୱାରା କେତେକ ଅନୁଭୂତି ମିଳିଥାଏ । ଏହି ସବୁ ବ୍ୟକ୍ତିନିଷ୍ଠ ଅନୁଭୂତି ପଶ୍ଚାତରେ ଶାରୀରିକ ଓ ମାନସିକ ପ୍ରତିବନ୍ଧନ ଥାଏ । କୌଣସି ଉତ୍ତେଜକ ପଦାର୍ଥକୁ ଶରୀରରେ ନେବାଦ୍ୱାରା ଜଣେ ଅସ୍ୱାଭାବିକ ଅନୁଭୂତି ଲାଭ କରିଥାଏ । ମଦ, ଗଞ୍ଜେଇ, ଭାଙ୍ଗ, ଡ୍ରଗ ଇତ୍ୟାଦି ଦ୍ୱାରା ଶରୀରର ସ୍ନାୟୁମାନେ ଅସ୍ୱାଭାବିକ

ଭାବରେ ଉତ୍ତେଜିତ ହୋଇଥାନ୍ତି । ଏହା ଫଳରେ ଏହା ସେବନ କରୁଥିବା ବ୍ୟକ୍ତି କେତେକ ଅନୁଭୂତି ଲାଭ କରିଥାନ୍ତି । ବିଶିଷ୍ଟ ଗବେଷକ ଡଃ ଆଲବର୍ଟ ହୋଫ୍‌ମ୍ୟାନ ନିଜର ଅନୁଭୂତି ବର୍ଣ୍ଣନା କରି କହିଛନ୍ତି ଯେ ପରୀକ୍ଷା ପାଇଁ ଏଲ.ଏସ.ଡି. ଡ୍ରଗର ଏକ କ୍ଷୁଦ୍ରାଦପି କ୍ଷୁଦ୍ର ଅଂଶ ଖାଇବାଦ୍ୱାରା ତାଙ୍କର ଅନୁଭୂତି ହେଲା ଯେ ତାଙ୍କର ଅତ୍ମା ତାଙ୍କର ଶରୀରରୁ ବାହାରି ଯାଉଛି । ଏହା ଶୂନ୍ୟରେ ନିଜର ଶରୀରକୁ ମୃତ ଅବସ୍ଥାରେ ରହିବା ଦେଖି କାନ୍ଦୁଛି । ଏହି ସବୁ ଅସ୍ୱାଭାବିକ ଅନୁଭୂତି ଶରୀରରେ ସ୍ନାୟବିକ ସନ୍ତୁଳନରେ ବ୍ୟତିକ୍ରମ ଯୋଗୁଁ ସୃଷ୍ଟି ହୋଇଥାଏ । ଏହି ପୃଷ୍ଠଭୂମିରେ ସେ ସମୟରେ ଚହଳ ସୃଷ୍ଟି କରିଥିବା ଗୋଟିଏ ଘଟଣା କୋଭୁର ଉଲ୍ଲେଖ କରିଛନ୍ତି ।

ମାଡ୍ରାସର ମୁଥମଦାଲି ଷ୍ଟ୍ରୀଟ୍‌ରେ ବାଲାଜି ମନ୍ଦିର ଅବସ୍ଥିତ । ସେହି ମନ୍ଦିରରେ ପୂଜା ପରେ ପ୍ରସାଦ ସେବନ କରୁଥିବା ଭକ୍ତମାନେ ଏକ ଅସ୍ୱାଭାବିକ ଉନ୍ମାଦନା ଅନୁଭବ କରୁଥିଲେ । ଦେବତାଙ୍କ ଆଶୀର୍ବାଦରୁ ଏହି ଆନନ୍ଦ- ଉନ୍ମାଦନା ମୂଳକ ଅନୁଭୂତି ହେଉଛି ବୋଲି ମନ୍ଦିରର ପୂଜକମାନେ ପ୍ରଚାର କରୁଥିଲେ । ପୂଜା ଓ ଆଳତୀ ପରେ ପୂଜକମାନେ ଭକ୍ତମାନଙ୍କୁ ପ୍ରସାଦ ଦେଉଥିଲେ ଓ ପ୍ରସାଦ ସେବନ କରି ଭକ୍ତମାନେ ପ୍ରଭୁ କୃପାରୁ ସେହି ଅନୁଭୂତି ପାଉଥିଲେ । ମନ୍ଦିରର ମୁଖ୍ୟ ପୂଜକ ନିଜ ପାଖରେ ଚାରି କିଲୋ ଗଞ୍ଜେଇ ରଖିଥିବା ଅଭିଯୋଗରେ ୭ ତାରିଖ ମେ ୧ ୯ ୬୩ରେ ଗିରଫ ହେଲେ । ପୋଲିସ ପାଖରେ ସେ ସ୍ୱୀକାର କଲେ ଯେ ପ୍ରସାଦରେ ସେ ମାଦକଦ୍ରବ୍ୟ ମିଶାଇ ଭକ୍ତମାନଙ୍କୁ ବିତରଣ କରୁଥିଲେ ଓ ଭକ୍ତମାନେ ଗଞ୍ଜାମିଶ୍ରିତ ଭୋଗ ସେବନ କରି ଅସ୍ୱାଭାବିକ ଅନୁଭୂତି ଲାଭ କରୁଥିଲେ । ନିଶାଦ୍ରବ୍ୟ ସେବନ ଦ୍ୱାରା କିପରି ଅପ୍ରାକୃତିକ ଅନୁଭୂତି ସୃଷ୍ଟ କରିହେବ ଓ ସେହି ଅନୁଭୂତି ଦେବତାଙ୍କ ଆଶିର୍ବାଦରୁ ହେଉଛି ବୋଲି ବିଶ୍ୱାସ ସାଧାାରଣ ଭକ୍ତଙ୍କ ମଧ୍ୟରେ ଆଣିହେବ ତାହା ମନ୍ଦିରର ପୂଜକ ଜାଣି ତାହା କରୁଥିଲେ ।

ଭାଙ୍ଗ, ଗଞ୍ଜା,ଏଲ.ଏସ.ଡି. ଜାତୀୟ ଡ୍ରଗ ବା ନିଶା ସେବନ ଦ୍ୱାରା ଏକ ଅସ୍ୱାଭାବିକ ରାସାୟନିକ ପ୍ରତିକ୍ରିୟା ସୃଷ୍ଟିହୁଏ ଯେଉଁଥିରୁ ସେବନକାରୀ ବ୍ୟକ୍ତି କେତେକ ଅପ୍ରାକୃତିକ ଅନୁଭୂତି ପାଇଥାଏ । ସେହିପରି ସ୍କିଜୋଫ୍ରେନିଆ ରୋଗରେ ଆକ୍ରାନ୍ତ ବ୍ୟକ୍ତି ବା ଧାର୍ମିକ ଉନ୍ମାଦନାଗ୍ରସ୍ତ ବ୍ୟକ୍ତିମାନଙ୍କ ଉପରେ ଗବେଷଣା କରି ଡଃ ହୁଇଟଲେ ମତପ୍ରକାଶ କରିଛନ୍ତି ଯେ ଯୋଗୀ, ସାଧୁ, ରହସ୍ୟବାଦୀ ବ୍ୟକ୍ତିଗଣଙ୍କର

ତଥାକଥିତ ଦିବ୍ୟାନୁଭୂତି ଅତ୍ୟଧିକ ଆବେଗ ଜନିତ କାରଣରୁ ଶରୀରରେ ସୃଷ୍ଟି ହେଉଥିବା ରାସାୟନିକ ପ୍ରତିକ୍ରିୟା ଯୋଗୁଁ ସମ୍ଭବ ହୋଇଥାଏ । ଏହିସବୁ ଅନୁଭୂତି ଆତ୍ମକୈନ୍ଦ୍ରିକ ଓ ଭ୍ରମାତ୍ମକ ।

କେତେକ ଜୈବିକ କାରଣରୁ ମଧ୍ୟ ଭ୍ରମାତ୍ମକ ଅନୁଭୂତି ଆସିଥାଏ ବୋଲି ସାଂପ୍ରତିକ କେତେକ ଗବେଷଣାରୁ ଜଣାପଡିଛି । କାନାଡାର ବିଶିଷ୍ଟ ଜୀବ ବିଜ୍ଞାନୀ ପ୍ରଫେସର ଅର୍ଣ୍ଣାଣ୍ଡୋମିଲର ଓ ପ୍ରଫେସର ଆଲେନ ଫିସର ଶରୀରରେ କ୍ରୋମଜମର ଅସ୍ୱାଭାବିକତା ଥିଲେ ଭ୍ରମାତ୍ମକ ଅନୁଭୂତି ଆସିଥାଏ ବୋଲି ଦର୍ଶାଇଛନ୍ତି । ଜଣେ ସୁସ୍ଥ ବ୍ୟକ୍ତି ଦେହରେ ୨୨ ହଳ ଏକ୍ସ-ଏକ୍ସ (xx) ଓ ଏକ ହଳ ଏକ୍ସ-ଓ୍ୱାଇ (xy) କ୍ରୋମଜମ ଥାଏ । କୌଣସି ବ୍ୟକ୍ତି ଦେହରେ ୨୨ ହଳ ଏକ୍ସ-ଏକ୍ସ (xx) ଓ ଏକ ହଳ ଏକ୍ସ-ଓ୍ୱାଇ- ଓ୍ୱାଇ କ୍ରୋମଜମ ଥିଲେ ବ୍ୟକ୍ତି ଚରିତ୍ରରେ ଧୂର୍ତ୍ତତା, ମନ୍ଦସ୍ୱଭାବ ଓ ଅନ୍ୟକୁ ପୀଡା ଦେଇ ଆନନ୍ଦ ଅନୁଭବ କରିବାର ମନୋଭାବ ପ୍ରକାଶ ପାଇଥାଏ । ସେହିପରି ଭିଟାମିନ, ଏନଜାଇମ ବା ହରମୋନ ଅତ୍ୟଧିକ ଅଭାବ ବା ଅସନ୍ତୁଳନ ଯୋଗୁଁ ବ୍ୟକ୍ତି ସ୍ୱଭାବରେ ଅସ୍ୱାଭାବିକତା ଦେଖାଦିଏ । ଏପରିକି କେତେକ ହରମୋନର ଅତ୍ୟଧିକ କ୍ଷରଣ ଯୋଗୁଁ କେତେକ ଭ୍ରମାନୁଭୂତି ସୃଷ୍ଟି ହୋଇଥାଏ । ଅର୍ଥାତ୍ ଶରୀରରେ ଥିବା ରାସାୟନିକ ସନ୍ତୁଳନ ବ୍ୟବସ୍ଥାରେ ବ୍ୟତିକ୍ରମ ଘଟିଲେ ମାନସିକ ସ୍ଥିତି କ୍ଷେତ୍ରରେ ଅସ୍ୱାଭାବିକତା ଆସିଥାଏ, ଯେଉଁଥିରୁ ବ୍ୟକ୍ତିର ଭ୍ରମାତ୍ମକ ଅନୁଭୂତି ମଧ୍ୟ ହୋଇଥାଏ । ଅବଶ୍ୟ ଏସବୁକୁ ଚିକିତ୍ସାଦ୍ୱାରା ଭଲ କରାଯିବା ସମ୍ଭବ ।

ମତିଭ୍ରମ ଜନିତ ପ୍ରତ୍ୟକ୍ଷ ପଶ୍ଚାତରେ ମନସ୍ତାତ୍ତ୍ୱିକ କାରଣମାନ ମଧ୍ୟ ରହିପାରେ । ମଣିଷର ମନ ଆବେଦନଶୀଳ ଓ ତାହାକୁ ପ୍ରଭାବିତ କରାଯିବା ସମ୍ଭବ । ମଣିଷର ମନକୁ ସମ୍ମୋହିତ କରିବା ଅସମ୍ଭବ ନୁହେଁ । ଏହି ସମ୍ମୋହନ ସ୍ୱୀୟ ହୋଇପାରେ ବା ଅନ୍ୟଦ୍ୱାରା ହୋଇପାରେ । ଧର୍ମବିଶ୍ୱାସ ଜନିତ ପ୍ରଭାବ ଓ କୌଣସି ମତ ଆରୋପଣ ପାଇଁ ଧାରାବାହିକ ଉଦ୍ୟମ ଫଳରେ ମାନସିକ ଆବେଗକୁ ପ୍ରଭାବିତ କରାଯିବା ସମ୍ଭବ ହୋଇଥାଏ । ଧ୍ୟାନ, ପ୍ରାର୍ଥନା, ଜପ, ପବିତ୍ର ସ୍ନାନ, ପବିତ୍ର ଜଳ ସ୍ପର୍ଶ, ସ୍ପର୍ଶ ଆରୋଗ୍ୟ, ମନ୍ଦିରରେ ଅଧିଆ ଇତ୍ୟାଦି ଦ୍ୱାରା ସମ୍ମୋହନ ପ୍ରଭାବ ସୃଷ୍ଟି ହୋଇଥାଏ । ଅସ୍ଥିର ମନ ଉପରେ ସ୍ୱକୀୟ ଭାବେ ହେଉ ବା ଅନ୍ୟର ପ୍ରଭାବ ଯୋଗୁଁ ହେଉ ଏକ ସମ୍ମୋହନ ସୃଷ୍ଟି କରିବା ଦ୍ୱାରା ବ୍ୟକ୍ତିର ଅନୁଭୂତି ତଦନୁରୂପ ହୋଇଥାଏ ।

ଧ୍ୟାନ ଓ ଲୟଦ୍ୱାରା ମାନସିକ ଆବେଗ ଏପରି ନିୟନ୍ତ୍ରିତ ହୋଇଥାଏ । ଫଳରେ ବ୍ୟକ୍ତି କେତେକ ଆତ୍ମନିଷ୍ଠ ଅନୁଭୂତି ପାଇଥାଏ । ଦୈବୀ ନିର୍ଦ୍ଦେଶ, ଦିବ୍ୟାନୁଭୂତି, ପାରଲୌକିକ ସଂଯୋଗ ଇତ୍ୟାଦି ଯାହା କୁହାଯାଏ ସେସବୁ ସମ୍ମୋହନ ଜନିତ ମନସ୍ତାତ୍ତ୍ୱିକ ଆବେଗରୁ ସୃଷ୍ଟ କେତେକ ଆତ୍ମନିଷ୍ଠ ଅନୁଭୂତି ମାତ୍ର । ସେସବୁର କୌଣସି ବସ୍ତୁନିଷ୍ଠ ଆଧାର ନଥାଏ । ଜଣେ ନିଶାଗ୍ରସ୍ତ ବ୍ୟକ୍ତିର ଅନୁଭୂତି ଯେପରି ଅସ୍ୱାଭାବିକ, ସେହିପରି ଜଣେ ସମ୍ମୋହିତ ବ୍ୟକ୍ତିର ଅନୁଭୂତି ମଧ୍ୟ ଅପ୍ରାକୃତିକ । ଧର୍ମମାନଙ୍କ କ୍ଷେତ୍ରରେ ଯେଉଁ ବିବିଧ ଆଧ୍ୟାତ୍ମିକ ଅନୁଭୂତିର କଥା କୁହାଯାଏ ତାହା ପ୍ରକାରାନ୍ତରେ ସମ୍ମୋହିତ ମାନସିକ ସ୍ଥିତିରେ ହେଉଥିବା ମତିଭ୍ରମ ଜନିତ କେତେକ ଭ୍ରମ ପ୍ରତ୍ୟକ୍ଷ ଛଡା ଅନ୍ୟ କିଛି ନୁହେଁ ।

ସେହିପରି ବିକୃତି ଜନିତ ଭ୍ରମ ପ୍ରତ୍ୟକ୍ଷ ସାମାଜିକ ଜୀବନରେ ଥିବା କୁସଂସ୍କାରର ପ୍ରଭାବରୁ ସୃଷ୍ଟି ହୋଇଥାଏ । କେତେକ କୁସଂସ୍କାର ଆଞ୍ଚଳିକ ସ୍ତରରେ ରହିଥିବାବେଳେ ଅନ୍ୟ କେତେକ କୁସଂସ୍କାର ସାର୍ବଜନୀନ ଭାବରେ ଦେଖାଯାଏ । ମଣିଷ ଯେଉଁ ସାମାଜିକ ପରିବେଶ ଓ ଗୋଷ୍ଠୀ ମଧ୍ୟରେ ରହିଥାଏ ସେହି ପରିବେଶର କେତେକ ବିଶ୍ୱାସ ଓ ସଂସ୍କାର ତାର ମାନସିକତାକୁ ପ୍ରଭାବିତ କରିବା ଅସ୍ୱାଭାବିକ ନୁହେଁ । ଅବଶ୍ୟ କେତେକ ମୁଷ୍ଟିମେୟ ବ୍ୟକ୍ତି ନିଜସ୍ୱ ବିଚାର ଓ ତର୍କଶୀଳ ଦୃଷ୍ଟିଭଙ୍ଗୀ ପୋଷଣ କରିପାରନ୍ତି । କିନ୍ତୁ ସମାଜର ବୃହତ୍ତର ପରିବେଶରେ ଯଦି ଅବୈଜ୍ଞାନିକ ମନୋଭାବ, କୁସଂସ୍କାର, ଅନ୍ଧବିଶ୍ୱାସ ଓ ଅହେତୁକ ଧାରଣା ବଳବତ୍ତର ଥାଏ, ତେବେ ସାଧାରଣ ବ୍ୟକ୍ତିଙ୍କର ଦୃଷ୍ଟିକୋଣ କୁସଂସ୍କାରାଚ୍ଛନ୍ନ ରହିବା ଅସମ୍ଭବ ନୁହେଁ । ଭୂତ ପ୍ରେତ, ସଇତାନ, ଦେବଦୂତ,ମନ୍ତ୍ର ତନ୍ତ୍ର, ଠାକୁର ଠାକୁରାଣୀ, ଶୁଭ ଅଶୁଭ ମୁହୂର୍ତ୍ତ, ଜାତିସ୍ମର, ପବିତ୍ର ଜଳ, ପବିତ୍ର ମାଟି, ସ୍ୱର୍ଗ, ନର୍କ, ଯମ, ଅଶରୀର ପ୍ରବେଶ ଇତ୍ୟାଦି ବିଶ୍ୱାସ ଯଦିଓ ଜଣେ ଅତି ପିଲା ବୟସରୁ ସମାଜରୁ ଲାଭ କରିଥାଏ ତେବେ ତାର ଅବଚେତନ ମନରେ ଏସବୁର ପ୍ରଭାବ ରହିଥାଏ । ମୋଟ ଉପରେ ସାମାଜିକ ମନସ୍ତତ୍ତ୍ୱ କୁସଂସ୍କାର ଦ୍ୱାରା ବହୁଳ ଭାବେ ପ୍ରଭାବିତ ହୋଇଥିଲେ, ବ୍ୟକ୍ତି ସେଥିରୁ ସଂପୂର୍ଣ୍ଣ ମୁକ୍ତ ହୋଇପାରେ ନାହିଁ । ଫଳରେ ମାନସିକ ବିକୃତିରୁ ସୃଷ୍ଟି ଅନୁଭୂତିକୁ ସତ୍ୟାଧାରିତ ଓ ବସ୍ତୁପରକ ଘଟଣା ବୋଲି ଲୋକମାନେ ଗ୍ରହଣ କରନ୍ତି । ଏପରିକି କୁସଂସ୍କାରର ଭିତ୍ତି ଉପରେ ପ୍ରଭାବଶାଳୀ ଅନୁଷ୍ଠାନ ବା ସାମାଜିକ ସଂଗଠନ ମୁଣ୍ଡ ଟେକିବା ଅସମ୍ଭବ ନୁହେଁ ।

ବିଭିନ୍ନ ଧର୍ମାବଲମ୍ବୀ ମାନଙ୍କର ଧର୍ମଗତ ବିଶ୍ୱାସ ଭିନ୍ନ ଭିନ୍ନ ହୋଇଥିବାରୁ ମତିଭ୍ରମ ପ୍ରତ୍ୟକ୍ଷ କ୍ଷେତ୍ରରେ ତାର ପ୍ରତିଫଳନ ଦେଖିବାକୁ ମିଳେ । ଧ୍ୟାନ ବା ସମ୍ମୋହିତ ମାନସିକ ସ୍ଥିତିରେ ଯେଉଁ ଆତ୍ମନିଷ୍ଠ ଅନୁଭୂତି ମିଳିଥାଏ ତାହା ବ୍ୟକ୍ତିର ବିଶ୍ୱାସ ଅନୁଯାୟୀ ରୂପରେଖ ନେଇଥାଏ । ଜଣେ ଖ୍ରୀଷ୍ଟିଆନ ଧ୍ୟାନ ଅବସ୍ଥାରେ ସ୍ୱର୍ଗରେ ଦେବଦୂତ ମାନଙ୍କୁ ବା ପର ଲାଗି ଥିବା ପରୀମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ରହିଥିବା ଯୀଶୁ ଓ ତାଙ୍କର ବାମ ପାର୍ଶ୍ୱରେ ଏକ ସୁବର୍ଣ୍ଣ ସିଂହାସନରେ ଉପବିଷ୍ଟ ଯେହୋଭାଙ୍କୁ ଦେଖିପାରେ । ଜଣେ ହିନ୍ଦୁ ବା ବୌଦ୍ଧଧର୍ମାବଲମ୍ବୀ ବ୍ୟକ୍ତି ନିଜର ପୂର୍ବଜନ୍ମ ବା ପରଜନ୍ମର ଅନୁଭୂତି ଲାଭ କରିପାରେ, ସେହିପରି ଜଣେ ମୁସଲିମ୍ ସ୍ୱର୍ଗରେ ଏକ ମନୋରମ ଝରଣା ଓ ଉଦ୍ୟାନକୁ ଅବଲୋକନ କରିପାରେ । ଏହିସବୁ ବିଶ୍ୱାସ ଜଣେ ନିଜର ଧର୍ମଭାବନା ଭିତରୁ ଲାଭ କରୁଥିବା ହେତୁ ନିଜର ତଥାକଥିତ ଆଧ୍ୟାତ୍ମିକ ସାଧନାରେ ଏହି କାଳ୍ପନିକ ଅନୁଭୂତି ଲାଭ କରିବା ଅସମ୍ଭବ ନୁହେଁ । କିନ୍ତୁ ଏହି ସବୁ ଭ୍ରମାତ୍ମକ ପ୍ରତ୍ୟକ୍ଷାନୁଭୂତି ମାନସିକ ବିକୃତିରୁ ଉତ୍ପନ୍ନ ହୋଇଥାଏ ।

ସୁତରାଂ ନାନା କାରଣରୁ ମାନସିକ ଅବସ୍ଥାରେ ଯେଉଁ ବ୍ୟତିକ୍ରମ ଦେଖାଦିଏ ତାର ପରିଣାମ ସ୍ୱରୂପ ଭ୍ରମପୂର୍ଣ୍ଣ ଅନୁଭୂତି ମିଳିଥାଏ । ସେହି ଅନୁଭୂତି ବ୍ୟକ୍ତିନିଷ୍ଠ ଓ ତାର ବୈଧତା ନଥାଏ । ବରଂ ଏହିସବୁ ଆବେଗ, ଅନୁଭୂତି ଓ ଆଧ୍ୟାତ୍ମିକ ଉପଲବ୍ଧିମନସ୍ତତ୍ତ୍ୱ ବା ମନୋବିଜ୍ଞାନ ପୃଷ୍ଠଭୂମିରେ ବିଚାର୍ଯ୍ୟ ।

## ମାନସିକ ବିକୃତି :

ବ୍ୟକ୍ତି ଶାରୀରିକ ଓ ମାନସିକ କ୍ରିୟା କରିଥାଏ । ଖାଇବା, ଖେଳିବା, ସାଇକେଲ ଚଳାଇବା ଇତ୍ୟାଦି ଯେପରି ଶାରୀରିକ ପ୍ରକ୍ରିୟାକୁ ବୁଝାଏ ସେହିପରି ଚିନ୍ତା କରିବା, ସ୍ମରଣ କରିବା, ସୁଖ-ଦୁଃଖ ଅନୁଭବ କରିବା, କୌଣସି ଜଟିଳ ଦାର୍ଶନିକ ସମସ୍ୟାର ସମାଧାନ ଖୋଜିବା ଇତ୍ୟାଦି ମାନସିକ କ୍ରିୟାକୁ ବୁଝାଏ. କିନ୍ତୁ ଶରୀରକୁ ଯେପରି ଦେଖିହୁଏ, ଛୁଇଁ ହୁଏ ମନକୁ ସେପରି କରି ହୁଏ ନାହିଁ । କିନ୍ତୁ ବହୁ ସମୟରେ ଛବିଳ ଚିନ୍ତାଦ୍ୱାରା ପରିଚାଳିତ ହୋଇ ମନକୁ ଶରୀର ପରି ସ୍ଥିତି ଥିବା ଏକ ଚେତନ ସତ୍ତା ବୋଲି ବିଶ୍ୱାସ କରାଯାଏ ଓ ଏପରିକି ମୃତ୍ୟୁରେ ଏହା ଶରୀରରୁ ପୃଥକ ହୋଇ ଯାଉଥିବା ବିଶ୍ୱାସ ଧର୍ମ ମାନଙ୍କରେ ରହିଥିବା ଦେଖାଯାଏ । ଏସବୁ ପ୍ରସଙ୍ଗ ଉପରେ

ପୂର୍ବ ଅଧ୍ୟାୟରେ କେତେକ ଆଲୋଚନା ହୋଇଛି । ସେଠାରେ ଉଲ୍ଲେଖ କରାଯାଇଛି ଯେ ମନ ସ୍ଥିତି ଥିବା ଏକ ସତ୍ତା ନୁହଁ, ବରଂ କେତେକ ପ୍ରକ୍ରିୟାର ନାମାନ୍ତର ମାତ୍ର । ମଣିଷ ଶରୀର ନଷ୍ଟ ହୋଇଗଲେ ବା ମଣିଷ ମରିଗଲେ ମାନସିକ କ୍ରିୟା ସମ୍ଭବ ହୁଏ ନାହିଁ । ସେ କ୍ଷେତ୍ରରେ ମନର ଅସ୍ତିତ୍ୱ ଲୋପପାଏ । ଏପରିକି ଜୀବିତ ଅବସ୍ଥାରେ ବି ଯଦି କୌଣସି କାରଣରୁ ମଣିଷ ମସ୍ତିଷ୍କର କେତେକ ଅଂଶ ନଷ୍ଟ ହୋଇଯାଏ ତେବେ ନଷ୍ଟ ହୋଇଥିବା ଅଂଶ ଯେଉଁ ମାନସିକ କ୍ରିୟାକୁ ନିୟନ୍ତ୍ରଣ କରୁଥିଲା ତାହା ଆଉ ସମ୍ଭବ ହୁଏ ନାହିଁ । କିନ୍ତୁ ଏକ ସୁସ୍ଥ ବ୍ୟକ୍ତି କ୍ଷେତ୍ରରେ ମନର ନିର୍ଦ୍ଦେଶରେ ହିଁ ଶରୀର ପରିଚାଳିତ ହୁଏ, ଅର୍ଥାତ ମସ୍ତିଷ୍କରୁ ଇଙ୍ଗିତ ଶରୀରକୁ ଆସିଥାଏ ।

କୌଣସି ବ୍ୟକ୍ତି ରୋଗାକ୍ରାନ୍ତ ହେଲେ କେତେକ ସୁସ୍ପଷ୍ଟ ଲକ୍ଷଣ ଶରୀରରେ ଦେଖାଯାଏ । ଶାରୀରିକ ବ୍ୟାଧି ତୁଳନାରେ ମାନସିକ ବ୍ୟାଧି ଜଟିଳ ମନେହୁଏ । ଅବଶ୍ୟ ଏଥିରୁ ଏହା ବୁଝିବା ଠିକ୍ ନୁହେଁ ଯେ ଶାରୀରିକ ବ୍ୟାଧିରେ ମନ ଆକ୍ରାନ୍ତ ହୁଏ ନାହିଁ ବା ମାନସିକ ବ୍ୟାଧିରେ ଶାରୀରିକ ଲକ୍ଷଣ ନ ଥାଏ । କିନ୍ତୁ ଶାରୀରିକ ବ୍ୟାଧିରେ ଦୈହିକ ଲକ୍ଷଣ ଯେପରି ସ୍ପଷ୍ଟ, ମାନସିକ ରୋଗରେ ଏହା ହୁଏତ ସେତେ ସ୍ପଷ୍ଟ ନୁହେଁ । ମାନସିକ ରୋଗରେ ବ୍ୟକ୍ତିର ସାଧାରଣ ବ୍ୟବହାରରେ ଅସ୍ୱାଭାବିକତା, ଅନିୟମିତତା ଓ ବ୍ୟତିକ୍ରମ ମୁଖ୍ୟ ଲକ୍ଷଣ ଭାବରେ ଦେଖାଦିଏ । ସ୍ଥଳ ବିଶେଷରେ ଦୈହିକ ବିକୃତି ମଧ୍ୟ ଦେଖା ଦେଇପାରେ ।

ଜଣେ ସାଧାରଣ ବ୍ୟକ୍ତି ମାନସିକ ବିକୃତିରେ ଆକ୍ରାନ୍ତ ହେଲେ ତାଙ୍କର କଥାରେ କେହି ଗୁରୁତ୍ୱ ଦିଏ ନାହିଁ । କିନ୍ତୁ ଜଣେ ବୁଦ୍ଧିଜୀବୀ ବା ପ୍ରତିଭାବାନ ବ୍ୟକ୍ତି ଏଥିରେ ଆକ୍ରାନ୍ତ ହେଲେ ତାଙ୍କର ଅନୁଭୂତିକୁ ଦିବ୍ୟ, ଆଧ୍ୟାତ୍ମିକ ବା ଈଶ୍ୱର ପ୍ରେରିତ ବୋଲି ସ୍ଥଳ ବିଶେଷରେ କୁହାଯାଉଛି । ବିଭିନ୍ନ ଦେଶରେ ଏହିପରି ବ୍ୟକ୍ତିମାନେ ସିଦ୍ଧ, ଗୁରୁ, ଆଧ୍ୟାତ୍ମିକ ସାଧକ, ଦେବ ପୁରୁଷ ବୋଲି ସମ୍ମାନ ଲାଭକରି ମଣିଷ ଜାତିକୁ ବିଭ୍ରାନ୍ତ କରୁଛନ୍ତି । ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତି, ଭାବାତୀତ ଧ୍ୟାନ, ଅତିମାନସ ଅବତରଣ, ବିଶ୍ୱଚେତନା ଇତ୍ୟାଦି ଗୁଡିଏ ଆଳଙ୍କାରିକ ଓ ଦୁର୍ବୋଧ୍ୟ ଶବ୍ଦର ଇନ୍ଦ୍ରଜାଲ ମଧ୍ୟରେ ସେମାନଙ୍କର ମାନସିକ ଅସୁସ୍ଥତା ଜଣାପଡିନଥାଏ । ଜଣେ ସୁସ୍ଥ ସବଳ ଲୋକ ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ହେବା ଯେପରି ସମ୍ଭବ, ଜଣେ ବୁଦ୍ଧିଜୀବୀ ବା ଜ୍ଞାନୀ ବ୍ୟକ୍ତି ମଧ୍ୟ ମାନସିକ ବ୍ୟାଧିରେ ଆକ୍ରାନ୍ତ ହେବା ସେହିପରି ସମ୍ଭବ ।

ସେମାନଙ୍କର ବ୍ୟକ୍ତିନିଷ୍ଠ ସ୍ୱକୀୟ ଅନୁଭୂତିକୁ ଆଧ୍ୟାତ୍ମିକ ବା ଆଧିଦୈବିକ ବୋଲି କହିବା ଓ ସେମାନଙ୍କୁ ଦେବ ପୁରୁଷ ଭାବେ ନେବା ଏକ ବିଡମ୍ବନା କହିବାକୁ ହେବ । ଏହି ପୃଷ୍ଠଭୂମିରେ କେତେକ ସାଧାରଣ ମାନସିକ ବିକୃତିକୁ ଆଲୋଚନା କରାଯାଉ ।

ଗ୍ଲୋସୋଲାଲିଆ- କୁସଂସ୍କାର ଜନିତ ଗୁଢ ମାନସିକତା ମଧ୍ୟରୁ ଏହା ଆସ୍ତେ ଆସ୍ତେ ଆସିଥାଏ । କେତେକ ମାନସିକ ଆବେଗ, ବିଶ୍ୱାସ, ପୂଜା, ଧ୍ୟାନ, ନୃତ୍ୟ, ଧର୍ମୀୟ ଉପଚାର ହେତୁ ଜଣେ ଏକ ଭିନ୍ନ ସ୍ଥିତିରେ ରହିଛି ଭାବି ବ୍ୟବହାର କରିବାକୁ ଗ୍ଲୋସୋଲାଲିଆ କୁହାଯାଏ । ନିଜ ଭିତରେ ଏକ ଶକ୍ତିର ଆବିର୍ଭାବ ହେଉଛି, ମୃତ ବ୍ୟକ୍ତିର ଆତ୍ମା ପ୍ରବେଶ କରୁଛି ବା ନିଜେ ଏକ ଉଚ୍ଚତର ସୋପାନକୁ ଯାଇଛି ଭାବି ଭିନ୍ନ ସ୍ୱରରେ କଥା କହିବା, ଅସ୍ୱାଭାବିକ ବ୍ୟବହାର ପ୍ରଦର୍ଶନ କରିବା ଇତ୍ୟାଦି ସ୍ୱଭାବ ପ୍ରକାଶ ପାଇଥାଏ ।

କ୍ରିପ୍ଟେସ୍ଥେସିଆ-ଗ୍ଲୋସୋଲାଲିଆ ପରି କ୍ରିପ୍ଟେସ୍ଥେସିଆ ଏକ ମାନସିକ ବିକୃତି ଯେଉଁଥିରେ ଜଣେ ବ୍ୟକ୍ତି ଅଲୌକିକ, ଅତିମାନସିକ ବା ଆଧିଦୈବିକ ଶକ୍ତିର ଅଧିକାରୀ ବୋଲି ଭ୍ରାନ୍ତ ଧାରଣା ପୋଷଣ କରିଥାନ୍ତି । କୌଣସି ଯୋଗ୍, ସାଧନା, କୃଚ୍ଛ୍ର ଅଭ୍ୟାସ ବା ସେପରି କିଛି କାର୍ଯ୍ୟ କରୁଥିବା ବ୍ୟକ୍ତି ଏହି ଧାରଣାର ବଶବର୍ତ୍ତୀ ହେବାର ସମ୍ଭାବନା ଅଧିକ ଥାଏ । ଅବଶ୍ୟ ତାଙ୍କର ଅନ୍ୟାନ୍ୟ ବ୍ୟବହାରରେ ଅସ୍ୱାଭାବିକତା ନ ଥିବାରୁ ତାଙ୍କର କେତେକ ଅନୁଭୂତି ବିକୃତିରୁ ଉତ୍ପନ୍ନ ବୋଲି ଭାବିବା ସହଜ ହୋଇନପାରେ । କିନ୍ତୁ ତାଙ୍କର ସାମଗ୍ରିକ ବ୍ୟବହାର, ଜୀବନ ଚର୍ଯ୍ୟା, ଦୃଷ୍ଟିକୋଣ ସବୁକୁ ଦେଖିଲେ ସେ ଯେ ମାନସିକ ସୁସ୍ଥ ନୁହନ୍ତି ତାହା ଜଣାପଡେ ।

ଦ୍ୱୈତ ବ୍ୟକ୍ତିତ୍ୱ – କେତେକ ବ୍ୟକ୍ତି ଦୁଇଟି ବ୍ୟକ୍ତିତ୍ୱ ପ୍ରକାଶ କରିଥାନ୍ତି ଓ ଏହି ବିଷୟରେ ସଚେତନ ନଥାନ୍ତି । ଜଣେ ଜଣେ ବ୍ୟକ୍ତି ଦୁଇଟି ପୃଥକ ବ୍ୟକ୍ତିତ୍ୱର, ଯାହା ପରସ୍ପର ଅସଂଯୋଜିତ ବା ସମ୍ବନ୍ଧହୀନ, ଅଧିକାରୀ ହେବାର ଅନେକ ଉଦାହରଣ ଦେଖିବାକୁ ମିଳେ । ଜଣେ ଭଦ୍ର ମହିଳା ବେଳକେ ସଂଭ୍ରମ ଗୃହିଣୀ ଭାବରେ ବ୍ୟବହାର ଦେଖାନ୍ତି; ପତି, ସନ୍ତାନ, ସନ୍ତତି ଓ ପରିବାରର ଅନ୍ୟମାନଙ୍କ ପ୍ରତି ନିଜର ଯଥୋଚିତ କର୍ତ୍ତବ୍ୟ କରନ୍ତି; କିନ୍ତୁ ପର ମୁହୂର୍ତ୍ତରେ ଜଣେ ନାଚବାଲି ହୋଇ ନାଚ କରନ୍ତି, ଅସଂଯତ ହୋଇ କଥା କୁହନ୍ତି ଓ କୌଣସି ସଂଭ୍ରମବୋଧ ରଖନ୍ତି

ନାହିଁ । ଯେତେବେଳେ ସେ ଗୃହିଣୀ ବୋଲି ବ୍ୟବହାର କରନ୍ତି ନିଜର ନାଚବାଲି ବ୍ୟକ୍ତିତ୍ୱ ବିଷୟରେ ସଚେତନ ନ ଥାନ୍ତି କିମ୍ବା ଯେତେବେଳେ ନାଚବାଲି ପରି ବ୍ୟବହାର କରନ୍ତି ସେତେବେଳେ ତାଙ୍କର ଗୃହିଣୀ ସଭାବ ବିଷୟରେ ସଚେତନ ନ ଥାନ୍ତି । ସେହିପରି ଜଣେ ଭଦ୍ରଲୋକ ଗୋଟିଏ ସମୟରେ ଜଣେ ଅଧ୍ୟାପକ ଓ ସମ୍ମାନାସ୍ପଦ ବ୍ୟକ୍ତି ପରି ବ୍ୟବହାର କରନ୍ତି ଅଥଚ ଅନ୍ୟ ସମୟରେ ଜଣେ ଧୂର୍ତ୍ତ ଓ ବଦମାସ ଲୋକ ପରି ବ୍ୟବହାର ଦେଖାନ୍ତି । ଗୋଟିଏ ପ୍ରକାର ବ୍ୟବହାର ପ୍ରଦର୍ଶନ ବେଳେ ଅନ୍ୟ ବ୍ୟବହାର ସମ୍ପର୍କରେ ସଚେତନ ନ ଥାନ୍ତି । ଏସବୁ ମାନସିକ ବିକୃତିକୁ ହିଷ୍ଟିରିଆ ଜନିତ ବ୍ୟାଧି କୁହାଯାଉଛି ।

ଆବେଶିକ ବ୍ୟକ୍ତିତ୍ୱ – କେତେକ ଲୋକ ଓ ଏପରିକି ପିଲାଙ୍କର ବ୍ୟକ୍ତିତ୍ୱରେ କେତେକ ଲକ୍ଷଣ ଦେଖାଯାଏ ଯାହା ସ୍ୱାଭାବିକ ନୁହେଁ । ଅବଶ୍ୟ ସେପରି କିଛି ଶାରୀରିକ ଲକ୍ଷଣ ନଥିବାରୁ ଏହି ବିକୃତି ଶୀଘ୍ର ଜଣାପଡେ ନାହିଁ ଓ ଏହା ସେପରି କ୍ଷତିକାରକ ମଧ୍ୟ ନ ହୋଇପାରେ । ବିଭିନ୍ନ ପୁରାତନ ଜାତିର ଲୋକଙ୍କ ମଧ୍ୟରେ ଆବେଗ ଜନିତ ବ୍ୟତିକ୍ରମ ଦେଖାଯାଏ । ଶୁଚିବାଇ ରୋଗ ଏହି ପ୍ରକାରର ଏକ ବିକୃତି । କିନ୍ତୁ କେତେକ ଲୋକ ବେଶ ସଭ୍ୟ ଓ ଶିକ୍ଷିତ, ତଥାପି ସେମାନଙ୍କ ବ୍ୟକ୍ତିତ୍ୱରେ କିଛିଟା ଅସ୍ୱାଭାବିକତା ଥାଏ । କେତେକ ବ୍ୟକ୍ତି ଏ ପ୍ରକାର ଯେ ସେମାନେ ନିଜର ବ୍ୟବହାରରେ କୌଣସି ପରିସ୍ଥିତିରେ ପରିବର୍ତ୍ତନ କରିବେ ନାହିଁ । କେତେକ ଅତ୍ୟନ୍ତ ନିୟମକୁ ମାନି ଚଳନ୍ତି ଓ ନିଜର କେତେକ ସ୍ୱକୀୟ ନିୟମକୁ ସର୍ବଦା ପାଳନ କରିଥାନ୍ତି । ସେହି ନିୟମ ଯେତେ ନିରର୍ଥକ ହେଲେ ବି ସେମାନେ ତାର ବ୍ୟତିକ୍ରମକୁ ସହ୍ୟ କରିପାରନ୍ତି ନାହିଁ । ଜଣେ ନିଜର ରୋଷେଇ ଛଡା ଅନ୍ୟ କେଉଁଠି କିଛି ସ୍ପର୍ଶ କରିବେ ନାହିଁ । ନିଜର ପ୍ରତିଜ୍ଞା ସର୍ବଦା ରକ୍ଷା କରିବେ ତାହା ଯେତେ ହାସ୍ୟୋଦ୍ଦୀପକ ହେଉ ନା କାହିଁକି । ନିଜର ବିଶ୍ୱାସ ଅନୁଯାୟୀ ପୂଜା ନ କରିବା ପର୍ଯ୍ୟନ୍ତ ଜଳ ସ୍ପର୍ଶ କରିବେ ନାହିଁ । ଯେତେ ଅର୍ଥଶୂନ୍ୟ ହେଲେ ମଧ୍ୟ ଜଣେ ନିଜର ସାଧୁତା ରକ୍ଷା କରିବେ । କେତେକ ମହନୀୟ ଗୁଣ ତାଙ୍କ ଚରିତ୍ରରେ ଥିବାରୁ ତାହା ସମାଜରେ ଆଦୃତ ହୋଇଥାଏ । ହେଲେ ତାଙ୍କର ବ୍ୟକ୍ତିତ୍ୱ ଏକମୁଖୀ । କାରଣ ଗୁଡିଏ କଠୋର ନିୟମର- ତାହା ଯେତେ ନିରର୍ଥକ ଓ ହାସ୍ୟ ଉଦ୍ଦୀପକ ହେଉ ନା କାହିଁକି- ଚରମ ପ୍ରକାଶ ତାଙ୍କ ବ୍ୟକ୍ତିତ୍ୱରେ ହୋଇଥାଏ । ଜଣେ ନିଜର ନିର୍ଦ୍ଧାରିତ ନିୟମ ଭିତରେ ଚଳି ନ ପାରିଲେ ମାନସିକ ବିଷର୍ଣ୍ଣତା ଭୋଗ କରନ୍ତି ।

ଅବଶ୍ୟ ବିଭିନ୍ନ ପ୍ରକାରର ମାନସିକ ବିକୃତି ବା ପାଗଳାମୀ ରହିଛି । ମନୋବିଜ୍ଞାନରେ ଅସ୍ୱାଭାବିକ ବ୍ୟବହାର ବା ଅସୁସ୍ଥ ମନ ପରିପ୍ରେକ୍ଷୀରେ ଏସବୁର ବିସ୍ତୃତ ଆଲୋଚନା ଦେଖିବାକୁ ମିଳେ । ମାନସିକ ବିକୃତି ସାଧାରଣ ବା ଗୁରୁତର ସ୍ତରର ହୋଇପାରେ । ଅନେକ ସାଧାରଣ ବିକୃତି ବା ଆଉପାଗଳାମୀ ସତଃ ଦୂର ହୋଇଥାଏ । କେତେକ ସ୍ତରରେ ତାହାର ଚିକିତ୍ସା ଆବଶ୍ୟକ ହୁଏ । କିନ୍ତୁ ଗୁରୁତର ବିକୃତି ବା ପାଗଳାମୀ କ୍ଷେତ୍ରରେ ଚିକିତ୍ସା ସତ୍ତ୍ୱେ ବି ଅସୁସ୍ଥ ବ୍ୟକ୍ତିର ମନ ଓ ଆବେଗକୁ ସୁସ୍ଥ କରିବା ସମ୍ଭବପର ହୁଏ ନାହିଁ । ସ୍କିଜୋଫ୍ରେନିଆ, ଅପସ୍ମାର, ବୁଦ୍ଧିହୀନତା ଓ ଉତ୍‌ଫୁଲ୍ଲ ବିଷାଦ ବିକୃତି ପରି ନାନା ମାନସିକ ବ୍ୟାଧି ରହିଛି ଓ ପୁନଶ୍ଚ ଏ ପ୍ରତ୍ୟେକର ନାନାବିଧ ଶ୍ରେଣୀ ବିଭାଜନ ରହିଛି । କୋଭୁର ଏ ପ୍ରସଙ୍ଗରେ ବିସ୍ତୃତ ଆଲୋଚନା କରି ନାହାନ୍ତି । ବରଂ ମାନସିକ ବିକୃତି ଥିବା ବିଭିନ୍ନ ରୋଗୀଙ୍କର ଚିକିତ୍ସା ପରିପ୍ରେକ୍ଷୀରେ ସେ ଅନେକ ରୋଗୀଙ୍କର ସଂପର୍କରେ ଆସି ସେମାନଙ୍କର ରୋଗ ଇତିହାସ ବିଷୟରେ ଅନୁଶୀଳନ କରିଛନ୍ତି । ଏପରିକି ଶତାଧିକ ଲୋକଙ୍କୁ ଉପଯୁକ୍ତ ପରାମର୍ଶ ଦେଇ ସେମାନଙ୍କର ବିକୃତିକୁ ଦୂର କରି ସୁସ୍ଥ ବ୍ୟକ୍ତିତ୍ୱର ଅଧିକାରୀ ହେବାରେ ସାହାଯ୍ୟ କରିଛନ୍ତି । ଏସବୁ ଅନୁଶୀଳନ ଜନିତ ପରିଣାମ ତାଙ୍କର ଆତ୍ମ ପ୍ରତ୍ୟୟକୁ ସୁଦୃଢ଼ କରିଛି ଯେ ମାନସିକ ବ୍ୟତିକ୍ରମ ପଶ୍ଚାତରେ କୌଣସି ଅଧିଦୈବିକ କାରଣ ନିହିତ ନାହିଁ । ଏହି ପରିପ୍ରେକ୍ଷୀରେ ସେ ଅନୁସନ୍ଧାନ କରିଥିବା କେତେକ ବାସ୍ତବ ଘଟଣାର (case history) ବିବରଣୀ ତଳେ ଦିଆଗଲା ।

(କ) ମିଃ ଏକ୍ସ (ନାମ ଗୋପନ ରଖିଛନ୍ତି) ଶ୍ରୀଲଙ୍କାର ଏକ ସମ୍ଭ୍ରାନ୍ତ ପରିବାରର ଜଣାଶୁଣା ବ୍ୟକ୍ତି । ସେ ଉଚ୍ଚ ପଦବୀରେ ଥାଇ ୧୯୬୨ ରେ ୬୦ ବର୍ଷ ବୟସରେ ସରକାରୀ କର୍ମ ସଂସ୍ଥାନରୁ ଅବସର ନେଲେ । ୧୯୬୭ ମସିହାରେ ସେ ନିଜର ପତ୍ନୀ ଜେରେନ୍‌ଙ୍କ ସହିତ କୋଭୁରଙ୍କୁ ସାକ୍ଷାତ କରିବାକୁ ଆସିଲେ । ଏହି ସାକ୍ଷାତବେଳେ ସେ କୋଭୁରଙ୍କୁ କହିଲେ ଯେ ଜେରେନ ତାଙ୍କର ଦ୍ୱିତୀୟ ପତ୍ନୀ । ତାଙ୍କର ପ୍ରଥମ ସ୍ତ୍ରୀ ଗୋଟିଏ ସନ୍ତାନ ପରେ ମୃତ୍ୟୁବରଣ କଲେ । ପିଲାଟି ମଧ୍ୟ କିଛି ବର୍ଷ ପରେ ମରିଗଲା । ତାପରେ ସେ ଅବସର ପରେ ଜେରେନଙ୍କୁ ବିବାହ କଲେ । ଏହା ଭିତରେ ତାଙ୍କର ଦୁଇଟି ପିଲା ମଧ୍ୟ ହୋଇଛନ୍ତି ।

ଦୁଇମାସ ତଳେ ସେ ଓ ତାଙ୍କର ପତ୍ନୀ ଏକ କୁଣ୍ଡଳୀ ମଧ୍ୟରେ ଇଂରାଜୀ ଅକ୍ଷର ଗୁଡିକ ଲେଖି ଏକ ଗ୍ଲାସକୁ ଓଲଟାଇ ମଝିରେ ରଖିଲେ । ସେ ଓ ତାଙ୍କ ସ୍ତ୍ରୀ ଗ୍ଲାସ

ଉପରେ ହାତର ଆଙ୍ଗୁଠି ରଖି ମୃତ ବ୍ୟକ୍ତିର ଆତ୍ମାକୁ ସ୍ମରଣ କଲେ । ପ୍ରଥମେ ସେମାନେ ସ୍ୱର୍ଗତ ପ୍ରଧାନମନ୍ତ୍ରୀ ବନ୍ଦର ନାୟକଙ୍କର ଆତ୍ମାକୁ ଡାକିଲେ । ବନ୍ଦର ନାୟକ ତାଙ୍କ ପରିବାର ସହିତ ବେଶ୍ ଜଣାଶୁଣା ଥିଲେ । ପାତ୍ରଟି ଚକ୍ର ଭିତରେ ଗତିଶୀଳ ହୋଇ ଅକ୍ଷର ପାଖକୁ ଯାଇ ସେମାନଙ୍କ ପ୍ରଶ୍ନ ଗୁଡିକର ସଠିକ ଉତ୍ତର ଦେଲା । ଏହାପରେ ସେମାନେ ଥୋମାସ ସିଲଭା ଓ ମାଡାମ ବୁନଓ୍ୱାତ୍‌ଙ୍କୁ ସ୍ମରଣ କରି ସେମାନଙ୍କ ଆତ୍ମାମାନଙ୍କୁ ମଧ୍ୟ ଡାକିଥିଲେ । ଜଣଙ୍କ ପରେ ଜଣେ ଏହିପରି ଆଠ ଜଣ ମୃତ ବ୍ୟକ୍ତିଙ୍କର ଆତ୍ମାକୁ ସେମାନେ ଡାକି ସେମାନଙ୍କୁ ବିଭିନ୍ନ ପ୍ରଶ୍ନ ପଚାରି ଉତ୍ତର ପାଇଥିଲେ ।

ଶେଷରେ ସେମାନେ ସେଣ୍ଟ ଜୁଡେଙ୍କ ଆତ୍ମାକୁ ଡାକିଲେ । ଜୁଡେ ଜେରେନଙ୍କୁ ଏକ ମୁଦି ଦେବାକୁ ଏକ୍ସଙ୍କୁ କହିଲେ ଓ ଅନ୍ୟ ଗୋଟିଏ ମୁଦି ସେ (ଜୁଡେ) ଚର୍ଚ୍ଚରେ ଥିବା ତାଙ୍କର ପ୍ରତିମୂର୍ତ୍ତି ତଳେ ରଖିଥିବେ ଓ ଜେରେନ ଯାଇ ତାଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ ପ୍ରଦୀପ ଜାଳି ଆଣିବାକୁ କହିଲେ । ତା ପରଦିନ ଏକ୍ସ ଓ ଜେରେନ ଚର୍ଚ୍ଚରେ ତାଙ୍କ ପ୍ରତିମୂର୍ତ୍ତି ପାଖକୁ ଗଲେ ଅଥଚ ମୁଦି ପାଇଲେ ନାହିଁ । ସେମାନେ ଫେରି ଆସିବା ବେଳେ ଆତ୍ମାମାନଙ୍କୁ ଆଉ ନ ଡାକିବା ପାଇଁ ଏକ୍ସ ଜେରେନଙ୍କୁ କହିଲେ ।

କିନ୍ତୁ ଏକ୍ସଙ୍କର ଅଜ୍ଞାତସାରରେ ସେହି ଦିନ ରାତି ଜେରେନ ସେଣ୍ଟ ଜୁଡେଙ୍କର ଆତ୍ମାକୁ ଏକା ଡାକିଲେ । ସେଣ୍ଟ ଜୁଡେ ମୁଦି ରଖି ନଥିବା ହେତୁ ଦୁଃଖ ପ୍ରକାଶ କଲେ, ଏବଂ ପରଦିନ ଏକା ଚର୍ଚ୍ଚକୁ ଯାଇ ମୁଦି ସଂଗ୍ରହ କରିବାକୁ କହିଲେ । ଜେରେନ ପରଦିନ ତାଙ୍କ ସ୍ୱାମୀକୁ ନ ଡାକି ନିଜର ଭାଇ ସହିତ ଯାଇ ମୁଦି ଖୋଜିଲେ କିନ୍ତୁ ତାହା ପାଇଲେ ନାହିଁ । ସେ ଦୀର୍ଘ ସମୟ ଧରି ସେଠାରେ ଲୋତକପୂର୍ଣ୍ଣ ଆଖିରେ ପ୍ରାର୍ଥନା କଲେ ଓ ବିନା ମୁଦିରେ ଗୃହକୁ ଫେରିବାକୁ ମନାକଲେ । ଶେଷରେ ତାଙ୍କୁ ଜୋରକରି ଗାଡିରେ ବସାଇ ଘରକୁ ଅଣାଗଲା ।

ଜେରେନ ଏହା ପରଠୁ ଅସ୍ୱାଭାବିକ ବ୍ୟବହାର ଦେଖାଇଲେ । ସେ ସର୍ବଦା ସେଣ୍ଟ ଜୁଡେଙ୍କର ବିଷୟରେ କହିବାକୁ ଲାଗିଲେ । ଗତ ତିନି ସପ୍ତାହ ହେଲା ସେ ଅନ୍ତଃସତ୍ତ୍ୱା ଓ ତାଙ୍କର ନ ମାସ ଗର୍ଭ ହେଲାଣି ବୋଲି କହୁଥିଲେ ଯଦିବା ତାଙ୍କ ପାଖରେ ସେ ପ୍ରକାର କୌଣସି ଶାରୀରିକ ଲକ୍ଷଣ ନ ଥିଲା ।

ପୁନଶ୍ଚ ଏକ୍ସ କହିଲେ ଯେ ସେମାନଙ୍କର ଦ୍ୱିତୀୟ ସନ୍ତାନଟିର ଜନ୍ମପରେ ସେମାନଙ୍କ ଭିତରେ କୌଣସି ଯୌନ ସମ୍ପର୍କ ନାହିଁ । ଯେହେତୁ ସେ ପ୍ରାର୍ଥନା, ଧ୍ୟାନ ଓ ଆଧ୍ୟାତ୍ମିକ କାର୍ଯ୍ୟରେ ମନ ନିବେଶ କରିଛନ୍ତି, ତେଣୁ ଜେରେନଙ୍କ ସହିତ କୌଣସି ଶାରୀରିକ ସମ୍ପର୍କ ରଖିବାକୁ ସେ ଉଚିତ ମନେ କରୁନାହାନ୍ତି ।

ଏହା ଭିତରେ ଜେରେନ୍‌ଙ୍କୁ ବିଭିନ୍ନ ଚର୍ଚ୍ଚକୁ ନିଆଯାଇ ତାଙ୍କର ମାନସିକ ଅବସ୍ଥା ପରିବର୍ତ୍ତନ ପାଇଁ ଚେଷ୍ଟା କରାଯାଇଛି, ଅଥଚ ତାଙ୍କର ମାନସିକ ଅବସ୍ଥା ଭଲ ହେବା ପରିବର୍ତ୍ତେ ଅଧିକ ଖରାପ ହୋଇଛି । ଅନେକ ଗୁଣିଆଁ, ତାନ୍ତ୍ରିକ ଓ ସାଧୁଙ୍କୁ ପରାମର୍ଶ କରାଯାଇ ସେମାନଙ୍କ ପରାମର୍ଶକ୍ରମେ ପୂଜା, ଆରାଧନା କରାହୋଇଛି । ଜେରେନଙ୍କ ଠି ତାଙ୍କ ପ୍ରଥମ ସ୍ୱାମୀଙ୍କର ଆତ୍ମା ଲାଗିଛି, ମନ୍ଦ ଆତ୍ମାର କୋପ ଦୃଷ୍ଟିରୁ ଏପରି ହେଉଛି, ପରିବାରର ଜଣେ ବିରୋଧୀ ଲୋକ ଜେରେନଙ୍କୁ ଏକ ବିଷାକ୍ତ ବସ୍ତୁ ଖୁଆଇ ଦେଇଛି, ସଇତାନର କୋପଦୃଷ୍ଟି ପଡିଛି ଇତ୍ୟାଦି ନାନା କଥା ଗୁଣିଆଁମାନେ କହିଛନ୍ତି । ସେମାନଙ୍କ ପରାମର୍ଶ ଅନୁଯାୟୀ ପୂଜା, ଆତ୍ମା-ତୁଷ୍ଟି ଇତ୍ୟାଦି ହୋଇଛି । ଏପରିକି ଜେରେନ କେତେଥର ଗୁଣିଆଁଙ୍କ ସମ୍ମୁଖରେ ଅଚେତ ହୋଇଛି, ନାଚ କରିଛି ଓ ତା ଭିତରେ ପ୍ରବେଶ କରିଥିବା ଆତ୍ମାର ନାମ ମଧ୍ୟ କହି ଶରୀରରୁ ତାହା ଚାଲିଯିବ ବୋଲି କହିଛି । ଅଥଚ ଜେରେନର ମାନସିକ ସ୍ଥିତିରେ କୌଣସି ପରିବର୍ତ୍ତନ ହୋଇନାହିଁ । ଏଥିପାଇଁ ତାଙ୍କୁ ପ୍ରଚୁର ଅର୍ଥ ବ୍ୟୟ କରିବାକୁ ହୋଇଛି କିନ୍ତୁ କୌଣସି ଗୁଣୀଆଁ, ତାନ୍ତ୍ରିକ ବା ପୂଜକ ଜେରେନର ମାନସିକ ସ୍ୱାସ୍ଥ୍ୟ ଫେରାଇ ଆଣିପାରି ନାହାନ୍ତି । ଏପରିକି ଦୁଇଦିନ ତଳେ ଜେରେନ ଅନ୍ତଃସତ୍ତ୍ୱା ହେବା କଥା କାନ୍ଦି କରି ଏକ୍ସଙ୍କୁ କହିଛି ।

କୋଭୁର ଏକ୍ସଙ୍କ ପାଖରୁ ଏହି ଦୀର୍ଘ କାହାଣୀ ଶୁଣିବାପରେ ଜେରେନଙ୍କୁ ଚିକିତ୍ସା କରିଛନ୍ତି । ସେ ବେଶ୍ ସ୍ୱାସ୍ଥ୍ୟବାନ, ସୁନ୍ଦର ଓ ତାଙ୍କର ବୟସ ଅପେକ୍ଷା ସେ ଯଥେଷ୍ଟ ସାନ ଦେଖାଯାନ୍ତି । ସେ ଏକ ସମ୍ଭ୍ରାନ୍ତ ରକ୍ଷଣଶୀଳ ପରିବାରରେ ବଢିଛନ୍ତି । କୋଭୁର ତାଙ୍କୁ ଏକାନ୍ତରେ ନାନା ପ୍ରଶ୍ନ କରି ତାଙ୍କ ପାଖରୁ ସଂଗ୍ରହ କଲେ ଯେ ସେ ଓ ତାଙ୍କ ସ୍ୱାମୀ ହେଉଛନ୍ତି ବୌଦ୍ଧଧର୍ମାବଲମ୍ବୀ । ତାଙ୍କର ବହୁତ ଖ୍ରୀଷ୍ଟିଆନ ସାଥୀ ଅଛନ୍ତି ଓ ସେମାନଙ୍କ ସହିତ ସେ ଚର୍ଚ୍ଚକୁ ଯାନ୍ତି ଓ ପ୍ରାର୍ଥନା ସଭାରେ ଯୋଗ ଦିଅନ୍ତି । ତାଙ୍କର ଏକ୍ସଙ୍କୁ ଏହା ପ୍ରଥମ ବିବାହ ଓ ସେମାନଙ୍କ ଭିତରେ ବୟସର ପାର୍ଥକ୍ୟ ଟିକିଏ ଅଧିକ ।

ସ୍ୱାମୀ-ସ୍ତ୍ରୀ ଭାବରେ ସେମାନେ ପରସ୍ପରକୁ ଖୁବ୍ ଭଲ ପାନ୍ତି । ତାଙ୍କର ଦ୍ୱିତୀୟ ସନ୍ତାନଟିର ଜନ୍ମ ପରେ ସେମାନେ ଆଉ ସନ୍ତାନ ନକରିବାକୁ ନିଷ୍ପତ୍ତି ନେଲେ । ଫଳରେ ସେ ପିଲାଙ୍କ ସହ ଏକତ୍ର ଶୁଅନ୍ତି ଅଥଚ ତାଙ୍କର ସ୍ୱାମୀ ଅନ୍ୟତ୍ର ଶୋଇଥାନ୍ତି । ତାଙ୍କ ସ୍ୱାମୀ ଈଶ୍ୱର ବିଶ୍ୱାସୀ ଓ ଧର୍ମପ୍ରାଣ ବ୍ୟକ୍ତି । ସେମାନଙ୍କ ପୂଜାଘରେ ଭଗବାନ ବୁଦ୍ଧ, ବିଷ୍ଣୁ ଓ କାଟରମ୍ମା ଦେବୀଙ୍କର ପ୍ରତିମୂର୍ତ୍ତି ରଖାଯାଇଛି । ସେଠାରେ ଅହର୍ନିଶ ଏକ ପ୍ରଦୀପ ଜଳୁଥାଏ ଓ ପ୍ରତିଦିନ ଫୁଲ ଦେଇ ପୂଜା କରାଯାଏ । ସେହି ପୂଜା ଘରକୁ ଲାଗି ତାଙ୍କର ସ୍ୱାମୀ ଶୁଅନ୍ତି ।

ଯେତେବେଳେ ସେ ସେଣ୍ଟ ଜୁଡେଙ୍କର ଆତ୍ମାକୁ ଡାକିଲେ ଜୁଡେ ତାଙ୍କୁ ଅନେକ କଥା କହିବା ସହିତ ସେସବୁ ତାଙ୍କ ସ୍ୱାମୀଙ୍କ ପାଖରେ ପ୍ରକାଶ ନକରିବାକୁ କହିଥିଲେ । ସେଣ୍ଟ ଜୁଡେ ପୁନଶ୍ଚ କହିଥିଲେ ଯେ ସେ ତାଙ୍କୁ (ଜେରେନଙ୍କୁ) ଭଲ ପାନ୍ତି, କାରଣ ସେ ପୂର୍ବ ଜନ୍ମରେ ତାଙ୍କର ପତ୍ନୀ ଥିଲେ । ଏବଂ ପରବର୍ତ୍ତୀ ଜନ୍ମରେ ଜୁଡେ ତାଙ୍କର ସ୍ୱାମୀ ହେବେ । ତାପରଠୁ ଜୁଡେ ବାରମ୍ବାର ରାତିରେ ଆସି ତାଙ୍କ ପାଖରେ ଶୋଉଥିଲେ । ଦିନରେ ଯେତେବେଳେ ତାଙ୍କର ସ୍ୱାମୀ ଘରେ ନଥାନ୍ତି ସେ ମଧ୍ୟ ଆସି ତଙ୍କୁ ଆଲିଙ୍ଗନ କରି ପ୍ରେମ କରନ୍ତି । ବେଳେ ବେଳେ ସେ ତାଙ୍କ ଶରୀରରୁ ସମସ୍ତ ଲୁଗା ଖୋଲି ଦିଅନ୍ତି, ତାଙ୍କ ଦେହରେ କ୍ରସ୍ ଚିହ୍ନ ଆଙ୍କନ୍ତି ଓ ଏପରିକି କଷ୍ଟ ନ ହେବା ଭଳି ତାଙ୍କୁ କାମୁଡନ୍ତି । ତାଙ୍କ ହାତର କାମୁଡା ଚିହ୍ନ ସେ ସ୍ୱତଃ କୋଭୁରଙ୍କୁ ଦେଖାଇଲେ । ପୁନଶ୍ଚ କହିଲେ ଯେ ସେଣ୍ଟ ଜୁଡେ ତାଙ୍କ ପ୍ରତିମୂର୍ତ୍ତିଠାରୁ ବହୁତ ସୁନ୍ଦର ଓ ତାଙ୍କର ଚେହେରା ଆକର୍ଷଣୀୟ । ଆଉଥରେ ସେଣ୍ଟ ଜୁଡେ ଏକ କାଗଜରେ ଲେଖିଲେ ଯେ ଏସବୁ ସେ ତାଙ୍କର ସ୍ୱାମୀଙ୍କୁ କହିବେ ନାହିଁ । ଥରେ ତାଙ୍କ ହାତର ମୁଦି ଓ କାନର ଅଳଙ୍କାର ସେ ଖୋଲିଦେଲେ । କେତେଥର ତାଙ୍କ ତକିଆ ତଳେ ସେ ୧୦୦୦, ୧୬୦୦ ଓ ୮୦୦ ଟଙ୍କା କରି ରଖି ଦେଇଥିଲେ ।

ଏସବୁ ସ୍ୱୀକାର କରିବା ପରେ ଜେରେନ ଅତି ବିକଳ ଭାବରେ କାନ୍ଦିବାକୁ ଲାଗିଲେ । ଏକ ସମ୍ମୋହିତ ଅବସ୍ଥାରେ ତାଙ୍କର କାନ୍ଦିବାର କାରଣ ପଚାରିବାରୁ ଜେରେନ କହିଲେ ଯେ ସେ ଅନ୍ତଃସତ୍ତ୍ୱା ହୋଇଛନ୍ତି ଓ ଆସନ୍ତାମାସ ଏକ ସନ୍ତାନ ପ୍ରସବ କରିବେ । ଯେତେବେଳେ ପିଲାଟି ଜନ୍ମ ହେବ ସମସ୍ତେ ଜାଣିବେ ଯେ ଏହା ତାଙ୍କ ସ୍ୱାମୀଙ୍କର ଔରସରୁ ହୋଇନାହିଁ । ସୁତରାଂ ଏକ ଅବୈଧ ସନ୍ତାନକୁ ଜନ୍ମ ଦେବା ପରିବର୍ତ୍ତେ ମୃତ୍ୟୁବରଣ କରିବା ଶ୍ରେୟସ୍କର ।

ଜେରେନଙ୍କ ପାଖରୁ ଏସବୁ ସଂଗ୍ରହ କରିବାପରେ ତାଙ୍କ ସ୍ୱାମୀଙ୍କୁ ଏହି ପ୍ରକାରର ଅନ୍ୟ ଏକ ଘଟଣା ବିଷୟ କୋଭୁର କହିଲେ । ସେ ଏକ୍ସଙ୍କୁ କହିଲେ ଯେ ଜେରେନଙ୍କର ମାନସିକ ଅବସ୍ଥା ପାଇଁ ଏକ୍ସ ହି ଦାୟୀ । ମୃତଲୋକର ଆତ୍ମାକୁ ଡାକିଲେ ତାହା ଆସି ଆମ ପ୍ରଶ୍ନର ଉତ୍ତର ଦେଇଥାଏ ଏକ ଅର୍ଥହୀନ ବିଶ୍ୱାସ । ଯଦିବା ସେ ଓ ତାଙ୍କ ପତ୍ନୀ ଗ୍ଲାସ ଉପରେ ହାତ ରଖିବା ଦ୍ୱାରା ତାହା ଅକ୍ଷର ପାଖକୁ ଘୁଞ୍ଚି ଘୁଞ୍ଚି ଯାଉଥିଲା, ଏହା ତାଙ୍କ ପତ୍ନୀଙ୍କର କାର୍ଯ୍ୟ ଥିଲା । ତାଙ୍କ ମସ୍ତିଷ୍କର ନିର୍ଦ୍ଦେଶାନୁଯାୟୀ ହାତର ମାଂସ ପେଶୀର ଚାଳନାଦ୍ୱାରା ପାତ୍ରଟି ଗତିଶୀଳ ହେଉଥିଲା । କାରଣ ରାତ୍ରିରେ ସେ ଏକା ଏହାକୁ ଚଳାଇ ଆତ୍ମାକୁ ଡାକି ଉତ୍ତର ପାଉଥିଲେ । ସେମାନେ ଯେଉଁ ଆତ୍ମାମାନଙ୍କୁ ଡାକି ଉତ୍ତର ପାଉଥିଲେ ବୋଲି ଭାବୁଥିଲେ ସେସବୁ ଉତ୍ତର ଜେରେନଙ୍କର ଅବଚେତନ ମନରୁ ଆସୁଥିଲା । ଏକ ଅବଦମିତ ଯୌନ ଲିପ୍ସା ଯୋଗୁଁ କାଳ୍ପନିକ ସେଣ୍ଟ ଜୁଡେଙ୍କ ସହିତ ତାଙ୍କର କାମୋଦ୍ଦୀପକ ଅନୁଭୂତି ହେଉଥିଲା । ଆତ୍ମା ଆବାହନ ଦିନଠାରୁ ସେ ଏକ ମାନସିକ ଭ୍ରାନ୍ତି ଭିତରେ ରହି ଭ୍ରମ ପ୍ରତ୍ୟକ୍ଷ କରୁଥିଲେ । ତାଙ୍କର ଅନୁଭୂତି ଆତ୍ମନିଷ୍ଠ ଓ ତାହା ବାସ୍ତବ ନଥିଲା । ସେଣ୍ଟ ଜୁଡେଙ୍କ ସହିତ ପ୍ରେମ କରିବା, ଗର୍ଭବତୀ ହେବା, ନିଜର ତକିଆ ତଳେ ଟଙ୍କା ଦେଖିବା, ମୁଦି ପାଇଁ ପ୍ରତିଶ୍ରୁତି ପାଇବା ଓ ପରଜନ୍ମରେ ବିବାହର ଆଶ୍ୱାସନା ଲାଭ କରିବା ଇତ୍ୟାଦି ଜେରେନଙ୍କର ଅନୁଭୂତି ପଶ୍ଚାତରେ ତାଙ୍କର ଅବଦମିତ ଯୌନ କାମନା ରହିଥିଲା । ସେହିପରି ତାଙ୍କର ମୁଦି ଓ କାନର ଅଳଙ୍କାର ଖୋଲା, ହାତର କାମୁଡା ଚିହ୍ନ ଇତ୍ୟାଦି ସେ ନିଜେ ହିଁ ଅବଚେତନ ମନରେ କରୁଥିଲେ । ସୁତରାଂ ତାଙ୍କର ସମସ୍ୟା ସଂପୂର୍ଣ୍ଣ ଭାବେ ମନସ୍ତାତ୍ତ୍ୱିକ ।

କୋଭୁର ଏକ୍ସଙ୍କୁ ପରାମର୍ଶ ଦେଲେ ଯେ ଯେତେବେଳେ ତାଙ୍କର ପତ୍ନୀଙ୍କର ଶରୀରରେ ଯୌନ ଗ୍ରନ୍ଥି ସକ୍ରିୟ ରହିଛି ଓ ସେ ପୂର୍ଣ୍ଣ ଯୌବନ ପ୍ରାପ୍ତ ହୋଇ ରହିଛନ୍ତି ସେ ସମୟରେ ତାଙ୍କୁ ପରିତ୍ୟାଗ କରି ଧ୍ୟାନ,ପ୍ରାର୍ଥନା ଭିତରେ ମନ ନିବେଶ କରିବାଦ୍ୱାରା ତାଙ୍କର ଏହି ବିକୃତ ଅବସ୍ଥା ହୋଇଛି । ସୁତରାଂ ଜଣେ ତରୁଣୀଙ୍କୁ ବିବାହ କରି ଶାରୀରିକ ସମ୍ପର୍କ ନ ରଖିବା ଫଳରେ ଏହି ଅବସ୍ଥା ସୃଷ୍ଟି ହୋଇଛି । ଯଦି ଏକ୍ସ କୌଣସି ସନ୍ତାନ ଚାହାନ୍ତି ନାହିଁ ତେବେ ସେଥିପାଇଁ ପରିବାର ନିୟୋଜନ କରିପାରିବେ ବା କୃତ୍ରିମ ପନ୍ଥା ନେଇପାରିବେ । ତାଙ୍କ ପରି ଜଣେ ସଚେତନ ଓ ଶିକ୍ଷିତ ବ୍ୟକ୍ତି

ମାନସିକ ବିକୃତିର ଆରୋଗ୍ୟ ପାଇଁ ମାନସିକ ରୋଗ ଚିକିତ୍ସକ (psychiatrist) ଙ୍କୁ ପରାମର୍ଶ କରିବା ପରିବର୍ତ୍ତେ ଗୁଣିଆଁ ବା ତାନ୍ତ୍ରିକମାନଙ୍କର ଦ୍ୱାରସ୍ଥ ହୋଇ ଅର୍ଥ ବ୍ୟୟ କରିବା ଦୁର୍ଭାଗ୍ୟଜନକ ଅଟେ । ଜେରେନଙ୍କ ସଂଭ୍ରମ ଓ ନୈତିକ ଦୃଷ୍ଟିଭଙ୍ଗୀ ଯୋଗୁଁ ସେ ନିଜର ଯୌନ ପରିତୃପ୍ତି ଜନିତ ଜୈବିକ ଆବଶ୍ୟକତାକୁ ଅବଚେତନ ମନର ଅନୁଭୂତି ମାଧ୍ୟମରେ ପୂର୍ଣ୍ଣ କରୁଛନ୍ତି । ସୁତରାଂ ଏକ୍ସଙ୍କ ଉପରେ ପତ୍ନୀଙ୍କର ମାନସିକ ସ୍ୱାସ୍ଥ୍ୟ ନିର୍ଭର କରୁଛି ।

ଏହାପରେ କୋଭୁର ଜେରେନଙ୍କୁ ସମ୍ମୋହିତ ଅବସ୍ଥାରେ ପରାମର୍ଶ ଦେଲେ ଯେ ସେଣ୍ଟ ଜୁଡେ ତାଙ୍କ ସମ୍ମୁଖରେ ଉପସ୍ଥିତ ରହିଛନ୍ତି ଓ ଏହା ତାଙ୍କର ଶେଷ ସାକ୍ଷାତ । ସେ ତାଙ୍କଠାରୁ ବିଦାୟ ନେଇ ଯାଉଛନ୍ତି । ଏହି ସମ୍ମୋହନ ଜନିତ ପରାମର୍ଶରେ ଜେରେନଙ୍କର ମୁଖର ଭାବାତ୍ମକ ପ୍ରତିକ୍ରିୟା ବେଶ୍ ସୁସ୍ପଷ୍ଟ ହୋଇ ଉଠିଲା । ଏହା ସହିତ କୋଭୁର ପୁନଶ୍ଚ ତାଙ୍କୁ ସେହି ଅବସ୍ଥାରେ କହିଲେ ଯେ ସେଣ୍ଟ ଜୁଡେ ଯିବା ସହିତ ଜେରେନଙ୍କର ଗର୍ଭସ୍ଥ ସନ୍ତାନକୁ ମଧ୍ୟ ନେଇ ଯାଉଛନ୍ତି । ଏବେ ତାଙ୍କର ସ୍ୱାମୀ ପ୍ରତ୍ୟହ ତାଙ୍କ ପାଖକୁ ଆସିବେ । ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ପୂର୍ବର ସମ୍ପର୍କ ରହିବ ଓ ସେମାନେ ଦାମ୍ପତ୍ୟ ଜୀବନ କଟାଇବେ ।

ଏକ୍ସ ଓ ଜେରେନ କୋଭୁରଙ୍କ ପାଖରୁ ବିଦାୟ ନେବାର ଏକ ମାସ ପରେ ସେମାନେ କେତେକ ଉପହାର ନେଇ କୋଭୁରଙ୍କୁ ସାକ୍ଷାତ କରିବାକୁ ଆସିଲେ । ସେହି ଅବସରରେ କୋଭୁର ସେମାନଙ୍କୁ କହିଲେ ଯେ ସେମାନଙ୍କର କାହାଣୀକୁ ଫ୍ରାନ୍ସ, ଇଟାଲୀ ଓ ସ୍ପେନ ଆଦି ଦେଶରେ ପ୍ରକାଶ କରିବାକୁ ସେମାନେ ତାଙ୍କୁ ଅନୁମତି ଦେବେ କି ? ସେହି ଦେଶମାନଙ୍କରେ ଏହା କାହିଁକି ପ୍ରକାଶ କରାଯିବା ଦରକାର ବୋଲି ଜେରେନ ଜାଣିବାକୁ ଚାହିଁବାରୁ ଉତ୍ତରରେ ସେ କହିଲେ ଯେ କାରଣ ଯଦି ସେ (ଜେରେନ) ସେହି ଦେଶମାନଙ୍କରେ ଥାନ୍ତେ ତେବେ ସ୍ୱର୍ଗଦୂତ ବା ପବିତ୍ର ଆତ୍ମା ଦ୍ୱାରା ଗର୍ଭବତୀ ହେବାର ଅନୁଭୂତି ଯୋଗୁଁ ଲୋକମାନେ ତାଙ୍କୁ ଏକ ପବିତ୍ର ଦେବାତ୍ମା ବୋଲି ସମ୍ମାନ କରିଥାନ୍ତେ ।

(ଖ) ରଣସିଂହଙ୍କର ତିନି ଝିଅ ମଧ୍ୟରୁ ବଡ ଝିଅ ହେଲା ଲତା । ବୟସ ୧୬ ବର୍ଷ । ଦେଖିବାକୁ ବହୁତ ସୁନ୍ଦର ଓ ଉତ୍ତମ ସ୍ୱାସ୍ଥ୍ୟ । ଲତା ବିଦ୍ୟାଳୟରେ

ସମସ୍ତଙ୍କର ପ୍ରଶଂସାର ପାତ୍ର । ସ୍କୁଲର ନେଟ୍ ବଲ ଟିମରେ ଖେଳିବାକୁ ଯାଇ ଶ୍ରୀଲଙ୍କାର ସମସ୍ତ ସ୍କୁଲକୁ ହରାଇ ତାଙ୍କ ସ୍କୁଲ ପାଇଁ ଟ୍ରଫି ଆଣି ଚାମ୍ପିୟାନ ହୋଇଥିଲା । ତାର ଅପୂର୍ବ ଖେଳ କୌଶଳ ବିଷୟରେ ବିଭିନ୍ନ ସମ୍ବାଦ ପତ୍ରର ଖେଳ ସ୍ତମ୍ଭରେ ପ୍ରଶଂସା ବାହାରିଥିଲା । ଖେଳ ସହିତ ପାଠରେ ମଧ୍ୟ ସେ ଆଗୁଆ ଓ ଶ୍ରେଣୀରେ ସର୍ବଦା ପ୍ରଥମ ସ୍ଥାନ ଅଧିକାର କରୁଥିଲା । ବିଦ୍ୟାଳୟର ବିଭିନ୍ନ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ସେ ସର୍ବଦା କୃତିତ୍ୱ ଦେଖାଉଥିଲା । ବିଦ୍ୟାଳୟର ପୁରସ୍କାର ବିତରଣୀ ଉତ୍ସବରେ ସେ ସବୁଠାରୁ ଅଧିକ ପୁରସ୍କାର ପାଇଥିଲା । ଅଧ୍ୟକ୍ଷ ତାଙ୍କର ବିବରଣୀରେ ଲତାର ନାମ ଉଲ୍ଲେଖ କରି ସେ ବିଦ୍ୟାଳୟ ପାଇଁ କିପରି ଗୌରବ ତାହା ବର୍ଣ୍ଣନା କରିଥିଲେ ।

ରଣସିଂହେ କିରାଣୀ ଭାବରେ ସରକାରୀ ଚାକିରୀ କରୁଥିଲେ । ଲତାର ବିଭିନ୍ନ ସଫଳତା ପାଇଁ ସେ ସ୍ୱଳ୍ପ ଆୟ ଭିତରେ ସମସ୍ତ ଆବଶ୍ୟକତାକୁ ପୂରଣ କରୁଥିଲେ । ଲତା ମାଟ୍ରିକ ପରୀକ୍ଷା ଦେବା ପରେ ପରେ ତାର ସମସ୍ୟା ଆରମ୍ଭ ହେଲା । ସେ ଯେଉଁ ବିଦ୍ୟାଳୟକୁ ଏତେ ଭଲ ପାଉଥିଲା, ସେଠାକୁ ଆଉ ଗଲା ନାହିଁ । ତାର ପରୀକ୍ଷା ସରିବା ଦିନଠାରୁ ରଣସିଂହେ ଓ ତାଙ୍କର ପତ୍ନୀ ଲତାର ବ୍ୟବହାରରେ କିଛିଟା ଅସ୍ୱାଭାବିକତା ଲକ୍ଷ୍ୟ କଲେ । ଲତା ସବୁବେଳେ ଚୁପ ଚାପ ରହୁଥିଲା ଓ କୌଣସିଥିରେ ଆଗ୍ରହ ଦେଖାଉ ନଥିଲା ।

ଲତାର ମା ଲକ୍ଷ୍ୟ କଲେ ଯେ ସକାଳୁ ପ୍ରତିଦିନ ବିଛଣାରୁ ଉଠିବା ମାତ୍ରେ ସେ ତାର ପୋଷାକ ବଦଳାଉଛି । ଏହିପରି ଚାରି ପାଞ୍ଚଦିନ ଦେଖିବା ପରେ ସେ ତାର କାରଣ ଝିଅକୁ ପଚାରିଲେ । ଲତା ଉତ୍ତରରେ କହିଲା ଯେ ସେ ଯାହା ପିନ୍ଧୁଛି, ରାତିରେ ତାହା ଚିରିଯାଉଛି । ଗୋଟିଏ ଫ୍ରକକୁ ଗୋଟିଏ ଦିନ ପିନ୍ଧିବା ପରେ ସେଥିରେ ଚିରା ବା ଫାଟ ହେବାରୁ ସେ ତାହା ରଖି ଦେଉଛି । ଲତାର ମା ସମସ୍ତ ଫ୍ରକ୍ ଗୁଡ଼ିକ ପରୀକ୍ଷା କରି ଦେଖିଲେ ଯେ ପ୍ରତ୍ୟେକ ଥିରେ କଣା ହୋଇଛି ଓ ଏପରି ଜାଗାରେ ହୋଇଛି ଯେ ତାହା ଆଉ ପିନ୍ଧି ହେବ ନାହିଁ । ଦୁଇ ସପ୍ତାହ ଭିତରେ ଲତାର ସମସ୍ତ ପୋଷାକ ଚିରା ଫଟା ହୋଇଗଲା । ତାର ବାପା, ମା ଏହା କିପରି ଚିରି ଯାଉଛି ତାକୁ ପଚାରିବାରୁ ସେ କହିଲା ଯେ ତାର ଅଜ୍ଞାତସାରରେ ଶୋଇବା ଅବସ୍ଥାରେ ସେ ସବୁ କିପରି ଚିରିଯାଉଛି । ନିଜର ଝିଅକୁ ଚିରା ପୋଷାକରେ ନ ଦେଖିବା ପାଇଁ ରଣସିଂହେ ଝିଅ ପାଇଁ ଆଉ କେତେ ହଳ ପୋଷାକ କରାଇଦେଲେ । ସେଗୁଡ଼ିକରେ ମଧ୍ୟ ଅଳ୍ପଦିନ

ଭିତରେ ପୂର୍ବପରି ଚିରା ସୃଷ୍ଟି ହୋଇଗଲା । ଏଥିରେ ଲତାର ବାପା ରାଗିକରି ଝିଅକୁ ଥରେ ଗାଳି ଦେଲେ ଓ ଚାପୁଡାଏ ମଧ୍ୟ ମାରିଲେ । ଏହି ଘଟଣା ପରଠୁ ଅବସ୍ଥା ଆହୁରି ଖରାପ ହେଲା । ଲତା ପରଦିନ ବିଛଣାରୁ ଉଠିବା ବେଳକୁ ତାର ଜାମାରେ ବଡ ଧରଣର କଣା ହୋଇଥିବା ଦେଖାଗଲା । ଜଣାଗଲା ଯେ ଗୋଟିଏ କତୁରିରେ ଜାମାର ଅଂଶ ସବୁ କଟାଯାଇଛି । ପୁଣି ଏପରି ଜାଗାରେ କଟାଯାଇଛି ତାହା ପିନ୍ଧିଲେ ଶରୀର ଆବୃତ ରହିପାରିବ ନାହିଁ । ଶେଷରେ ସିଲେଇ ଓ ରଫୁ କରି ଫ୍ରକକୁ ପିନ୍ଧିବାକୁ ହେଲା । ପରିସ୍ଥିତି ଏପରି ହେଲା ଯେ ଲତା ଘରର କୋଠରିଟିଏ ଭିତରେ ବନ୍ଦୀ ହୋଇ ରହିଲା ପରି ରହିଲା । ଚିରା ପୋଷାକରେ ବାହାରକୁ ଯିବା ସମ୍ଭବ ନଥିଲା । ଫ୍ରକମାନଙ୍କରେ ଏକାଧିକ କଣା ଓ ଫଟା ଯୋଗୁଁ ସେ ଘରେ ଆବଦ୍ଧ ହୋଇରହିଥାଏ । ତାର ମା ଛୁରି, କତୁରୀ, ବ୍ଲେଡ ଇତ୍ୟାଦି ଲତାର କୋଠରୀରୁ ନେଇଗଲେ । ଲତା ଗୋଟିଏ କୋଠରୀରେ ଥାଏ, ସେଠାରେ ଖାଏ, କେବଳ ଝାଡା, ପରିଶ୍ରା ପାଇଁ ବାହାରକୁ ଆସେ । ପ୍ରତିଦିନ ଗାଧୁଆ ମଧ୍ୟ ସେ ଛାଡିଦେଲା ।

ଝିଅର ଏହି ସ୍ଥିତିରେ ରଣସିଂହେ ଓ ତାଙ୍କର ପତ୍ନୀ ବିବ୍ରତ ହେଲେ । ସେମାନେ ଧାରଣା କଲେ ଯେ କୌଣସି ଆତ୍ମା ଏପରି କରୁଛି । ତେଣୁ ସେମାନେ ବିଭିନ୍ନ ଗୁଣିଆଁମାନଙ୍କୁ ପରାମର୍ଶକରି ପ୍ରତିକାର ପାଇଁ ଚେଷ୍ଟା କଲେ । ବିଭିନ୍ନ ପୂଜା ଇତ୍ୟାଦି କରାଯାଇ ଘର ଚାରିପଟକୁ କିଳାଗଲା । ଘରର ଚାରିକଡରେ ମନ୍ତ୍ର କରାଯାଇ ପଥର ପୋତାଗଲା । ଜଣେ ଗୁଣିଆଁ କହିଲେ ଯେ ଲତାର ଜଣେ ସମ୍ପର୍କୀୟ ସ୍ୱର୍ଗତ ମାମୁଁଙ୍କର ଆତ୍ମା ଆସି ଏହା କରୁଛି । ସେପରି କିନ୍ତୁ ତାର କେହି ମାମୁଁ ମୃତ୍ୟୁବରଣ କରିନଥିଲେ । ଲତା ଦେହରେ ମନ୍ତ୍ରପୂତ ତେଉଁରିଆ ବନ୍ଧାଗଲା । ଏଥିରେ ଅନେକ କିଛି ଅର୍ଥବ୍ୟୟ ହେଲା, ତଥାପି ପରିସ୍ଥିତିରେ କିଛି ଉନ୍ନତି ହେଲା ନାହିଁ ।

ନିଜର ଫ୍ରକ ଚିରିଯିବାର କାରଣ ସମ୍ପର୍କରେ ଲତା ସର୍ବଦା ନିଜର ଅଜ୍ଞତା ପ୍ରକାଶ କରୁଥିଲା । ଏବେ ସେ କହିବାକୁ ଲାଗିଲା ଯେ ଗୋଟିଏ ଆତ୍ମା ରାତିରେ ତା ପାଖକୁ ଆସୁଛି ଓ ଜୋର ଜବରଦସ୍ତ ତାର ଫ୍ରକକୁ ଚିରି ଦେଉଛି । ଦିନେ ସକାଳେ ଲତା ନିଦରୁ ଉଠି ଜୋରରେ କାନ୍ଦିବାକୁ ଲାଗିଲା । ତା ବାପା, ମା ତା ପାଖକୁ ଆସି ଦେଖିଲେ ଯେ ଲତା ମୁଣ୍ଡର କେଶ କିଛି କଟାଯାଇ ବିଛଣା ଓ ତଳେ ପଡିଛି । ଲତା କହିଲା ଯେ ଗତ ରାତିରେ ସେହି ଆତ୍ମା ଦୁଇଥର ତା ପାଖକୁ ଆସି ପ୍ରଥମ ଥର ତା

ଦେହର ବିଭିନ୍ନ ଜାଗାରେ ଆମ୍ପୁଡିଛି, ଗୋଟିଏ ଜାଗାରେ କାମୁଡିଛି ଓ ଦ୍ୱିତୀୟ ଥର ତାର ଚୂଳ କାଟିଦେଇଛି ।

ଏହିପରି ପରିସ୍ଥିତି ଅଣାୟତ୍ତ ହେବାରୁ ଶେଷରେ ଲତାର ଜଣେ ମାମୁଁଙ୍କର ମାର୍ଫତରେ ଜଣେ ବିଶିଷ୍ଟ ତାନ୍ତ୍ରିକ ସହ ଯୋଗାଯୋଗ ହେଲା । ତାନ୍ତ୍ରିକଙ୍କ ଆସିବା ପରିପ୍ରେକ୍ଷୀରେ ଲତା ପାଇଁ ହଳେ ନୂଆ ପୋଷାକ କରାଗଲା । ସେମାନେ ଆସିବା ଦିନ ତାର ମା ବାଧ୍ୟ କରି ଲତାକୁ ଗାଧୁଆ ଘରକୁ ନେଲେ । ଲତାର ଛାତି ଓ ଜଙ୍ଘର ବିଭିନ୍ନ ଜାଗାରେ ଆମ୍ପୁଡା ଓ ରକ୍ତ ଦାଗ ଦେଖି ତାର ମା ଦୁଃଖରେ ଭାଙ୍ଗି ପଡିଲେ । ଲତାର ମାମୁଁ ତାନ୍ତ୍ରିକଙ୍କ ସହ ପହଞ୍ଚିଲେ । ଦୀର୍ଘ ସମୟ ଧରି ମନ୍ତ୍ର ଓ ପୂଜାପାଠ ପରେ ତାନ୍ତ୍ରିକ ଜଣଙ୍କ ଲତାର ଡାହାଣ ହାତ ଓ ବେକରେ ମନ୍ତ୍ରପୂତ ସୂତା ବାନ୍ଧିଲେ । ବିଷ୍ଣୁରାଜ ତୈଳରେ ପ୍ରସ୍ତୁତ ଏକ କବଚ ଲତାର ହାତରେ ମଧ୍ୟ ପିନ୍ଧିବାକୁ ଦେଲେ ।ଏହିପରି ପୂଜା ଶେଷକରି ସେ ବିଦାୟ ନେଲେ । ତାପର ଦୁଇଦିନ କୌଣସି ଅଘଟଣ ଘଟିଲା ନାହିଁ । କିନ୍ତୁ ତୃତୀୟ ଦିନରୁ ପୁନଶ୍ଚ ପୂର୍ବପରି ଘଟଣା ଘଟିବାକୁ ଲାଗିଲା ।

ଏହି ପରିସ୍ଥିତିରେ ରଣସିଂହେ କୋଭୁରଙ୍କ ସହିତ ସାକ୍ଷାତ କରିବାକୁ ଆସିଲେ । କୋଭୁର ସମସ୍ତ ବିବରଣୀ ଶୁଣିବା ପରେ ପରବର୍ତ୍ତୀ ରବିବାର ଦିନ ସସ୍ତ୍ରୀକ ରଣସିଂହେଙ୍କ ଘରକୁ ଆସିଲେ । ଗତ ଦୁଇମାସ ଧରି ଖା ପିଅରେ ଅନାଗ୍ରହ ଓ ମାନସିକ ବିଷାଦ ସତ୍ତ୍ୱେ ଲତାର ଶାରୀରିକ ସୌନ୍ଦର୍ଯ୍ୟ ବେଶ୍ ଆକର୍ଷଣୀୟ ଥିଲା । ଯଦିବା ତାର ବୟସ ଷୋହଳ ଥିଲା ତେବେ ତାର ଶାରୀରିକ ଅଭିବୃଦ୍ଧିରୁ ସେ ଅଠର/ ଉଣେଇଶ ବର୍ଷର ହେବ ବୋଲି ଜଣା ପଡୁଥିଲା । କୋଭୁର ନିଜ ପତ୍ନୀଙ୍କ ଦ୍ୱାରା ଲତାର ଶରୀରକୁ ପରୀକ୍ଷା କରାଇ ଜାଣିବାକୁ ପାଇଲେ ଯେ ଲତାର ଛାତିର ବାମପଟରେ ପାଞ୍ଚଟି ଆମ୍ପୁଡା ଜନିତ କ୍ଷତ, ଜଙ୍ଘରେ ଦୁଇଟି କ୍ଷତ ଓ ଡାହାଣ ହାତରେ ଗୋଟିଏ କାମୁଡା ଚିହ୍ନ ରହିଛି । କାମୁଡା ଚିହ୍ନର ଦୁଇଦାନ୍ତ ମଝିରେ ଏକ ଫାଙ୍କ ଥିବା ମଧ୍ୟ ଜାଣିଲେ ।

ଏହାପରେ କୋଭୁର ଲତାକୁ ବିଭିନ୍ନ ପ୍ରଶ୍ନ କରି ତା ପାଖରୁ ଅନ୍ୟାନ୍ୟ କଥା ମଧ୍ୟରେ ଜାଣିବାକୁ ପାଇଲେ ଯେ, ସେ ଶୋଇବା ଅବସ୍ଥାରେ ଏକ ହୃଷ୍ଟପୁଷ୍ଟ ଯୁବକ ତା ପାଖକୁ ଆସି ତାକୁ ଆଲିଙ୍ଗନ ଓ ଚୁମ୍ବନ ଦେଉଛି । ସେହି ଯୁବକ ତା ପାଇଁ

ଚକଲେଟ, ମିଠା ଇତ୍ୟାଦି ଉପହାର ମଧ୍ୟ ଆଣୁଛି । ଏହାପରେ ଲତାକୁ ବାହାରେ ଥିବା ଏକ କାରରେ ଯାଇ ବସିବାକୁ ବାଧ୍ୟ କରୁଛି । ଲତା ଯିବାକୁ ଅନିଚ୍ଛା ପ୍ରକାଶ କରିବାରୁ ସେ ତାକୁ ଜୋରରେ ଟାଣୁଛି । ଲତାର ବିରୋଧ ଭିତରେ ତାର ଫ୍ରକ ଚିରିଯାଉଛି ଓ ସେ ଯୁବକ ତାକୁ ରାଗରେ ଆଞ୍ଚୁଡୁଛି ବା କାମୁଡୁଛି । ନିଜର ଜାମାକୁ ନ ଚିରିବାକୁ ଲତା ପ୍ରତିରୋଧ କରିବାରୁ ସେ ଯୁବକ ନିଜର ଆଙ୍ଗୁଳି ସାହାଯ୍ୟରେ ଫ୍ରକରେ କଣା କରିଦେଉଛି । ତାର ବିରୋଧ ଓ ଯୁବକର ବାଧ୍ୟ ବାଧକତା ଭିତରେ ସେ ଭୀଷଣ ଆକାର ଧାରଣ କରି ଲତାକୁ ନିଜର ବାହୁରେ ଟେକି ନେଉଛି ଓ ଭୂମିରେ ଛାଡି ଦେଉଛି । ଏକଦା ସେ ଏକ କଇଁଚି ସାହାଯ୍ୟରେ ଲତାର କେଶକୁ ମଧ୍ୟ କାଟି ଦେଇଥିଲା ।

ନିଦ୍ରାରେ ତା ପାଖକୁ ଆସୁଥିବା ବ୍ୟକ୍ତି ପରି କୌଣସି ଯୁବକକୁ ଲତା କେବେ ଦେଖିଛିକି ବୋଲି କୋଭୁର ତାକୁ ପ୍ରଶ୍ନ କରିବାରୁ ତାର ଉତ୍ତରରେ ଲତା କହିଲା ଯେ ସେ ଠିକ୍ ବାଳକ ବିଦ୍ୟାଳୟର ଫୁଟବଲ କ୍ୟାପଟେନ ଲିଓନେଲ ପରି । ପ୍ରତିଦିନ ସେ ବିଦ୍ୟାଳୟକୁ ଯିବାବେଳେ ଓ ଫେରିବାବେଳେ ତାର ଲିଓନେଲ ସହିତ ସାକ୍ଷାତ ହୁଏ । ଯେତେବେଳେ ସେ ନେଟ ବଲ ଟିମରେ ଖେଳିବାକୁ ବାହାରକୁ ଯାଇଥିଲା ଲିଓନେଲ ମଧ୍ୟ ଖେଳ ଦେଖିବାକୁ ଯାଇ ସର୍ବଦା ତାକୁ ପଡିଆରେ ଉତ୍ସାହ ଦେଉଥିଲା । କିନ୍ତୁ ଦୁଃଖର କଥା ସେ ଏକ ସଡକ ଦୁର୍ଘଟଣାରେ ତିନି ମାସ ତଳେ ମୃତ୍ୟୁବରଣ କଲା । ଏହା କହିବାବେଳେ ଲତାର ଆଖି ଛଳ ଛଳ ହୋଇ ଯାଇଥିଲା ।

ଲତାକୁ ଏକ ସମ୍ମୋହିତ ସ୍ଥିତିରେ ରଖି ପଚାରିବାରେ ସେ ନିଜର ଫ୍ରକ ନିଜେ ଚିରୁଥିବା, ନିଜର ଦେହରେ ଆଞ୍ଚୁଡି ଥିବା, ହାତକୁ କାମୁଡିଥିବା ଓ ଚୂଳକୁ କାଟିଥିବା ସ୍ୱୀକାର କଲା । ତାହା ପୁନଶ୍ଚ ନ କରିବାକୁ କୋଭୁର ତାକୁ ପରାମର୍ଶ ଦେଲେ । ସେ ସେହି ମାନସିକ ସ୍ଥିତିରେ ଏହା ନ କରିବାକୁ ସ୍ୱୀକାରୋକ୍ତି ଦେଲା ।

ଏହାପରେ ରଣସିଂହେଙ୍କୁ ଲତାର ସମସ୍ୟା ବିଷୟରେ ସମ୍ୟକ ସୂଚନା ଦେଇ ତାର ବିବାହ କରାଇବାକୁ କୋଭୁର ପରାମର୍ଶ ଦେଲେ । ଭାବୀ ଜାମାତା ଜଣେ ଖେଳୁଆଡ ଯୁବକ ହେଲେ ଭଲ ହେବ ବୋଲି ମଧ୍ୟ ଜଣାଇଲେ ।

କିଛିଦିନ ପରେ ଲତାର ବିବାହ ହେବା ବିଷୟ କୋଭୁର ଜାଣିବାକୁ ପାଇଲେ । ଗୋଟିଏ ପୁଅ ଓ ଗୋଟିଏ ଝିଅର ମା' ହୋଇ ଲତା ସୁଖମୟ ଦାମ୍ପତ୍ୟ ଜୀବନ ଅତିବାହିତ କଲା ।

ଲତାର ଏହି ଅସ୍ୱାଭାବିକ ବ୍ୟବହାର କାହିଁକି ହେଲା ? ସେ ଏପରି ଏକ ସ୍କିଜୋଫ୍ରେନିକ୍ ରୋଗୀ ସାମୟିକ ଭାବରେ ହେବାର କାରଣ କ'ଣ ହୋଇପାରେ ? ଏହାର ବିଶ୍ଳେଷଣରେ କୋଭୁରଙ୍କର ମତ ହେଲା ଯେ ଲତାର ଶାରୀରିକ ଅଭିବୃଦ୍ଧି ଓ ସମ୍ଭବତଃ ଯୌନ ଗ୍ରନ୍ଥି ତାର ବୟସ ତୁଳନାରେ ଶୀଘ୍ର ସକ୍ରିୟ ହୋଇଥିଲା । ସେ ଯେଉଁ ପରିବାରରେ ବଢ଼ିଥିଲା ସେଠାରେ ପୁରୁଷ ଲୋକଙ୍କର ସଂସ୍ପର୍ଶରେ ଆସିବାର ଅବକାଶ ମିଳୁନଥିଲା । ସମ୍ଭବତଃ କେବଳ ଲିଓନେଲ ସହିତ ଖୋଲାଖୋଲି ଭାବରେ ଲତା କଥା ହେଉଥିଲା ଓ ଉଭୟ ପରସ୍ପର ପ୍ରତି ଆକୃଷ୍ଟ ହୋଇଥିଲେ । ଉଭୟଙ୍କର ଖେଳ ପ୍ରତି ଆକର୍ଷଣ ଓ ଲତାର ଖେଳ ସମୟରେ ଲିଓନେଲ ସେଠାରେ ଉପସ୍ଥିତ ରହି ତାକୁ ଉତ୍ସାହ ଦେବା ଘଟଣାରୁ ସେମାନେ ପରସ୍ପର ପ୍ରତି ଆକୃଷ୍ଟ ହେବା ଜଣାପଡେ । ତିନିମାସ ତଳେ ଲିଓନେଲର ଆକସ୍ମିକ ମୃତ୍ୟୁ ଲତା ପାଇଁ ଏକ ବଡ ଆଘାତ ଥିଲା । ତା'ର ପରୀକ୍ଷା ଜନିତ ବ୍ୟସ୍ତତା ଯୋଗୁଁ ଗୋଟିଏ ମାସ କଟିଗଲା । ପରୀକ୍ଷା ପରେ ଲିଓନେଲର ମୃତ୍ୟୁ ଲତାର ଅବଚେତନ ମନରେ ଗଭୀର ଆଲୋଡନ ସୃଷ୍ଟି କଲା ।

ରାତିରେ ଲତା ପାଖକୁ ଆସୁଥିବା ହୃଷ୍ଟପୁଷ୍ଟ ଯୁବକ, ତା'ର ଆଲିଙ୍ଗନ, ଉପହାର, ତା ସହିତ ଯିବାକୁ ବାଧ୍ୟବାଧକତା ଇତ୍ୟାଦି ତାର ଭ୍ରମ ପ୍ରତ୍ୟକ୍ଷ ଜନିତ ଆବେଗର ପ୍ରକାଶ ଥିଲା । ନିଜର ଅବଚେତନ ମନର ଆକାଙ୍କ୍ଷା ଏହାରି ମାଧ୍ୟମରେ ପୂରଣ ହେଉଥିଲା । ନିଜର ଜାମା ଚିରିବା, ନିଜ ପ୍ରେମିକ ପାଖରେ ଅବଚେତନ ମନରେ ଥିବା ଆତ୍ମ ପ୍ରଦର୍ଶନ ପ୍ରବୃତ୍ତିର ସୂଚନା ଦିଏ । ନିଜର କେଶ କାଟିବା ନିଜକୁ ଅଧିକ ସୁନ୍ଦର କରି ଦେଖାଇବା ପ୍ରବୃତ୍ତିକୁ ବୁଝାଏ । ନିଜ ପ୍ରେମିକର ସ୍ପର୍ଶ ଜନିତ ଆନନ୍ଦ ପାଇଁ ସେ ନିଜ ଦେହକୁ ଆମ୍ପୁଡୁଥିଲା ଓ କାମୁଡୁଥିଲା । ଏହି କଷ୍ଟଦାୟକ ଅନୁଭୂତି ସତ୍ତ୍ୱେ ତାର ଅବଚେତନ ମନରେ ଥିବା ପୁରୁଷୋଚିତ ପ୍ରବୃତ୍ତି ପାଇଁ ସେ ଏପରି କରିଥିଲା । ତାର ପ୍ରତିରୋଧ ସମୟରେ ସେହି ଯୁବକ ଭୀଷଣ ଆକାର ଧାରଣ କରିବା ଏକ ହୃଷ୍ଟ ପୁଷ୍ଟ ଓ ବଳିଷ୍ଠ ବ୍ୟକ୍ତି ପ୍ରତି ତାର ଆଗ୍ରହକୁ ଦର୍ଶାଏ ।

ଏତଦ୍‌ବ୍ୟତୀତ ଲତା ଡାହାଣୁଆ ଥିବାରୁ ଛାତିର ବାମ ପଟରେ ହିଁ ସମସ୍ତ ଆଞ୍ଚୁଡା ଦାଗ ଥିଲା । ଯଦି କୌଣସି ଆତ୍ମା ଏହା କରୁଥାନ୍ତା ତେବେ ଅନ୍ତତଃ ଗୋଟିଏ ଆଞ୍ଚୁଡା ଦାଗ ଡାହାଣ ପଟରେ ହୋଇଥାନ୍ତା । ତାର ଉପର ମାଢ଼ିର ଛାମୁ ଦାନ୍ତ ମଝିରେ ଏକ ବଡ ଫାଙ୍କ ଥିଲା, ଯାହା କାମୁଡା ଦାଗରେ ସ୍ପଷ୍ଟ ହୋଇ ଜଣା ପଡୁଥିଲା । ସମସ୍ତ ଫ୍ରକ୍‌ର ବାମପଟ ଆଞ୍ଚୁଡା ପାଖରେ ହିଁ ଚିରା ଓ କଟାରୁ ଜଣା ପଡୁଥିଲା ଯେ ଲତା ତାର ଡାହାଣ ହାତରେ ସେ ସବୁ କରୁଥିଲା ।

ଏକ ଆତ୍ମା ଏସବୁ କରୁଥିଲା ବୋଲି ଲତା ଯାହା ଭାବୁଥିଲା ବା କହୁଥିଲା ତା'ର କାରଣ ହେଉଛି ପିଲାଟି ବେଳରୁ ସେ ଭୂତ ପ୍ରେତ ଓ ଆତ୍ମାମାନଙ୍କର ସ୍ଥିତି ବିଷୟରେ ନାନା କାହାଣୀ ଶୁଣିଥିଲା । ସୁତରାଂ ନିଜର ଅବଚେତନ ମନରେ ରହିଥିବା ଏହି ବିଶ୍ୱାସ ଯୋଗୁଁ ମାନସିକ ବିକୃତି ସମୟରେ ଭ୍ରମ ପ୍ରତ୍ୟକ୍ଷ ସବୁ ସୃଷ୍ଟି ହେଉଥିଲା । ଏହାଛଡା ସେ ସ୍କିଜୋଫ୍ରେନିଆରେ ଆକ୍ରାନ୍ତ ହେବା ଯୋଗୁଁ ନିଦ୍ରା ସମୟରେ କରୁଥିବା ଘଟଣା ଗୁଡିକୁ ଚେତନ ସମୟରେ ସ୍ମୃତି ଭିତରକୁ ଆଣିପାରୁ ନଥିଲା ।

(ଗ) ଜଷ୍ଟିନ୍ ପେରେରା ଜେଗୋମ୍ବାର ଜଣେ ବିଶିଷ୍ଟ ଆୟୁର୍ବେଦିକ ଡାକ୍ତର । ତାଙ୍କର ସ୍ତ୍ରୀ ଅଳ୍ପଦିନ ଭିତରେ ମରିଗଲେ । ତାଙ୍କର ଗୋଟିଏ ଝିଅ ଓ ଗୋଟିଏ ପୁଅ । ଝିଅ ପ୍ରେମା ବଡ ଓ ପୁଅ ପ୍ରେମକୁମାର ସାନ । ଉଭୟ ଏକ ଶିକ୍ଷାନୁଷ୍ଠାନରେ ପଢନ୍ତି । ପ୍ରେମାର ବୟସ ୧୫ ଓ ସେ ଖୁବ ଭଲ ପଢେ । ତାର ଜି.ସି.ଏଫ୍. ପରୀକ୍ଷାରେ ସେ ଛଅରୋଟି ବିଷୟରେ ଡିଷ୍ଟିଙ୍କସନ୍ ଓ ତିନୋଟି ବିଷୟରେ କ୍ରେଡିଟ୍ ରଖି ଉତ୍ତୀର୍ଣ୍ଣ ହେଲା । ଝିଅର ସଫଳତାରେ ପେରେରା ବହୁତ ଆନନ୍ଦିତ ଥା'ନ୍ତି । ସେହି ବର୍ଷ ସେହି ବିଦ୍ୟାଳୟରେ ଖୋଲିଥିବା ଉଚ୍ଚ ଶ୍ରେଣୀରେ ପ୍ରେମା ନାମ ଲେଖାଇଲା । ଶିକ୍ଷାନୁଷ୍ଠାନର ସମସ୍ତ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ପ୍ରେମା ଆଦରଣୀୟା ଥିଲା ।

ସିରି ସାଲଗାଡୋ ନୂଆ ଶିକ୍ଷକ ଭାବରେ ଅନୁଷ୍ଠାନରେ ଯୋଗଦେଲେ । ପ୍ରେମା ଗଣିତରେ ଟିକିଏ ସାହାଯ୍ୟ ଦରକାର କରୁଛି ଭାବି ସପ୍ତାହରେ ଦୁଇଦିନ ସେ ମାଗଣାରେ ଟିଉସନ କରିବାକୁ ପ୍ରସ୍ତାବ ଦେଲେ । ଆସ୍ତେ ଆସ୍ତେ ପ୍ରେମା ଶିକ୍ଷକଙ୍କ ପାଖରୁ ଗଣିତ ବୁଝିବା ସହ ତାଙ୍କର ବ୍ୟବହାର ପାଇଁ ତାଙ୍କୁ ପ୍ରଶଂସା କରିବାକୁ ବସିଲା । ଅନେକ ସମୟରେ ପ୍ରେମାର ସ୍କୁଲ ବ୍ୟାଗ ଭିତରେ ସାଲଗାଡୋଙ୍କର ବହି, ନୋଟ ଓ

ଲେଖା ଇତ୍ୟାଦି ଦେଖି ସହପାଠୀମାନେ ନାନା ଆଲୋଚନା କଲେ । ଏହା ଅଧ୍ୟକ୍ଷଙ୍କ କାନକୁ ଯିବାରୁ ସେ ଅନୁଷ୍ଠାନ ଭିତରେ ଟିଉସନକୁ ବନ୍ଦ କରିଦେଲେ । ସାଲଗାଡୋ ଏହାପରେ ପ୍ରେମାର ବାପାଙ୍କ ପାଖରେ ପହଞ୍ଚି ପ୍ରେମା କେତୋଟି ବିଷୟରେ ଟିକିଏ ଟିଉସନ ଆବଶ୍ୟକ କରୁଛି ବୋଲି କହି ନିଜେ ପଢାଇବାକୁ ପ୍ରସ୍ତାବ ଦେଲେ । ଫଳରେ ଶିକ୍ଷା ଅନୁଷ୍ଠାନରେ ବନ୍ଦ ହୋଇଥିବା ଟିଉସନ ପ୍ରେମାର ଘରେ ପୁଣି ଆରମ୍ଭ ହେଲା ।

କିଛିଦିନ ପରେ ଦିନେ ପ୍ରେମା ବିଦ୍ୟାଳୟକୁ ଆସିଥିବାବେଳେ ସାଲଗାଡୋ ଜଷ୍ଟିନ ପେରେରାଙ୍କୁ ସାକ୍ଷାତ କରି ପ୍ରେମାକୁ ବିବାହ କରିବାକୁ ନିଜ ତରଫରୁ ପ୍ରସ୍ତାବ ଦେଲେ । କିନ୍ତୁ ପ୍ରେମା ତାର ମାମୁଁ ପୁଅ ଜୟତିସାକୁ ବିବାହ କରିବାର ପ୍ରସ୍ତାବ ଥିବାରୁ ପ୍ରେମାର ବାପା ଭଦ୍ରଭାବେ ପ୍ରସ୍ତାବରେ ଅସମ୍ମତ ହେଲେ । ତାଙ୍କର ଏହି ଉତ୍ତରରେ ଯୁବକ ସାଲଗାଡୋଙ୍କର ଆଖି ଲୁହରେ ଛଳ ଛଳ ହୋଇଗଲା । ଏଥିରେ ପେରେରା ଅଭିଭୂତ ହୋଇ ପ୍ରସ୍ତାବ ବିଷୟରେ ପରେ ଜଣାଇବେ ବୋଲି କହିବା ସହିତ ଟିଉସନକୁ ବନ୍ଦ କରିଦେଲେ ।

ସେହିଦିନ ସନ୍ଧ୍ୟାରେ ପେରେରା ସାଲଗାଡୋଙ୍କ ସମ୍ପର୍କରେ ନିଜ ଝିଅକୁ ପଚାରିଲେ । ପ୍ରେମା ଉତ୍ତର ଦେଲା ଯେ ସେ ହେଉଛନ୍ତି ସବୁଠାରୁ ଭଲ ଶିକ୍ଷକ। ସ୍କୁଲର ସବୁ ପିଲା ତାଙ୍କୁ ଭଲ ପା'ନ୍ତି । ସେ ସୁନ୍ଦର ପଢାନ୍ତି ଓ କେବେ ବିରକ୍ତି ପ୍ରକାଶ କରନ୍ତି ନାହିଁ । ଏହାପରେ ପେରେରା ଅନ୍ୟମାନଙ୍କ ପାଖରୁ ସାଲଗାଡୋଙ୍କ ସମ୍ପର୍କରେ ଅନୁସନ୍ଧାନ କରି ଭଲ ଧାରଣା ଲାଭ କଲେ । ଫଳରେ ଜୟତିସା ପରିବର୍ତ୍ତେ ସାଲଗାଡୋ ଯେ ଅଧିକ ଗ୍ରହଣଯୋଗ୍ୟ ପ୍ରସ୍ତାବ ତାହା ସ୍ଥିର କଲେ । ସୁତରାଂ ସେ ପ୍ରସ୍ତାବ ସପକ୍ଷରେ ନିଜର ସମ୍ମତି ସାଲଗାଡୋଙ୍କୁ ଜଣାଇଦେଲେ । ଅଳ୍ପଦିନ ପରେ ବିବାହ ଖୁବ୍ ଭଲ ଭାବେ ସମ୍ପନ୍ନ ହେଲା ।

ସାଲଗାଡୋ ସ୍କୁଲ ପାଖରେ ଭଲ ଘରଟିଏ ଭଡା ନେଲେ ଓ ସେଠାରେ ତାଙ୍କର ନୂଆ ସଂସାର ଆରମ୍ଭ ହେଲା । ପ୍ରେମା ପଢା ବନ୍ଦ କରି ନିଜର ଗୃହକୁ ସୁନ୍ଦର କରିବାକୁ ଲାଗିଲେ । ସାଲଗାଡୋ ପ୍ରେମାଙ୍କର ସୁବିଧା ପାଇଁ ସବୁ କିଛି କରିବାକୁ ପ୍ରସ୍ତୁତ ଥିଲେ ଓ ସେ ଯାହା ଚାହୁଁଥିଲେ ତାହା ଅକ୍ଳେଶରେ ପୂରଣ କରୁଥିଲେ ।

ବିବାହ ତିନି ବର୍ଷ ହୋଇ ଯାଇଥିଲେ ବି ସେମାନଙ୍କର କୌଣସି ପିଲା ହେଲା ନାହିଁ । ପେରେରା ନାତି ବା ନାତୁଣୀ ନ ପାଇ ମନ ଦୁଃଖ କରୁଥିଲେ । ସେ ଜଣେ

ଜ୍ୟୋତିଷଙ୍କୁ ପରାମର୍ଶ କରିବାରୁ ସେ ଗ୍ରହ ଗଣନା କରି ଜୁଲାଇ ୧୯୫୯ ଭିତରେ ପ୍ରେମା କନ୍ୟାଟିଏ ଜନ୍ମ ଦେବେ ବୋଲି ଭବିଷ୍ୟବାଣୀ କଲେ, କିନ୍ତୁ ତାହା ହେଲା ନାହିଁ । ଏହାପରେ ଭବିଷ୍ୟବାଣୀ କରୁଥିବା ଜଣେ ମହିଳାଙ୍କୁ ପେରେରା ପରାମର୍ଶ କଲେ । ସେ ପୂଜା କରି ଜଣାଇଲେ ଯେ ପେରେରାଙ୍କର ଜଣେ ସମ୍ପର୍କୀୟ ଭାଇ ଈର୍ଷା ପରାୟଣ ହୋଇ ତାଙ୍କର ସମ୍ପତ୍ତି ପାଇବା ଆଶାରେ ପରିବାରକୁ ଧ୍ୱଂସ କରିଦେବାକୁ ଯୋଜନା କରିଛନ୍ତି । ସୁତରାଂ ତାଙ୍କ ବାଡିରେ ଗାତ ଖୋଳି ସେ ଗୋଟିଏ ପାତ୍ର ବାହାର କଲେ ଯେଉଁଥିରେ କେତେକ ବାଳ, ତମ୍ବା ପଇସା, କିଛି ହାଡ ଥିଲା । ସେ ଭବିଷ୍ୟବାଣୀ କଲେ ଯେ ଯେଉଁ ଗୁଣିଆଁ ଏହା କରିଥିଲା ତାହା ଆଉ କାର୍ଯ୍ୟକାରୀ ହେବ ନାହିଁ ଓ ପେରେରା ଗୋଟିଏ ବର୍ଷ ଭିତରେ ନାତିଟିଏ ପାଇବେ । ଏହା ଭିତରେ ପୁନଶ୍ଚ ଗୋଟିଏ ବର୍ଷ ବିତିଗଲା ଅଥଚ ପ୍ରେମାଙ୍କର ସେପରି କିଛି ଲକ୍ଷଣ ଦେଖାଗଲା ନାହିଁ । କିଛି ଦିନ ପରେ ପ୍ରେମାର ମାଉସୀ ତାଙ୍କ ଘରକୁ ବୁଲି ଆସିଥିଲେ ଓ କୌଣସି ସ୍ତ୍ରୀରୋଗ ବିଶେଷଜ୍ଞଙ୍କୁ ପରାମର୍ଶ କରିବାକୁ କହିଲେ । ଏଥିରେ ପ୍ରେମା ଉତ୍ତର ଦେଲେ ଯେ କୌଣସି ଡାକ୍ତରଙ୍କୁ ଦେଖାଇବାର ଆବଶ୍ୟକତା ନାହିଁ । ଡାକ୍ତର କୌଣସି ସ୍ତ୍ରୀଙ୍କୁ ଗର୍ଭବତୀ କରାଇପାରିବେ ନାହିଁ । ନିଜର ସ୍ୱାମୀ ନ ଚାହିଁଲେ ଡାକ୍ତର କ'ଣ ବା କରିପାରିବେ । ତାଙ୍କର ଏହି ଉତ୍ତରରୁ ମାଉସୀ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନେକ ପ୍ରଶ୍ନ ପଚାରିଲେ । ଏହା ଭିତରେ ବିବାହ କରିବା ଛ' ବର୍ଷ ପୂରି ଯାଇଥିଲେ ବି ପ୍ରେମାର ସାଲଗାଡୋଙ୍କ ସହିତ କୌଣସି ଦୈହିକ ସମ୍ପର୍କ ହୋଇ ନଥିବାର ଜାଣିଲେ । ମାଉସୀଙ୍କ ପାଖରୁ ଏହି ସମ୍ବାଦ ପେରେରାଙ୍କ ପାଖରେ ପହଞ୍ଚିଲା । ସେ ନିଜର ବନ୍ଧୁମାନଙ୍କ ସହିତ ପରାମର୍ଶ କଲେ । ପଶ୍ୟାଲାରେ ରହୁଥିବା ଜଣେ ବିଶିଷ୍ଟ ସାଧୁଙ୍କର ପରାମର୍ଶ ନେବାକୁ ଜଣେ ବନ୍ଧୁ ତାଙ୍କୁ କହିଲେ । ଫଳରେ ପେରେରା ବହୁ ଦୂରରେ ରହୁଥିବା ସେହି ସାଧୁଙ୍କୁ ସାକ୍ଷାତ କଲେ । ସାଧୁ ଏକ ମନ୍ତ୍ରପୂତ ତେଲ ଦେଇ କହିଲେ ଯେ ଏକ ତାବିଜ ଭିତରେ ସେହି ତେଲ ରଖି ପ୍ରେମାଙ୍କ ବେକରେ ଲଗାଇବାକୁ ହେବ । ସାଧୁ ସତର୍କ କରାଇଦେଲେ ଯେ ପୁରୁଷମାନଙ୍କୁ ଆକର୍ଷଣ କରିବାର ଶକ୍ତି ଏହି ତେଲର ଏତେ ଅଧିକ ଯେ ପ୍ରେମା ତାହା ପିନ୍ଧିଥିବା ବେଳେ ନିଜ ସ୍ୱାମୀଙ୍କ ଛଡା ଅନ୍ୟ କୌଣସି ପୁରୁଷଙ୍କ ନିକଟକୁ ଯିବା ଉଚିତ୍ ନୁହେଁ । ପେରେରା ତାହା ଝିଅକୁ ଦେଲେ ଓ ତାହା ସେ ପିନ୍ଧିଲେ । ପରିସ୍ଥିତି ଜାଣିବା ପାଇଁ ପ୍ରେମାର ମାଉସୀଙ୍କୁ ଆଉ ଥରେ ପ୍ରେମା ପାଖକୁ ପେରେରା ପଠାଇଲେ ଓ ଜାଣିଲେ ଯେ ପ୍ରେମା ସେ ପର୍ଯ୍ୟନ୍ତ କୁମାରୀ ଭଳି ସ୍ୱାମୀଙ୍କ ସହିତ ରହୁଛନ୍ତି ।

ଏହି ସ୍ଥିତିରେ ୬୨ ମସିହା ଫେବୃଆରୀରେ କୋଭୁର ଇଉରୋପରୁ ଫେରିବା ମାତ୍ରେ ପେରେରା ତାଙ୍କୁ ସାକ୍ଷାତ କଲେ । ସେ ସମସ୍ତ ବିବରଣୀ ଶୁଣିବା ପରେ ପ୍ରେମାଙ୍କର ସ୍ୱାମୀ ସାଲଗାଡୋଙ୍କୁ ଡକାଇଲେ । ତାଙ୍କ ସହ ଆଲୋଚନା ଭିତରେ କୋଭୁର ଅନ୍ୟାନ୍ୟ ପ୍ରସଂଗ ସହ ଜାଣିବାକୁ ପାଇଲେ ଯେ ସାଲଗାଡୋ ହେଉଛନ୍ତି ତାଙ୍କ ବାପା ମା'ଙ୍କର ଏକମାତ୍ର ସନ୍ତାନ । ତାଙ୍କୁ ଦୁଇବର୍ଷ ହୋଇଥିବାବେଳେ ତାଙ୍କ ବାପା ମୃତ୍ୟୁବରଣ କଲେ । ବାପାଙ୍କର ମୃତ୍ୟୁପରେ ସେ ତାଙ୍କ ମା'ଙ୍କର ତତ୍ତ୍ୱାବଧାନ ଭିତରେ ବଢ଼ିଥିଲେ । ତାଙ୍କ ମା ତାଙ୍କୁ ପିଲାବେଳେ କୌଣସି ଚାକର ବା ଅନ୍ୟ କୌଣସି ପିଲାଙ୍କ ସହିତ ମିଶିବାକୁ ଦେଉନଥିଲେ । ଷଷ୍ଠ ଶ୍ରେଣୀ ପଢ଼ିବା ପର୍ଯ୍ୟନ୍ତ ତାଙ୍କ ମା ତାଙ୍କୁ ନେଇ ବିଦ୍ୟାଳୟକୁ ଯାଉଥିଲେ ଓ ସେଠାରେ ଉପସ୍ଥିତ ରହି ଛୁଟି ହେଲେ ତାଙ୍କୁ ନେଇ ଘରକୁ ଫେରୁଥିଲେ । ଏପରିକି ସେ ଅତି ବଡ ହେବା ପର୍ଯ୍ୟନ୍ତ ମା' ତାଙ୍କୁ ଖୁଆଇ ଦେଉଥିଲେ । ସେ କଲେଜରେ ପଢ଼ିବା ବେଳେ ମଧ୍ୟ ନିଜ ମା'ଙ୍କ ସହିତ ଏକା ଖଟରେ ଶୋଉଥିଲେ । ବିଶ୍ୱବିଦ୍ୟାଳୟରେ ପଢ଼ିବାବେଳେ ମା'ଙ୍କ କଥା ମନେ ପକାଇ ସେ ବିମର୍ଷ ହେଉଥିଲେ ଓ ଦିନେ ଦିନେ ରାତିରେ ଶୋଇପାରୁ ନଥିଲେ । ସେ ଛୁଟିରେ ଘରକୁ ଆସିଲାବେଳେ ଏକ ବିଛଣାରେ ମା'ଙ୍କ ସହିତ ଶୋଉଥିଲେ । ମା'ଙ୍କ ପାଖରୁ ଅଲଗା ହୋଇ ରହିବାକୁ ସେ ଚାହୁଁନଥିଲେ । ଶିକ୍ଷା ସମାପ୍ତି ପରେ ମା'ଙ୍କ ଠାରୁ ଅଲଗା ହୋଇ କୌଣସି ସ୍ଥାନକୁ ଯାଇ ଚାକିରୀ କରିବା ତାଙ୍କୁ ଅସମ୍ଭବ ମନେ ହେଲା । ଫଳରେ ସେ ନିଜ ଗ୍ରାମର ବିଦ୍ୟାଳୟରେ ଶିକ୍ଷକ ଭାବରେ ଯୋଗଦେଲେ । ପ୍ରତି ମାସରେ ନିଜର ପୂରା ଦରମାଟି ସେ ମା'ଙ୍କ ହାତରେ ଦେଇ ଦେଉଥିଲେ । ୧୯୫୩ ମସିହାରେ ତାଙ୍କ ମା' ହୃଦରୋଗରେ ଆକ୍ରାନ୍ତ ହୋଇ ମରିଗଲେ । ମା'ଙ୍କ ମୃତ୍ୟୁ ଯୋଗୁଁ ସେ ଅତ୍ୟନ୍ତ ଭାଙ୍ଗିପଡିଲେ । ଏପରିକି ଆତ୍ମହତ୍ୟା କରିବାକୁ ଚିନ୍ତା କରିଥିଲେ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ତାଙ୍କର ପରିସ୍ଥିତିକୁ ଅନୁଭବ କରି ତାଙ୍କୁ ଅନ୍ୟତ୍ର ବଦଳି ହୋଇ ଯିବାରେ ସାହାଯ୍ୟ କଲେ ।

ଜେଗୋମ୍ପା ବିଦ୍ୟାଳୟକୁ ବଦଳି ହୋଇ ଆସିବା ପରେ ନୂଆରେ ଖୋଲିଥିବା ଶ୍ରେଣୀକୁ ଅଧ୍ୟକ୍ଷ ତାଙ୍କୁ ନେଇ ପରିଚିତ କରାଇଦେଲେ । ଏଠାରେ ତାଙ୍କର ମାନସିକ ସ୍ଥିତିରେ ପରିବର୍ତ୍ତନ ହୋଇଗଲା ଓ ସେ ନିଜର ଦୁଃଖ ଭୁଲି କାର୍ଯ୍ୟରେ ମନ ଦେଲେ । ଯଦିବା ସେ ସଂପୂର୍ଣ୍ଣ ଅନ୍ତର୍ମୁଖୀ ଥିଲେ ଏହି ବିଦ୍ୟାଳୟରେ ଯୋଗଦେବା ପରଠୁ ସେ ମେଳାପୀ ହୋଇ ଉଠିଲେ ।

ସାଲଗାଡୋ ବିଦାୟ ନେବାର ଦୁଇଦିନ ପରେ ପେରେରା ଝିଅ ପ୍ରେମା ସହିତ କୋଭୁରଙ୍କୁ ସାକ୍ଷାତ କରିବାକୁ ଆସିଲେ । ପ୍ରେମାଙ୍କ ପାଖରୁ ଜଣା ପଡିଲା ଯେ ସେ ନିଜର ସ୍ୱାମୀଙ୍କୁ ବହୁତ ଭଲ ପା'ନ୍ତି । ତାଙ୍କର ସ୍ୱାମୀ ମଧ୍ୟ ତାଙ୍କ ପ୍ରତି ଅତ୍ୟନ୍ତ ସ୍ନେହୀ, ବିଶ୍ୱାସୀ ଓ ଶ୍ରଦ୍ଧାଳୁ । ସେ ତାଙ୍କୁ (ପ୍ରେମାଙ୍କୁ) ନଜଣାଇ ବା ତାଙ୍କ ଇଚ୍ଛା ବିରୁଦ୍ଧରେ କିଛି କରନ୍ତି ନାହିଁ । ସେ ନିଜର ପୂରା ଦରମା ପ୍ରେମାଙ୍କୁ ଦିଅନ୍ତି ଓ ନିଜର ଯାହା ଦରକାର ତାଙ୍କ ଠାରୁ ମାଗିକରି ନେଇଥାନ୍ତି । ପ୍ରେମା ଯଦିବା ମା' ହେବାକୁ ଚାହାନ୍ତି ଓ ତାଙ୍କ ସ୍ୱାମୀ ଏ କ୍ଷେତ୍ରରେ ଉଦାସୀନ ତେବେବି ସେ ତାଙ୍କ ସ୍ୱାମୀଙ୍କୁ ଛାଡପତ୍ର ଦେଇ ଅନ୍ୟତ୍ର ବିବାହ କରିବାକୁ ଆଗ୍ରହୀ ନୁହନ୍ତି । ବରଂ ସେ ସ୍ୱପ୍ନରେ ନିଜର ସ୍ୱାମୀଙ୍କ ସହିତ ଯୌନକ୍ରିୟା କରୁଥିବାର ଅନୁଭୂତି ପାଆନ୍ତି ।

ଉଭୟଙ୍କ ପାଖରୁ ଏହା ଶୁଣିବା ପରେ କୋଭୁର ପ୍ରେମାଙ୍କୁ ପରାମର୍ଶ ଦେଇ କହିଲେ ଯେ ଯୌନ ସମ୍ବନ୍ଧ ଅନ୍ୟ ଶାରୀରିକ କ୍ରିୟା ପରି ଜୀବର ଏକ ଜୈବିକ କ୍ରିୟା । ଏହାଦ୍ୱାରା ବଂଶ ରକ୍ଷା ସମ୍ଭବ ହେଉଥିବାରୁ ଏହାର ସାମାଜିକ ଉପଯୋଗିତା ମଧ୍ୟ ରହିଛି । ସୁସଂହତ ସାମାଜିକ ଜୀବନ ପାଇଁ ଏ ନେଇ ସମାଜରେ ନାନା ଆଦର୍ଶ, ନୀତି ଓ ନିୟମ ରହିଛି । ଯୌନ ଉଚ୍ଛୃଙ୍ଖଳତା ଯଦିବା ସାମାଜିକ ଜୀବନରେ ଏକ ଗର୍ହିତ କାର୍ଯ୍ୟ, ତେବେ ବିବାହ ପରେ କୌଣସି ବ୍ୟକ୍ତି ନିଜର ପତି ବା ପତ୍ନୀ ସହିତ ଶାରୀରିକ ସମ୍ବନ୍ଧ ରଖିବା ଅନୈତିକ ନୁହେଁ, ବରଂ ଏକ ଆବଶ୍ୟକତା । କୋଭୁର ପୁନଶ୍ଚ ପ୍ରେମାଙ୍କୁ କହିଲେ ଯେ ତାଙ୍କ ସ୍ୱାମୀଙ୍କର କେତେକ ବିକୃତି ରହିଛି ଓ ତାହା ତାଙ୍କ ଅଜ୍ଞ ମା'ଙ୍କର ଆଚରଣଦ୍ୱାରା ପିଲାଟି ବେଳରୁ ସେ ପାଇଛନ୍ତି । ଯଦି ତାଙ୍କ ସ୍ୱାମୀ ଏକ ସ୍ୱାଭାବିକ ସନ୍ତାନ ଭାବରେ ଗଢି ଉଠିଥାନ୍ତେ ତେବେ ସେ ତାଙ୍କୁ ପତ୍ନୀ ଭାବରେ ଦେଖିଥାନ୍ତେ । ଯଦି ତାଙ୍କର ମାନସିକ ବିକୃତିକୁ ଦୂରକରା ନଯାଏ ତେବେ ସେ ତାଙ୍କୁ ନିଜର ମା' ସ୍ଥାନରେ ରଖି ଭଲ ପାଇବେ, ପତ୍ନୀ ଭାବରେ ନୁହେଁ । ପ୍ରେମା ଧୈର୍ଯ୍ୟର ସହ ସାତ ବର୍ଷ ଅପେକ୍ଷା କଲେ ମଧ୍ୟ ନିଜର ସ୍ୱାମୀଙ୍କ ପାଖରୁ କୌଣସି ଯୌନ ଆବେଗ ପାଇବା ଦେଖି ନାହାନ୍ତି । ଏହି ସ୍ଥିତିରେ ତାଙ୍କ ଭିତରେ ଯୌନ ଆକର୍ଷଣ ସେ ଚାହିଁଲେ ସୃଷ୍ଟି କରିପାରିବେ । ଜଣେ ସ୍ତ୍ରୀ ନିଜର ଶରୀରକୁ ଶୟନ କକ୍ଷରେ ନିଜ ସ୍ୱାମୀ ପାଖରେ ଅନାବୃତ କରିବା, ସ୍ୱାମୀଙ୍କ ସହିତ ପ୍ରେମାଳାପ ବା ଯୌନ ଜୀବନ ବିଷୟରେ ଆଲୋଚନା କରିବା, ନିଜର ସ୍ୱାମୀଙ୍କୁ ଆକୃଷ୍ଟ ବା ଆଲିଙ୍ଗନ

କରିବା ଅଶୋଭନୀୟ ନୁହେଁ । ସୁତରାଂ ସ୍ୱାମୀଙ୍କର ଆଗ୍ରହ ଅଭାବରେ ସେ ଏପର୍ଯ୍ୟନ୍ତ ନିଜକୁ ଏସବୁରୁ ଦୂରେଇ ରଖିଥିଲେ ମଧ୍ୟ ଏସବୁ କରିବାଦ୍ୱାରା ନିଜ ସ୍ୱାମୀଙ୍କର ଅବଚେତନ ମନରେ ତାଙ୍କ ପ୍ରତି ରହିଥିବା ମାତୃ ଭାବନାକୁ ଦୂର କରିପାରିବେ । ଏସବୁ କରିବାଦ୍ୱାରା ତାଙ୍କ ସ୍ୱାମୀଙ୍କର ମାନସିକ ବିକୃତି ଦୂର ହେବା ସହିତ ଉଭୟଙ୍କ ମଧ୍ୟରେ ଶାରୀରିକ ସମ୍ବନ୍ଧ ସୃଷ୍ଟି ହୋଇପାରିବ । ପ୍ରେମା କୋଭୁରଙ୍କର ଏହି ପରାମର୍ଶ ନେଇ ବିଦାୟ ନେଲେ ।

ଘଟଣାଟିର ବିଶ୍ଳେଷଣ କରି କୋଭୁର କହିଛନ୍ତି ଯେ ସାଲଗାଡୋ ସ୍କୁଲରେ ଯୋଗଦେବା ପରେ ପ୍ରେମାଙ୍କୁ ଦେଖିବା ଭିତରେ ମା'ର ଉପସ୍ଥିତିକୁ ଅନୁଭବ କରି ଅବଚେତନ ମନରେ ସନ୍ତୋଷ ଲାଭ କରିଥିଲେ । ଫଳରେ ସେ ନୂଆ ଜାଗା ଓ ଲୋକମାନଙ୍କୁ ଭଲ ପାଇଲେ । ତାଙ୍କର ଅନ୍ତର୍ମୁଖୀ ବ୍ୟକ୍ତିତ୍ୱରେ ମଧ୍ୟ ପରିବର୍ତ୍ତନ ହେଲା । ସେ ପ୍ରେମାକୁ ମାଗଣାରେ ଟିଉସନ କରିବା ଓ ପରେ ବିବାହ କରିବାକୁ ଆଗ୍ରହୀ ହେବା ପଶ୍ଚାତରେ କିଛି କଳ୍ପନା ବିଳାସ ବା ରୋମାଣ୍ଟିକ ଭାବନାର ଆବେଗ ନଥିଲା । ବରଂ ନିଜର ମା' ସହିତ ଏକାଠି ରହିବା ଓ ଶୋଇବା ନେଇ ଅବଚେତନ ମନରେ ଯେଉଁ ଇଚ୍ଛା ରହିଥିଲା ତାହା ପ୍ରେମାକୁ ପାଇବାଦ୍ୱାରା ପୂରଣ ହେବା ସମ୍ଭବ ଥିଲା । ଏପରିକି ସେ ନିଜ ପତ୍ନୀଙ୍କର ଶରୀରକୁ କେବେବି ସ୍ପର୍ଶ କରି ନଥିଲେ । ସ୍ତ୍ରୀର ଆକର୍ଷଣ ପରିବର୍ତ୍ତେ ଏକ ଅନୁରକ୍ତ ସନ୍ତାନର ନିଜର ମା' ପ୍ରତି ବନ୍ଧନ ତାଙ୍କ ମନରେ ପ୍ରାଧାନ୍ୟ ନେଇଥିଲା ।

ଜାନୁଆରି ୧୯୬୪ରେ ସାଲଗାଡୋ ଓ ପ୍ରେମା ସେମାନଙ୍କର କୁନି ପୁଅ ସହିତ କୋଭୁରଙ୍କୁ କୃତଜ୍ଞତା ଜଣାଇବାକୁ ଆସିଲେ । ପୁଅଟିକୁ ଆଦରରେ କୋଭୁର କୋଳ କରିବାବେଳେ ପ୍ରେମାଙ୍କର ଆଖିରୁ କୃତଜ୍ଞତାର ଅଶ୍ରୁ ବୋହି ପଡିଥିଲା ।

(ଘ) ଶ୍ରୀଲଙ୍କାର ଦକ୍ଷିଣ ଭାଗରେ ଥିବା ଗାଲ୍ଲା ସହରରେ ଦାଦାଲ୍ଲା କବରଖାନା ବେଶ୍ ଜଣାଶୁଣା । ସେହି କବରଖାନାକୁ ନେଇ ଅନେକ ଭୂତ କାହାଣୀ ଲୋକମୁଖରେ ପ୍ରଚଳିତ । ସନ୍ଧ୍ୟା ପରେ ସେହି ବାଟ ଦେଇ ଏକୁଟିଆ ଯିବା ପାଇଁ କେହି ସାହସ କରନ୍ତି ନାହିଁ । ଏପରିକି ଅଝଟ ପିଲାମାନଙ୍କୁ ଦାଦାଲ୍ଲା ଶ୍ମଶାନର ଭୂତ ଭୟ ଦେଖାଇ ମାଆମାନେ ଆକଟ କରିଥାନ୍ତି । କେତେକ ଲୋକ ସଚକ୍ଷୁରେ ଭୂତ

ଦେଖିଥିବା ଓ ଭୂତମାନଙ୍କ ଦ୍ୱାରା ପ୍ରତାରିତ ହୋଇଥିବାର କାହାଣୀ ଲୋକ ମୁହଁରେ ପ୍ରଚଳିତ । ଏପରିକି କବର ଚାରିପଟେ ଭୂତମାନେ ନାଚ କରିବା ଓ ସେମାନଙ୍କ ପାଟିରୁ ନିଆଁ ବାହାରୁଥିବା କେତେକ ଲୋକ ଦେଖିଥିବାର ଜନଶ୍ରୁତି ଅଛି ।

ଗାଲ୍ଲା ସହରରେ ଥିବା ଏକ ବିଦେଶୀ ଫାର୍ମରେ ସୋମରତ୍ନ ପିଅନ ଚାକିରୀ କରନ୍ତି । ସେହି ଫାର୍ମରେ ଜୟସିଂହେ ମୁଖ୍ୟ କିରାଣୀ ଭାବରେ କାର୍ଯ୍ୟ କରନ୍ତି ଓ ତାଙ୍କ ଯୋଗୁଁ ସୋମରତ୍ନେ ପିଅନ ଚାକିରୀ ପାଇଥାନ୍ତି । ସୋମରତ୍ନେ ଦାଦାଲ୍ଲା ଶ୍ମଶାନଠାରୁ ଅଳ୍ପ ଦୂରରେ ନିଜ ପତ୍ନୀ ମେନକାଙ୍କ ସହିତ ରହିଥିଲେ ଓ ସେହି ଗଳିରେ କିଛି ଦୂର ଆଗକୁ ଜୟସିଂହେ ରହୁଥିଲେ । ଦିନେ ସନ୍ଧ୍ୟା ସାତଟାରେ ସୋମରତ୍ନେଙ୍କ ସ୍ତ୍ରୀ ଘରେ କିରୋସିନି ନଥିବା ଓ ରୋଷେଇଘରେ ଥିବା ଲଣ୍ଠନଟିରୁ ତେଲ ସରି ଆସୁଥିବା କଥା ସ୍ୱାମୀଙ୍କୁ ଜଣାଇଲେ । ଯେହେତୁ ରାତ୍ରିଭୋଜନ ସରିବାକୁ ଅନେକ ସମୟ ବାକି ଥିଲା ସୋମରତ୍ନ ବାଧ୍ୟ ହୋଇ କିରୋସିନ ଆଣିବାକୁ ବଜାରକୁ ଗଲେ । ତାଙ୍କୁ ଶ୍ମଶାନ ବାଟ ଦେଇ ଯିବାକୁ ପଡୁଥିବାରୁ ସେ ନଡିଆକତା ଦଉଡିରେ ନିଆଁ ଲଗାଇ ତାହା ଧରି କିରୋସିନ ଆଣିବାକୁ ଗଲେ । ଅନ୍ଧାରୁଆ ଓ ନିଛାଟିଆ ଶ୍ମଶାନ ବାଟ ଦେଇ ଏକା ଯିବା ସମୟରେ ନିଜର ଭୟ ତୁଟାଇବା ପାଇଁ ସେ ଉଚ୍ଚ ସ୍ୱରରେ ଗୀତ ଗାଇକରି ଯାଉଥିଲେ । କିରୋସିନ ବିକ୍ରେତା ଅବଦୁଲ କାଦର ନିଜର ପରିଚିତ ଗ୍ରାହକମାନଙ୍କୁ ଦେଖିଲେ ସେମାନଙ୍କ ସହିତ ନାନା ଗପ ସପ କରିଥାନ୍ତି । ଯଦିବା ସୋମରତ୍ନ ଶୀଘ୍ର ଘରକୁ ଫେରିବାକୁ ଚାହିଁଥିଲେ ତଥାପି ଅବଦୁଲ ଗୋଟିଏ ଘଟଣା ତାଙ୍କ ପାଖରେ ବଖାଣି ବସିଲେ । ଅଳ୍ପ ସମୟ ପୂର୍ବରୁ ଜଣେ ପିଲା ତାଙ୍କ ଦୋକାନରୁ କିରୋସିନ କିଣିବାକୁ ଆସିବାବେଳେ ଏକ ଭୂତ ପିଲାଟିକୁ ଗୋଟିଏ ଗାତ ଭିତରକୁ ଠେଲି ଦେଲା ଓ ପିଲାଟିର ପାଟି ଶୁଣି ସେହି ବାଟ ଦେଇ ଯାଉଥିବା ଜଣେ ଲୋକ ତାକୁ ଉଦ୍ଧାର କଲେ । ସୋମରତ୍ନ ଏହା ଶୁଣିବା ପରେ ସେ ମଧ୍ୟ ବହୁବାର ସେ ରାସ୍ତାରେ ଅଶରୀର ଛାୟାମାନଙ୍କୁ ଦେଖିବାର ଅନୁଭୂତି କହିଲେ । ଏହା ପରେ ସେ ନଡିଆକତା ଦଉଡିକୁ ପୁଣି ଜଳାଇ ଓ ଗୋଟିଏ ଲୁହା କଣ୍ଟା ଧରି ଘରକୁ ଫେରିଲେ । ଶ୍ମଶାନ ବାଟ ପୂର୍ବରୁ ସେ ଲୁହାକଣ୍ଟାଟି ନିଜର ପାଟିରେ କାମୁଡି ଧରିଲେ କାରଣ ତାଙ୍କର ବିଶ୍ୱାସ ଥିଲା ଯେ ଲୁହା ଜିନିଷ ପାଖକୁ ଭୂତମାନେ ଆସନ୍ତି ନାହିଁ ।

ସୋମରତ୍ନ ତେଲ ନେଇ ନିଛାଟିଆ ଶ୍ମଶାନ ବାଟ ଦେଇ ଆସିବା ବେଳେ ତାଙ୍କ ପଛରେ କେହି ଆସୁଥିବାର ଶବ୍ଦ ଶୁଣିଲେ । ସେ ଚାଲିବା ଅବସ୍ଥାରେ ଭଲ ଭାବରେ କାନେଇଲେ ଓ କେହି ଆସୁଥିବାର ଶବ୍ଦ ସ୍ପଷ୍ଟ କରି ଶୁଣିପାରିଲେ । ଯେତେବେଳେ ସେ ପଛକୁ ଅନାନ୍ତି ପଛରେ ପ୍ରାୟ ପନ୍ଦର ଗଜ ଦୂରରେ ଶାଢ଼ି ପିନ୍ଧି ସ୍ତ୍ରୀ ଲୋକ ଆସୁଥିବାର ସେ ଦେଖିଲେ । ସେ ଅତ୍ୟନ୍ତ ଭୟଭୀତ ହୋଇ ଛିଡା ହେବାରୁ ସ୍ତ୍ରୀ ଲୋକଟି ମଧ୍ୟ ଛିଡା ହୋଇଗଲା । ଏହି ସ୍ଥାନରେ ଛିଡା ହୋଇ ରହିବା ଉଚିତ ହେବ ନାହିଁ ଭାବି ସେ ଦ୍ରୁତ ଗତିରେ ଚାଲିବାକୁ ଲାଗିଲେ । ତାଙ୍କର ଧାରଣା ହେଲା ଯେ ଗୋଟିଏ ଭୂତ ତାଙ୍କ ପଛରେ ରହିଛି । ଜୋରରେ ଚାଲିବାବେଳେ ସେ ଟିକିଏ ପଛକୁ ଅନାଇ ପଛରେ କ'ଣ ହେଉଛି ଜାଣିବାକୁ ଚାହିଁବାରୁ ଭୂତ ମଧ୍ୟ ଠିକ୍ ତାଙ୍କଠାରୁ ସେତିକି ଦୂରରେ କ୍ଷିପ୍ର ଗତିରେ ଚାଲୁଥିବା ସେ ଅନୁଭବ କଲେ । ତାଙ୍କର ଗୋଡ ହାତ ଥରିବାକୁ ଲାଗିଲା । କେଉଁ ମୁହୂର୍ତ୍ତରେ ଭୂତ ତାଙ୍କୁ ଆକ୍ରମଣ କରିପାରେ ଭାବି ସେ ଅବଶିଷ୍ଟ ଶହେ ଗଜକୁ ଦଉଡି ଆସିବାକୁ ଚେଷ୍ଟା କଲେ । ସେ ଦଉଡିବା ବେଳେ ତାଙ୍କ ପଛରେ ଭୂତ ଦଉଡୁଥିବାର ଶବ୍ଦ ସେ ଶୁଣିପାରୁଥିଲେ । ଯେତେବେଳେ ସେ ନିଜ ଘର ପାଖ ବଗିଚାରେ ପହଞ୍ଚି ପିଣ୍ଡା ଉପରକୁ ଯାଇ ଅନାନ୍ତି ଭୂତ ଅନ୍ତର୍ଦ୍ଧାନ ହୋଇ ଯାଇଥିବା ସେ ଅନୁଭବ କଲେ ।

କଟା ନିଆଁକୁ ବଗିଚାରେ ଫିଙ୍ଗି ଦେଇ ଓ ତେଲ ବୋତଲକୁ ବାରଣ୍ଡାରେ ରଖି ଦେଇ ସେ ଯାଇ ବିଛଣାରେ ପଡିଗଲେ । ତାଙ୍କ ସ୍ତ୍ରୀ ରୋଷେଇ ଘରୁ ଦୌଡି ଆସି କ'ଣ ହେଲା ବୋଲି ପଚାରିଲେ । ତାଙ୍କର ଛାତିର ସ୍ପନ୍ଦନ ଭୟଙ୍କର ଭାବରେ ବଢି ଯାଇଥାଏ । ସେ ବାଷ୍ପରୁଦ୍ଧ ହୋଇ କିଛି କଥା କହିପାରିଲେ ନାହିଁ । ପ୍ରାୟ ପନ୍ଦର ମିନିଟ୍ ସେହିପରି ରହିବା ପରେ ସେ ପ୍ରଳାପ କଲେ । ପାଣି ମାଗିବାରୁ ତାଙ୍କ ସ୍ତ୍ରୀ ପାଣି ଦେଲେ । ସେ ଗ୍ଲାସ ଗ୍ଲାସ ପାଣି ପିଇଲେ । ସ୍ତ୍ରୀ ଖାଇବାକୁ ଦେଲେ, ଅଥଚ ସେ ଦାନାଟିଏ ବି ପାଟିକୁ ନେଲେ ନାହିଁ । ସେହି ରାତିରେ ସ୍ୱାମୀ-ସ୍ତ୍ରୀ ନ ଖାଇ ବହୁ ବିଳମ୍ବରେ ଶୋଇଲେ ।

ରାତି ଦୁଇଟାରେ ସୋମରତ୍ନ ଚିତ୍କାର କରି ବିଛଣାରୁ ଉଠି ପଡିଲେ । ମେନେକା ମଧ୍ୟ ତାଙ୍କ ପାଟିରେ ଉଠିଲେ । ସୋମରତ୍ନ ଘରସାରା ଖାଲି ବୁଲିବାକୁ ଲାଗିଲେ ଓ ପାଗଳଙ୍କ ପରି ପ୍ରଳାପ କଲେ । ସେ କହିଲେ ଯେ ସେ ହେଉଛନ୍ତି

ଶିଳାବତୀ । ପଡିଶା ଘରେ ରହୁଥିବା ଶିଳାବତୀ ନାମକ ଏକ ସ୍ତ୍ରୀ ଲୋକ କିଛି ବର୍ଷ ତଳେ ମରିଯାଇଥିଲେ । ସେ ଜଣେ ସ୍ତ୍ରୀ ଲୋକପରି କଥା କହିବାକୁ ଲାଗିଲେ ଓ ନିଜର ଦୁଇଝିଅଙ୍କୁ ଦେଖିବାକୁ ଚାହିଁଲେ, ଯଦିବା ସୋମରତ୍ନ ଓ ମେନେକାଙ୍କର କୌଣସି ପିଲା ହୋଇନଥିଲେ ।

ପରଦିନ ସେ କାମକୁ ଗଲେ ନାହିଁ । ପାଗଳ ପରି କେବଳ ପ୍ରଳାପ କରିବାକୁ ଲାଗିଲେ । ଖବର ପାଇ ସେ ସହରରେ ରହୁଥିବା ମେନେକାଙ୍କର ବାପା, ମା ଆସି ପହଞ୍ଚିଲେ । ସାହିର ଅନ୍ୟ ଲୋକମାନେ ଆସି ସମସ୍ତ ଘଟଣା ଶୁଣି ଗୁଣିଆଁକୁ ଡାକିବାକୁ ସ୍ଥିର କଲେ ।

ଗୁଣିଆଁ ଆସି କିପରି ପୂଜା କରାଯିବ ତା'ର ଏକ ଦୀର୍ଘ ତାଲିକା ଦେଲେ । ସବୁ ଜିନିଷ ଆୟୋଜନ ହେଲା । ଗୁଣିଆଁ ବାଦ୍ୟ ବଜାଇବା ଓ ତାଙ୍କୁ ସାହାଯ୍ୟ କରିବାକୁ ସାଥୀରେ ଆଉ ଚାରି ଜଣ ଲୋକଙ୍କୁ ଧରି ପହଞ୍ଚିଲେ । ପୂଜା ସମୟରେ ସୋମରତ୍ନ ଗୁଣିଆଁ ସହିତ ନାଚ କଲେ ଓ ପରେ ମୂର୍ଚ୍ଛା ହୋଇଗଲେ । ମଝିରେ ଗୁଣିଆଁ ନିଜର ମନ୍ତ୍ର ପୂତ ବାଡିରେ ତାଙ୍କର କପାଳକୁ ସ୍ପର୍ଶ କଲେ ଓ ତାଙ୍କୁ ବିଭିନ୍ନ ପ୍ରଶ୍ନ ପଚାରିଲେ । ସୋମରତ୍ନ କହିଲେ ଯେ ସେ ହେଉଛନ୍ତି ଶିଳାବତୀ । ତାପରେ ତାଙ୍କୁ ଚାଲିଯିବାକୁ ଗୁଣିଆଁ ନିର୍ଦ୍ଦେଶ ଦେଲେ ଓ ତାଙ୍କୁ ନେଇ ଗୋଟିଏ ଗଛରେ ଛାଡିଦେଲେ । ଗଛରୁ ଯେପରି ସେ ନ ଆସେ ସେଥିପାଇଁ ତାଙ୍କୁ ମନ୍ତ୍ରଦ୍ୱାରା ସେଠାରେ ବନ୍ଦୀ କରିଦେଲେ ।

ସୋମରତ୍ନ ଯଦିବା ଶିଳାବତୀ ପରି ଆଉ କଥା କହିଲେ ନାହିଁ ତଥାପି ସେ ସର୍ବଦା ଚୁପଚାପ ଓ ଅସ୍ଥିର ଜଣା ପଡୁଥିଲେ । ରାତିରେ ସେ ସ୍ୱପ୍ନ ଦେଖି ବାରମ୍ବାର ଉଠି ପଡୁଥିଲେ ଓ ବହୁ ସମୟରେ ତାଙ୍କୁ ନିଦ ହେଉନଥିଲା ।

ସୋମରତ୍ନଙ୍କର ଉପରିସ୍ଥ କର୍ମଚାରୀ ଜୟସିଂହେ ସେହି ସାହିର ଆଗକୁ ରହୁଥିଲେ ଓ ତାଙ୍କର ଦୁଇପୁଅ ଜାଫନା କଲେଜରେ ଛାତ୍ର ଥିଲେ । ବଡପୁଅ ସରିଲ କୋଭୁରଙ୍କ ଶ୍ରେଣୀରେ ଥିଲେ ଓ ଦିନେ କ୍ଲାସ ପରେ ସୋମରତ୍ନଙ୍କ ଘଟଣାଟି ସେ ତାଙ୍କୁ କହିଲେ । ଘଟଣାଟି କୋଭୁର ଜାଣିବାପରେ ଭୌତିକ ବା ଆଧିଦୈବିକ ଘଟଣାର ଗବେଷଣା ନେଇ ତାଙ୍କର ଆଗ୍ରହରୁ ସେ ଏ ବିଷୟଟି ଉପରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିବାକୁ ଚାହିଁଲେ । ସୁତରାଂ ସିରିଲଙ୍କ ସହିତ ଆଗାମୀ ରବିବାରରେ ତାଙ୍କ ଘରକୁ ଯାଇ ସୋମରତ୍ନଙ୍କୁ ଦେଖିବାକୁ ସ୍ଥିର କଲେ ।

କୋଭୁର ଜୟସିଂହେଙ୍କ ଘରେ ପହଞ୍ଚି ସିରିଲ ସହିତ ସୋମରତ୍ନଙ୍କ ଘରକୁ ଗଲେ । ସୋମରତ୍ନ ବିମର୍ଷ ହୋଇ ବାହାରେ ଚୁପଚାପ ବସିଥାନ୍ତି । ତାଙ୍କୁ ଶ୍ମଶାନ ପାଖର ଘଟଣାଟି ବିଷୟରେ ପଚାରିବାରୁ ସେ ପୂରା ଘଟଣାଟିକୁ କହିଲେ । ସିରିଲ ଉଭୟଙ୍କ ମଧ୍ୟରେ ଅନୁବାଦକ କାର୍ଯ୍ୟ କରୁଥିଲେ ।

ଘଟଣାଟି ଜାଣିସାରିବା ପରେ କୋଭୁର ତାଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ଅବଦୁଲ କାଦରଙ୍କ ପାଖରୁ ଭୂତଦ୍ୱାରା ପିଲାଟି ଗାତରେ ପଡିଥିବା ଶୁଣି ସେ ହୁଏତ ମନରେ ଭୂତ ଭୟ ନେଇ ଫେରୁଥିବାରୁ ତାଙ୍କର କିଛି ଭ୍ରମ ପ୍ରତ୍ୟକ୍ଷ ହୋଇଥାଇପାରେ । କିନ୍ତୁ ସୋମରତ୍ନ ନିଜେ ପ୍ରତ୍ୟକ୍ଷ କରିଥିବା ଘଟଣାଟିରେ କୌଣସି ଭ୍ରମ ନଥିବାରେ ଦୃଢ ଥିଲେ । ଏହି ସମୟରେ ସିରିଲଙ୍କ ସାନ ଭାଇ ଭୋଜନ ପାଇଁ ଡାକି ଆସିବାରୁ ନିଜର ଅନୁସନ୍ଧାନକୁ ସ୍ଥଗିତ ରଖି ସେ ରଣସିଂହେଙ୍କ ଘରକୁ ଫେରିଲେ ।

କୋଭୁର ଓ ସିରିଲ ବାପା ଏକତ୍ର ଭୋଜନ କଲାବେଳେ ଜୟସିଂହେ କୋଭୁରଙ୍କ ଅନୁସନ୍ଧାନ ବିଷୟରେ ପ୍ରଶ୍ନ କଲେ । କୋଭୁର ସୋମରତ୍ନେଙ୍କର ଶ୍ମଶାନ ପାଖର ଅନୁଭୂତି ବର୍ଣ୍ଣନା କରୁଥିବାବେଳେ ସିରିଲର ମା' ହସ୍ତେକ୍ଷପ କରି କହିଲେ, "ଘଟଣାଟି କ'ଣ ମୁଁ ଜାଣେ । କୌଣସି ଭୂତ ନୁହଁ, ବରଂ ଲିଲି ହିଁ ସେଦିନ ସୋମରତ୍ନ ପଛରେ ଆସୁଥିଲା ।" ଲିଲି କିଏ କୋଭୁର ଜାଣିବାକୁ ଚାହିଁବାରୁ ସେ ପୁନଶ୍ଚ କହିଲେ, "ସେ ଆମ ଘରର ଚାକରାଣୀ । ଗତ ସୋମବାର ଦିନ ସେ ତାର ଗାଁରୁ ରାତିରେ ଫେରୁଥିଲା । ଧଇଁ ସଇଁ ହୋଇ ଆସୁଥିବାର ଦେଖି ତାକୁ କ'ଣ ହେଲା ବୋଲି ପଚାରିବାରୁ ସେ ସୋମରତ୍ନଙ୍କ ପଛରେ ଦୌଡି ଦୌଡି ଆସୁଥିଲା ବୋଲି କହିଲା ।" ଏହାପରେ ଲିଲିକୁ ଡାକି ସେଦିନ ରାତିର ଘଟଣା ବିଷୟରେ ପଚାରି ବୁଝିଲେ । ସେ ଜାଣିବାକୁ ପାଇଲେ ଯେ ଲିଲି ଜଣେ ମଧ୍ୟମ ବୟସ୍କା ସ୍ତ୍ରୀ ଲୋକ । ସେ ପ୍ରାୟ ସାତବର୍ଷ ହେବ ଜୟସିଂହେଙ୍କ ଘରେ ରହିଛି । ଶ୍ରୀଲଙ୍କା ନୂଆ ବର୍ଷ ଉପଲକ୍ଷେ ସେ ତାର ନିଜ ଗ୍ରାମ ମାତରକୁ ଯାଇଥିଲା ଓ ଅପରାହ୍ନ ବସରେ ଫେରିଲା । ବସଟି ସାଧାରଣତଃ ଦାଦଲ୍ଲାରେ ସନ୍ଧ୍ୟା ପୂର୍ବରୁ ପହଞ୍ଚିଯାଏ, କିନ୍ତୁ ସେ ଫେରିବା ଦିନ ବସରେ ଯାନ୍ତ୍ରିକ ତ୍ରୁଟି ଯୋଗୁଁ ଦାଦଲ୍ଲାରେ ସନ୍ଧ୍ୟା ସାତଟା ପରେ ପହଞ୍ଚିଲା । ଅବଦୁଲ କାଦର ଦୋକାନ ପାଖରେ ସେ ଓହ୍ଲାଇ ରାତିରେ ଏକା କିପରି ଯିବ ଚିନ୍ତିତ ହୋଇଥିଲା । ଏହି ସମୟରେ

ସେ ସେହି ଦୋକାନରେ ସୋମରତ୍ନଙ୍କୁ ଦେଖି ଆଶ୍ୱସ୍ତ ହେଲା । ସେ ରାସ୍ତାର ଆଗରେ ଥିବା ଗଛ ପାଖରେ ଅପେକ୍ଷା କରି ସୋମରତ୍ନ ଫେରିବାବେଳେ ତା ପଛେ ପଛେ ଆସିବ ବୋଲି ଭାବିଲା । ସୋମରତ୍ନ କତା ନିଆଁ ଧରି ଗଛ ପାଖରେ ପହଞ୍ଚିବାରୁ ସେ ତା ପଛେ ପଛେ ଚାଲିଲା । ଜଣେ ଯୁବକ ସହିତ ଏକୁଟିଆ ରାତ୍ରି ସମୟରେ ଓ ନିରୋଳା ରାସ୍ତାରେ ଯିବା ପାଇଁ ତାକୁ ଭୟ ଲାଗୁଥିବାରୁ ସେ ଦୂରତା ରଖି ସୋମରତ୍ନ ପଛେ ପଛେ ଚାଲୁଥିଲା । ସୋମରତ୍ନ ଜୋରରେ ଚାଲିବାବେଳେ ସେ ବି ଜୋରରେ ଚାଲିଥିଲା ଓ ସେ ଅଟକିବାରୁ ସେ ବି ଅଟକିଥିଲା । ସର୍ବଦା ଏକ ନିର୍ଦ୍ଦିଷ୍ଟ ଦୂରତା ରଖି ସେ ତା ପଛରେ ଯିବାକୁ ଚାହିଁବାରୁ ସେ ଦୌଡିଲାବେଳେ ଲିଲି ମଧ୍ୟ ଦଉଡି ଦଉଡି ଯାଇଥିଲା । ରାତିରେ ଧଇଁ ସଇଁ ହୋଇ ଲିଲି ରୋଷେଇଘରେ ପହଞ୍ଚିବାରୁ ସିରିଲର ମା' ତାକୁ ଗାଳି ବି ଦେଇଥିଲେ । ସେ କିନ୍ତୁ ଏକା ନ ଆସି ବସରୁ ଓହ୍ଲାଇ ସୋମରତ୍ନ ପଛେ ପଛେ ଆସିବା କଥା କହିଥିଲା ।

ଅପରାହ୍ନରେ କୋଭୁର, ଜୟସିଂହେ, ତାଙ୍କର ପତ୍ନୀ, ଲିଲି ଓ ସିରିଲ ସୋମରତ୍ନଙ୍କ ଘରକୁ ଆସିଲେ । ସମସ୍ତ ଘଟଣା ଲିଲି ସୋମରତ୍ନଙ୍କ ଉପସ୍ଥିତିରେ କହିଲା । ପରଦିନଠାରୁ ସୋମରତ୍ନ କାମ କରିବାକୁ ଗଲେ । ପୂଜାରେ ହୋଇଥିବା ଖର୍ଚ୍ଚ ଧାର ଉଧାରକୁ ପରିଶୋଧ କରିବାକୁ ତାଙ୍କୁ କେତେ ମାସ ଧରି ଅଧିକା ସମୟ କାମ କରିବାକୁ ପଡିଥିଲା ।

ସୋମରତ୍ନଙ୍କର କାହାଣୀଟି ଉପରେ ଏହି ଅନୁସନ୍ଧାନ ହୋଇନଥିଲେ ଏହା କିଛି ଦିନ ପରେ ଲୋକଶ୍ରୁତି ଭିତରେ ଥିବା ଅସଂଖ୍ୟ କାହାଣୀ ପରି ନାନା ବ୍ୟଞ୍ଜନା ନେଇ ବେଶ୍ ଏକ ଚମତ୍କାର ଭୂତ- କାହାଣୀ ଭାବେ ଜୀବନ୍ତ ହୋଇ ରହିଥାନ୍ତା ।

(ଙ) ମଝିରେ ମଝିରେ କେରଳରେ ଥିବା ପୈତୃକ ଘରକୁ କୋଭୁର ଆସିଥାନ୍ତି । ଥରେ ସେ ତାଙ୍କର ବନ୍ଧୁ ସି. ଯୋଶେଫଙ୍କୁ ଦେଖା କରିବାକୁ ଆସି ତାଙ୍କର ଅତିଥି ହୋଇଥିଲେ । ଯୋଶେଫ ଜଣେ ଓକିଲ, ସୁବକ୍ତା, 'ଯୁକ୍ତିବାଦୀ' ପତ୍ରିକାର ସମ୍ପାଦକ ଓ କେରଳ ହେତୁବାଦୀ ସମାଜର ସଭାପତି । ଜଣେ ଲେଖକ ଓ ବୁଦ୍ଧିଜୀବୀ ଭାବରେ ସେ କେରଳରେ ବେଶ ଜଣାଶୁଣା । କୋଭୁରଙ୍କ ସହ ସାକ୍ଷାତ ଅବସରରେ ସେ ଗୋଟିଏ ଘଟଣା ତାଙ୍କୁ କହିଲେ । ପୋଥୁସେରି ଉଚ୍ଚ ବିଦ୍ୟାଳୟରେ ନିର୍ମିତ

ହୋଇଥିବା ଏକ ବିଜ୍ଞାନ ଭବନକୁ ୧୪.୪.୬୧ ଦିନ ଉଦଘାଟନ କରିବାକୁ ସେ ଅତିଥି ହୋଇ ଯାଇଥିଲେ । ସେହି ଉତ୍ସବରେ ଡାକ୍ତର କେଶବନ ଭୈଦାର ମୁଖ୍ୟ ବକ୍ତା ଥିଲେ । ଉତ୍ସବ ଶେଷରେ ଯୋଶେଫ ଓ ଭୈଦାର ଗୋଟିଏ କାରରେ ଫେରିବା ବେଳେ ତାଙ୍କ ସହିତ ବିଦ୍ୟାଳୟର ସଂସ୍କୃତ ପଣ୍ଡିତ ମାଧବ ମେନନ ମଧ୍ୟ ଆସିଲେ । ଆସିବାବେଳେ କଥାବାର୍ତ୍ତା ଭିତରେ ପଣ୍ଡିତ ମେନନ ତାଙ୍କ ପରିବାରର ଗୋଟିଏ ଦୁଃଖଦ ଘଟଣା ବର୍ଣ୍ଣନା କଲେ । ତାଙ୍କର ଝିଅ ରାଜଲକ୍ଷ୍ମୀର ବୟସ ବାର ବର୍ଷ । ପାଞ୍ଚ ମାସ ତଳେ ତାଙ୍କ ଶାଶୁଙ୍କର ମୃତ୍ୟୁ ପରଠାରୁ ରାଜଲକ୍ଷ୍ମୀ ଭିତରେ ଏକ ଆତ୍ମା ପ୍ରବେଶ କରୁଛି । ପ୍ରତିଦିନ ସନ୍ଧ୍ୟା ପାଞ୍ଚଟାରେ ରାଜଲକ୍ଷ୍ମୀ ଅତ୍ୟନ୍ତ ଭୟଭୀତ ହୋଇ ଥରିବ ଓ ଜୋରରେ କାନ୍ଦିବ । ପ୍ରାୟ ଦୁଇ ଘଣ୍ଟା ଧରି ସେ କାନ୍ଦେ । ତାର କାନ୍ଦ ଶୁଣି ସାହି ପଡିଶାର ଲୋକମାନେ ଆସି ରୁଣ୍ଡ ହୋଇଯା'ନ୍ତି । ତାକୁ ଯାହା ପ୍ରଶ୍ନ କଲେ ବି ସେ ଉତ୍ତର ଦିଏ ନାହିଁ, କିନ୍ତୁ କାନ୍ଦୁଥାଏ । ଏହାପରେ ସେ ଅବଶ ହୋଇଯାଏ ଓ ଶୋଇପଡେ । ରାତି ନ'ଟାରେ ଉଠେ ଓ ସାମାନ୍ୟ ଟିକିଏ ଖାଇ ପୁଣି ଶୋଇପଡେ । ପରଦିନ ମଧ୍ୟ ସେହିପରି ସନ୍ଧ୍ୟା ହେଲେ କାନ୍ଦେ । 'ସେ କାହିଁକି ରାତିହେଲେ କାନ୍ଦୁଛି' ଦିନବେଳେ ତାକୁ ପଚାରିଲେ ଭୟ ଯୋଗୁଁ ସେ କାନ୍ଦୁଛି ବୋଲି କେବଳ କହେ । ରାଜଲକ୍ଷ୍ମୀକୁ ବାରମ୍ବାର ଏହା ପଚାରି ବ୍ୟସ୍ତ ନ କରିବାକୁ ମେନନ ସମସ୍ତଙ୍କୁ ମଧ୍ୟ ଅନୁରୋଧ କରିଛନ୍ତି ।

କିଛି ଦିନ ଏହିପରି କାନ୍ଦିବା ପରେ ମେନନ ଝିଅକୁ ଜିଲ୍ଲା ଚିକିତ୍ସାଳୟରେ ଡାକ୍ତର ଆଇପଙ୍କୁ ଦେଖାଇଲେ । ଡାକ୍ତର ଆଇପ, ଡାକ୍ତର ଜୁରିଏନ ଓ ଡାକ୍ତର ମେନନ ପରସ୍ପର ସହ ଆଲୋଚନା କରି ଗୋଟିଏ ମାସ ତାକୁ ଚିକିତ୍ସା କଲେ, କିନ୍ତୁ ତାର କାନ୍ଦ ବନ୍ଦ ହେଲାନାହିଁ । ପରେ ଡାକ୍ତରମାନେ ରାଜଲକ୍ଷ୍ମୀକୁ ମାନସିକ ରୋଗ ଚିକିତ୍ସକଙ୍କୁ ଦେଖାଇବାକୁ ମେନନଙ୍କୁ ପରାମର୍ଶ ଦେଲେ । ମେନନ ସାଇକିଆଟ୍ରିଷ୍ଟଙ୍କୁ ନ ଦେଖାଇ ଜଣେ ଜ୍ୟୋତିଷୀ, ଚନ୍ଦ୍ରନଙ୍କୁ, ପରାମର୍ଶ କଲେ । ଜାତକ ଓ ଗ୍ରହ ଗଣନା କରି ସେ କହିଲେ ଯେ ରାଜଲକ୍ଷ୍ମୀ ଭିତରେ ତାର ଆଈଙ୍କର ଆତ୍ମା ପ୍ରବେଶ କରିଛି । ସେ ଆଈଙ୍କ ସମାଧିସ୍ଥଳ ଦେଇ ଗାଧୋଇବାକୁ ଯାଉଥିବାରୁ ଏହା ହୋଇଛି । ସୁତରାଂ ଜଣେ ଭଲ ତାନ୍ତ୍ରିକକୁ ଦେଖାଇବା ଆବଶ୍ୟକ । ଫଳରେ 'ବାସୁଦେବନ ନମ୍ବୁଦ୍ରିପଦ' ନାମକ ଜଣେ ତାନ୍ତ୍ରିକଙ୍କୁ ଡକାଗଲା । ସେ ପୂଜା କରି ଏକ ତାବିଜ ପିନ୍ଧିବାକୁ ଦେଲେ,

ହେଲେ ଝିଅର କାନ୍ଦ ବନ୍ଦ ହେଲା ନାହିଁ । ଏହାପରେ ତାକୁ ଜଣେ ଆୟୁର୍ବେଦିକ ଡାକ୍ତର ଥାଇକାର୍ଡ ମୋଜେସଙ୍କ ପାଖକୁ ନେଇ ଚିକିତ୍ସା କରାଯାଉଛି । ମେନନଙ୍କ ପାଖରୁ ଏ ସମସ୍ତ ଶୁଣିବା ପରେ ଯୋଶେଫ ଓ ଭେଦାର ପରେ ମେନନଙ୍କ ଘରକୁ ଆସି ରାଜଲକ୍ଷ୍ମୀକୁ ଦେଖିବାକୁ କହିଲେ ।

ଦୁଇଦିନ ପରେ ୧୭.୪.୬୧ ରେ ସେମାନେ ମେନନଙ୍କ ଗୃହକୁ ଆସିଲେ । ଆଲୋଚନା ଭିତରେ ସେମାନେ ଜାଣିବାକୁ ପାଇଲେ ଯେ ୧.୧୧.୬୦ରେ ରାଜଲକ୍ଷ୍ମୀର ଆଈ ମୃତ୍ୟୁ ବରଣ କରିଥିଲେ । ତା ପରଦିନ ସନ୍ଧ୍ୟାଠାରୁ ରାଜଲକ୍ଷ୍ମୀର କାନ୍ଦିବା ଆରମ୍ଭ ହୋଇଛି । ଗତ ସାଢେ ପାଞ୍ଚମାସ ଭିତରେ ଗୋଟିଏ ଦିନ ମଧ୍ୟ ଏହା ବାଦ ଯାଇ ନାହିଁ ।

ଯୋଶେଫ ଅତି ଶ୍ରଦ୍ଧାରେ ରାଜଲକ୍ଷ୍ମୀକୁ ପାଖକୁ ଡାକି କାହିଁକି ସେ କାନ୍ଦୁଛି ବୋଲି ପଚାରିବାରୁ "ଭୟ ଯୋଗୁଁ" ସେ ଉତ୍ତର ଦେଲା । "ଜଣେ ବିଭିନ୍ନ କଥାକୁ ଭୟ କରିପାରେ । ମଣିଷ, ପଶୁ, ବସ୍ତୁ, ଘଟଣା ଏପରି ଅନେକ କଥାକୁ ଆମେ ଭୟ କରୁ" । ରାଜଲକ୍ଷ୍ମୀ କାହାକୁ ଭୟ କରୁଛି ବୋଲି ପଚାରିବାରୁ ସେ କିଛି ଉତ୍ତର ଦେଲା ନାହିଁ । ଏହାପରେ ଯୋଶେଫ ପୁଣି କହିଲେ, "କୁକୁର କାମୁଡି ଦେବ ବୋଲି ଆମର ଭୟ ହୁଏ, ଷଣ୍ଢ ଭୁଷିଦେବ ବୋଲି ଭୟ ହୁଏ । ସେହିପରି ସାପ, ହାତୀ ଓ ଏପରିକି କାଳ୍ପନିକ ଭୂତ, ପ୍ରେତମାନଙ୍କୁ ମଧ୍ୟ ଲୋକମାନେ ଡରିଥାନ୍ତି । ସୁତରାଂ ତୁମର କାହାକୁ ଭୟ ହେଉଛି" ।

"ମୁଁ ଶୂନ୍ୟରେ ଉପରକୁ ଉଠି ଯାଉଛି ବୋଲି କାନ୍ଦିଥାଏ"- ରାଜଲକ୍ଷ୍ମୀ ଉତ୍ତର ଦେଲା । "ତୁମେ କ'ଣ ଉପରୁ ଖସି ପଡିବ ବୋଲି ଭୟ କରି କାନ୍ଦୁଛ ?" ଯୋଶେଫ ପଚାରିଲେ ।

"ନା,ଅନ୍ଧାର ମୋର ଆଖି ଆଗକୁ ଆସିଯାଏ । ମୁଁ ଅନ୍ଧାର ଦେଖି କାନ୍ଦେ" – ସେ କହିଲା ।

"ତୁମେ କାହିଁକି ଅନ୍ଧାରକୁ ଡରୁଛ ? ସବୁଦିନ ରାତିରେ ତ ଆମେ ଅନ୍ଧାର ଦେଖୁଛେ । ତୁମେ କ'ଣ ଆଈ ମରିବା ପୁର୍ବରୁ ଅନ୍ଧାର ଦେଖି ନଥିଲ । ତାଙ୍କ ମୃତ୍ୟୁ ପୂର୍ବରୁ ଅନ୍ଧାର ପ୍ରତି ତୁମର ତ ଭୟ ନଥିଲା ?"

"ସେହି ବହିରେ ଥିବା ଏକ ଛବି ଦେଖି ମୋତେ ଭୀଷଣ ଡର ମାଡୁଛି" – ରାଜଲକ୍ଷ୍ମୀ ତାର ସାନ ଭାଇ ପଢୁଥିବା ଗୋଟିଏ ବହିକୁ ସୂଚନା ଦେଲା ।

ଯୋଶେଫ ବହିଟିକୁ ନେଇ ଦେଖିଲେ । ବହିରେ ମଇଁଷି ଉପରେ ବସିଥିବା, ବାମ ହାତରେ ତ୍ରିଶୂଳ ଏବଂ ଡାହାଣ ହାତରେ ଦଉଡି ଫାଶ ଧରିଥିବା ଯମର ଚିତ୍ର ଥିଲା । ତଳେ ଲେଖାଥିଲା, "ଯମ ଫାଶରେ ସତ୍ୟବାନଙ୍କୁ ବାନ୍ଧି ଯମଲୋକକୁ ନେବ" ।

"ଦୟାକରି ସେହି ଛବି ମୋତେ ଦେଖାନ୍ତୁ ନାହିଁ । ଦେଖିଲେ ମୋର ଭୟ ହେବ ଓ ମୁଁ କାନ୍ଦି ଅଚେତ ହୋଇଯିବି" ବୋଲି ରାଜଲକ୍ଷ୍ମୀ କହିଲା ।

"ତୁମେ କାହିଁକି ଛବିକୁ ଦେଖି କାନ୍ଦୁଛ । ଏହାତ ବାସ୍ତବ ଘଟଣା ନୁହଁ" – ଯୋଶେଫ କହିଲେ ।

ରାଜଲକ୍ଷ୍ମୀ କହିଲା, "ଯେତେବେଳେ ମୋର ଆଈମା' ଅତ୍ୟନ୍ତ ଅସୁସ୍ଥ ହୋଇ କଷ୍ଟ ପାଉଥିଲେ, ସେତେବେଳେ ଆମ ଘର ଲୋକେ ତାଙ୍କୁ ଖଟ ଉପରୁ ଟେକି ନେଇ ଭୂମିରେ ଶୁଆଇ ଦେଲେ । ସେମାନେ ନିଷ୍ଠୁର ପରି ଏହା କଲେ । ଆଈ ତାପରେ ସାଙ୍ଗେ ସାଙ୍ଗେ ମରିଗଲେ । ତାଙ୍କର ମୃତ୍ୟୁ ପରେ ମୋତେ ବହୁତ କାନ୍ଦ ଲାଗିଲା । 'ଦକ୍ଷିଣରେ ଥିବା ଯମାଳୟକୁ ଯମ ଆଈଙ୍କୁ ନେଇଗଲେ, ତେଣୁ ମୋର କାନ୍ଦିବା ଠିକ୍ ନୁହେଁ ବୋଲି ମାଉସୀ କହିଲେ" ।

ଯୋଶେଫ ଜାଣିଲେ ଯେ ରାଜଲକ୍ଷ୍ମୀ ଅନ୍ଧାରକୁ ଦେଖିଲେ ତାର ଭ୍ରମ ପ୍ରତ୍ୟକ୍ଷ ହେଉଛି ଯେ ଯମ ଆସି ତା'ର ଆଈଙ୍କ ଭଳି ତାକୁ ନେଇଯିବ । ଯମ ବାନ୍ଧିକରି ନେଇଥାଏ ଭାବନାରୁ ତାର ମାନସିକ ଭ୍ରମ ସୃଷ୍ଟି ହେଉଛି ଯେ ସେ ଆକାଶରେ ଉପରକୁ ଉଠିଯାଉଛି ।

ଯୋଶେଫ ତାଙ୍କୁ ବୁଝାଇଲେ ଯେ ଯମ, ଭୂତ,ପ୍ରେତ, ଅପସରା, ଦେବଦୂତ ଇତ୍ୟାଦି ବାସ୍ତବରେ ନାହାନ୍ତି । ଏଗୁଡିକ କେବଳ ଅନ୍ଧବିଶ୍ୱାସୀ ମଣିଷମାନେ କଳ୍ପନା କରିଛନ୍ତି । ସାମାଜିକ ପରିବେଶରୁ ରାଜଲକ୍ଷ୍ମୀ ଏହିସବୁ ବିଶ୍ୱାସ ପାଇଥିବା ଯୋଗୁଁ ତାକୁ ବୁଝାଇବା ଅସମ୍ଭବ ମନେ ହେବାରୁ ସେ 'ହେଟାବାଘ ଓ ମେଣ୍ଢା ଛୁଆ' ଗପ ଜାଣିଛ କି ବୋଲି ପଚାରିଲେ । ସେ ଏହା ଜାଣିଛି ବୋଲି କହିବାରୁ ତାକୁ ସେହି

କାହାଣୀଟିକୁ କହିବାକୁ ଯୋଶେଫ କହିଲେ । ରାଜଲକ୍ଷ୍ମୀ ସୁନ୍ଦର ଭାବରେ ଗପଟି କହିଦେବାରୁ ଯୋଶେଫ ତାକୁ ପଚାରିଲେ, "ହେଟାବାଘ ଓ ମେଣ୍ଢାମାନେ କ'ଣ କଥା ହୋଇ ପାରନ୍ତି ।" ରାଜଲକ୍ଷ୍ମୀ "ନା" କହିବାରୁ ସେ କହିଲେ ଯେ ଏହା ଯେପରି ଗୋଟିଏ ଗପ,ସେହିପରି ଯମ ଆସି ମଣିଷ ମାନଙ୍କର ମୃତ୍ୟୁ ପରେ ବାନ୍ଧିକରି ନେଇଥାଏ ମଧ୍ୟ ଗୋଟିଏ କାଳ୍ପନିକ କାହାଣୀ । ଯେପରି ପଶୁମାନେ କଥା ହେବା ମିଛ ସେହିପରି ମରୁଥିବା ଲୋକମାନଙ୍କ ବେକରେ ଫାଶ ଦେଇ ସେମାନଙ୍କୁ ଯମପୁରକୁ ଯମ ନେବା ମଧ୍ୟ ସମ୍ପୂର୍ଣ୍ଣ ମିଛ ।

ରାଜଲକ୍ଷ୍ମୀ ବେଶ୍ ଚାଲାକ ଥିବାରୁ ଯୋଶେଫଙ୍କର ବକ୍ତବ୍ୟର ସାରମର୍ମ ବୁଝିପାରିଲା ଓ ଏପରିକି ତାଙ୍କ ହାତରୁ ବହିଟି ନେଇ ଛବିକୁ କିଛି ସମୟ ଦେଖିଲା । ଏହାପରେ କହିଲା, "ମୁଁ ଏ ପର୍ଯ୍ୟନ୍ତ ଭାବିଥିଲି ଏହା ଏକ ସତ ଘଟଣା ବୋଲି । ମୁଁ ଯେ ଆଉ କାନ୍ଦିବି ଏହା ଭାବୁ ନାହିଁ ।

ଦୁଇଦିନ ପରେ ଯୋଶେଫ ପୁଣି ମେନନଙ୍କ ଘରକୁ ଆସିବାରୁ ରାଜଲକ୍ଷ୍ମୀ ଖୁସିମନରେ ତାଙ୍କୁ କହିଲା, "ମୁଁ ଗତ କାଲି ବା ପୂର୍ବଦିନ କାନ୍ଦି ନାହିଁ ।" ତାର ବାପା, ମା' ଅତି ଆନନ୍ଦରେ ନିଜର କୃତଜ୍ଞତା ଯୋଶେଫଙ୍କୁ ଜଣାଇଲେ ।

କେରଳ ଓ ଭାରତର କେତେକ ଅଞ୍ଚଳରେ କେତେକ ଅମାନବିକ ପରମ୍ପରା ଓ କୁସଂସ୍କାର ରହିଛି । ମୃତ୍ୟୁ ପୂର୍ବରୁ ଅସୁସ୍ଥ ମଣିଷକୁ ଖଟ ଉପରୁ ଆଣି ଦ୍ୱାର ପାଖରେ ବା ଦକ୍ଷିଣ ମୁହାଁ କରି ଭୂଇଁଉପରେ ବା କଦଳୀ ପତ୍ର ଉପରେ ଶୋଇ ଦିଆଯାଏ । ଏହା ପଛରେ ଏହି ବିଶ୍ୱାସ ରହିଛି ଯେ ଯମାଳୟ ଦକ୍ଷିଣ ଦିଗରେ ଅବସ୍ଥିତ ଓ ମୃତ୍ୟୁ ପରେ ଯମ ବା ଯମଦୂତ ଆସି ମୃତ ବ୍ୟକ୍ତିର ଆତ୍ମାକୁ ଦକ୍ଷିଣ ଦିଗକୁ ନେଇଥାଏ । ଯଦି କୌଣସି ବ୍ୟକ୍ତି ଦ୍ୱାର ମୁହଁ ବା ଦକ୍ଷିଣ ମୁହାଁ ନ ହୋଇ ମୃତ୍ୟୁବରଣ କରେ ତେବେ ଦକ୍ଷିଣ ପଟ କାନ୍ଥକୁ ଭାଙ୍ଗି ସେହିପଟେ ହିଁ ଶବକୁ ବାହାର କରି ସତ୍କାର ପାଇଁ ନିଆଯାଏ । ସେହିପରି ଅନ୍ୟ ବିଶ୍ୱାସଟି ହେଉଛି ମୃତ ବ୍ୟକ୍ତିର ସଂସର୍ଗରେ ଆସିଥିବା ପ୍ରତ୍ୟେକଟି ବସ୍ତୁ ଅପବିତ୍ର ଓ ତାହାକୁ ପୋଡିଦେବା ଦରକାର । ସୁତରାଂ ଖଟ ଉପରେ ମରିବାଦ୍ୱାରା ଖଟକୁ ପୋଡିବାକୁ ପଡୁଥିବାରୁ ମୃତ୍ୟୁ ପୂର୍ବରୁ ମୃତ୍ୟୁ ଅପେକ୍ଷାରେ ଥିବା ମଣିଷଟିକୁ ଖଟରୁ ତଳକୁ ଆଣି ଶୁଆଯାଏ । ଏହାଛଡା ମୃତବ୍ୟକ୍ତିର ପରିବାରରେ

ଥିବା ସମସ୍ତ ବ୍ୟକ୍ତି ଅପବିତ୍ର ଓ ଅଶୁଦ୍ଧ । ସୁତରାଂ ଷୋଡଶ ଦିବସରେ ଶୁଦ୍ଧିକ୍ରିୟା ଦ୍ୱାରା ସେମାନଙ୍କୁ ପବିତ୍ର କରାଯାଇପାରିବ । ଅଣଶୁଦ୍ଧିଆ ପରିବାରର ଲୋକମାନେ କୌଣସି ସାମାଜିକ କାର୍ଯ୍ୟ କରିପାରିବେ ନାହିଁ ଓ ଏପରିକି ଛାତ୍ର ଛାତ୍ରୀମାନେ ବିଦ୍ୟାଳୟକୁ ଯାଇପାରିବେ ନାହିଁ । କାରଣ ସେମାନେ ଗଲେ ଅନ୍ୟମାନେ ତାଙ୍କ ସଂସ୍ପର୍ଶରେ ଆସି ଅପବିତ୍ର ହୋଇଯିବେ ।

ସମ୍ବେଦନଶୀଳ ରାଜଲକ୍ଷ୍ମୀ ସମ୍ମୁଖରେ ତାର ଅତି ଆପଣାର ଆଈ ଜୀବନ-ମରଣ ସହ ସଂଗ୍ରାମ କରୁଥିବାବେଳେ ତାକୁ ଖଟରୁ ଟାଣି ତଳକୁ ନେଇଯିବା ତା'ର ମନରେ ଗଭୀର ରେଖାପାତ କରିଥିଲା । ଏହା ସହିତ ସେମାନେ ରହୁଥିବା ଘରର ବଗିଚାରେ ତାର ଆଈକୁ ସମାଧି ଦେବା ଓ ଯମ ଉପରେ ତା ମାଉସୀଙ୍କର ମନ୍ତବ୍ୟ ତାର ପ୍ରାଣରେ ଗଭୀର ଆଲୋଡନ ସୃଷ୍ଟି କରିଥିଲା । ଯମ ଆସି ମୃତ ଲୋକର ଆତ୍ମାକୁ ଯେ ଦକ୍ଷିଣ ଦିଗକୁ ନେଇଥାଏ ଏହାକୁ ସେ ସତ ଘଟଣା ବୋଲି ଭାବିଥିଲା । ତାର ଏହି ବିଶ୍ୱାସ ବିଦ୍ୟାଳୟରେ ପଢାଯାଇଥିବା ଏକ ବିଷୟରେ ଦୃଢ଼ିଭୂତ ହୋଇଥିଲା । ସାହିତ୍ୟ ବହିର ସେହି ବିଷୟଟି ଥିଲା "ମୃତ୍ୟୁକୁ ମଧ୍ୟ ପରାହତ କରାଯାଇପାରେ ।" 'ସତ୍ୟବାନ ଓ ସାବିତ୍ରୀ' କାହାଣୀ ସେଥିରେ ଥିଲା ଓ ଯମର ଏକ ଚିତ୍ର ରହିଥିଲା । ଜଣେ ପତିବ୍ରତା ନାରୀ କିପରି ନିଜର ସ୍ୱାମୀକୁ ଯମ ପାଖରୁ ଉଦ୍ଧାର କରିପାରେ ଗପଟି ମାଧ୍ୟମରେ ନାରୀମାନଙ୍କର ପତି ଏକାଗ୍ରତାର ମହତ୍ତ୍ୱକୁ କାହାଣୀଟିରେ ବର୍ଣ୍ଣନା କରାଯାଇଥିଲା ।

ରାଜଲକ୍ଷ୍ମୀର ସମ୍ବେଦନଶୀଳ ମନ ଉପରେ ଏସବୁ ଘଟଣାର ଖରାପ ପ୍ରଭାବ ପଡିଥିଲା । ଫଳରେ ତାର ମାନସିକ ଅବସ୍ଥା ଏପରି ପ୍ରତିବଦ୍ଧ ହୋଇ ରହିଲା ଯେ ଠିକ ସନ୍ଧ୍ୟା ପାଞ୍ଚଟା ସମୟରେ ଯେଉଁ ସମୟରେ ତାର ଆଈ ମା ମରିଥିଲେ – ଏକ ପ୍ରତିବର୍ତ୍ତୀ କ୍ରିୟା (Reflex action) ସ୍ୱରୂପ ତାର ଏକ ଭ୍ରମ ପ୍ରତ୍ୟକ୍ଷ ସୃଷ୍ଟି ହେଉଥିଲା ଓ ସେ ଯମକୁ ଦେଖୁଥିଲା । ଅନ୍ଧକାରରୁ ସେ ଏକ ଭ୍ରମ ଅନୁଭୂତି ପାଉଥିଲା ଓ ତାର ଆଈକୁ ନେବାପରି ଯମ ତାକୁ ନେଇଯିବ ବୋଲି ଭାବୁଥିଲା । ସେ ଯେତେବେଳେ ଯମର ବର୍ଣ୍ଣନାକୁ ଏକ କାଳ୍ପନିକ କାହାଣୀ ବୋଲି ଜାଣିଲା ତା ମନରୁ ଯମର ଭୟ ଦୂର ହେବା ସହିତ କାନ୍ଦ ବନ୍ଦ ହେଲା ।

(ଚ) ଅନୁରାଧାପୁରର କିଶୋରୀ ଝିଅ ବିମଳା ହଠାତ୍ ଆଧ୍ୟାତ୍ମିକ ଶକ୍ତିର ଅଧିକାରୀ ହୋଇ ଉଠିଲା । ଦେବୀ ବାଳୀ ତା ଭିତରେ ଆବିର୍ଭୂତ ହେଉଥିବାରୁ ସେ ଯେକୌଣସି ରୋଗକୁ ଭଲ କରିବା ଓ ଆଗତ ଭବିଷ୍ୟତ କହିବାର ସାମର୍ଥ୍ୟ ଲାଭ କଲା । ତାର ଖ୍ୟାତି ବହୁ ଅଞ୍ଚଳରେ ବ୍ୟାପିଗଲା । ବହୁ ଦୂର ଦୂରାନ୍ତରରୁ ଶହ ଶହ ଲୋକ ନିଜର ସମସ୍ୟା ନେଇ ତା ପାଖକୁ ଆସିଲେ । ବିମଳାର ଘରର ଉଦ୍ୟାନରେ ଗୋଟିଏ ସୁନ୍ଦର ମନ୍ଦିର ନିର୍ମାଣ କରାଗଲା । ମଙ୍ଗଳବାର ଓ ଶୁକ୍ରବାର ଦୁଇ ଦିନ ତା ଭିତରେ ଦେବୀ ବାଳୀଙ୍କର ଆବିର୍ଭାବ ହେଉଥିବାରୁ ସେହି ଦୁଇଦିନ ସେଠାରେ ପ୍ରବଳ ଜନଗହଳି ହେଉଥିଲା । ପୁରା ରାତି ପୂଜା ସହିତ ଶଙ୍ଖ ଓ ଘଣ୍ଟା ଧ୍ୱନୀ ପରିବେଶକୁ ମୁଖରିତ କରୁଥିଲା ।

ଯେଉଁ ରୋଗୀମାନେ ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ହୋଇ ଡାକ୍ତରଙ୍କଦ୍ୱାରା ନିରାଶ ହୋଇଥିଲେ, ସେମାନେ ସେଠାକୁ ଆସୁଥିଲେ । ବିମଳା ନିଜର ପବିତ୍ର ହାତକୁ ରୋଗୀମାନଙ୍କର କପାଳରେ ଥୋଇ ଏକ ମନ୍ତ୍ରପୂତ ତୈଳ ଲଗାଇ ଦେଉଥିଲେ । ଜଣେ ରୋଗୀଙ୍କୁ ଏଥିପାଇଁ ଚଉଦଟି ପାନପତ୍ରରେ ଦୁଇଟଙ୍କା ଉପହାର ଦେବାକୁ ପଡୁଥିଲା । ତାଙ୍କର ଆଶୀର୍ବାଦରେ ଲକ୍ଷ୍ୟ ପୂରଣ ହେଉଥିବାରୁ ବିମଳାଙ୍କର ପ୍ରସିଦ୍ଧି ଚାରିଆଡେ ବ୍ୟାପି ଯାଇଥିଲା ଓ ହଜାର ହଜାର ଲୋକ ଏପରିକି ବହୁ ଶିକ୍ଷିତ ଓ ପ୍ରଭାବଶାଳୀ ବ୍ୟକ୍ତି ସପ୍ତାହର ସେହି ଦୁଇଦିନ ସେଠାରେ ରୁଣ୍ଡ ହେଉଥିଲେ । ଯଦିବା ଜଣ ପିଛା ଦୁଇଟଙ୍କା ଦେବାକୁ ହେଉଥିଲା, ଧନୀ ଭକ୍ତମାନେ ଦେବୀ ବାଳୀଙ୍କ ଉଦ୍ଦେଶ୍ୟରେ ବେଶ୍ କିଛି ଉପହାର ମଧ୍ୟ ଦେଉଥିଲେ । କୌଣସି ନୂତନ ବ୍ୟବସାୟ ଆରମ୍ଭ କରିବାରେ, ନିର୍ବାଚନ ଲଢିବାରେ ବା ସେପରି କିଛି ଭବିଷ୍ୟ ଯୋଜନାର ଉଦ୍ଦେଶ୍ୟ ନେଇ ଦେବୀଙ୍କର ସମ୍ମତି ପାଇଁ ଲୋକମାନେ ଆସୁଥିଲେ । ବିମଳା ସେମାନଙ୍କର ଉଦ୍ଦେଶ୍ୟ ପୂରଣ କରୁଥିଲେ ଓ ତାଙ୍କର ବାପା, ମା ଉପହାର ସଂଗ୍ରହ କରୁଥିଲେ ।

ବିମଳାଙ୍କ ଠାରେ ଦେବୀ ବାଳୀଙ୍କର ଆବିର୍ଭାବ ପରଠୁଁ ପରିବାରର ଆର୍ଥିକ ପରିସ୍ଥିତିରେ ଯଥେଷ୍ଟ ଉନ୍ନତି ହୋଇଥିଲା । ମନ୍ଦିରଟିକୁ ଅତି ସୁନ୍ଦର ଭାବରେ ଗଢାଗଲା । ମନ୍ଦିରର କାନ୍ଥରେ ବହୁ ସୁସଜିତ ଦେବାଦେବୀଙ୍କର ମୂର୍ତ୍ତି ଶୋଭା ପାଇଲା । ବଡ ବଡ ପିତଳର ଦୀପ ରାତିସାରା ଦେବୀଙ୍କ ଆଗରେ ଜଳାଗଲା । ପୂଜା

ସମୟରେ ବିମଳା ସୁନ୍ଦର ପୋଷାକ ପିନ୍ଧି ସେଠାରେ ବସୁଥିଲେ । ଅହୋରାତ୍ର ସେଠାରେ ମନ୍ତ୍ରପାଠ ତଥା କୀର୍ତ୍ତନ ପାଇଁ ଲୋକମାନେ ନିଯୁକ୍ତ ହେଲେ । ଭୋଗ, ଫୁଲ, ପୂଜାସାମଗ୍ରୀ ବିକ୍ରୀ ପାଇଁ ସେଠାରେ ଅନେକ ଗୁଡିଏ ଦୋକାନ ଖୋଲିଗଲା । ଭକ୍ତମାନେ ପୂଜା କରିବା ପାଇଁ ସମସ୍ତ ବନ୍ଦୋବସ୍ତ ମନ୍ଦିର ଭିତରେ ହେଲା । କାଳୀଙ୍କର ଏକ ସୁଦୀର୍ଘ ମୂର୍ତ୍ତି ରଖାଗଲା । ମୂର୍ତ୍ତି ପାଖରେ ଦୁଇଟି ବଡ ବଡ ଦୀପାଳୀ ଜଳାଗଲା । ମୂର୍ତ୍ତିର ଠିକ୍ ସାମ୍ନାରେ ବିମଳା ବସନ୍ତି । ଯେତେବେଳେ ଦେବୀଙ୍କର ତାଙ୍କ ଭିତରେ ଆବିର୍ଭାବ ହୁଏ ସେ ଭାବ ସମାଧିସ୍ଥ ହୋଇ ଲୋକମାନଙ୍କୁ ସେମାନଙ୍କର ମନସ୍କାମନା ପୂରଣ ପାଇଁ ଭୋଗ, ଫୁଲ ଇତ୍ୟାଦି ଦିଅନ୍ତି । ଲୋକମାନେ ଏହାକୁ ଦେବୀଙ୍କର ଆଶୀର୍ବାଦ ଭାବି ମୁଣ୍ଡରେ ମାରି ନିଜ ନିଜର ସ୍ଥାନକୁ ଫେରିଯାନ୍ତି, କିନ୍ତୁ ଦ୍ୱିତୀୟବାର ଆସନ୍ତି ନାହିଁ ।

ଏହିପରି ଦଶ ବର୍ଷ ଚାଲିବା ପରେ ଦେବୀ କାଳୀଙ୍କର ମାଧ୍ୟମ ହେବାକୁ ବିମଳା ମନାକଲେ । ବାପା, ମା'ଙ୍କର ବହୁତ ବୁଝା ସୁଝା ତଥା ଭକ୍ତମାନଙ୍କର ନିବେଦନ ସତ୍ତ୍ୱେ ସେ ପୂଜା ସ୍ଥାନକୁ ଆସିବାକୁ ଇଚ୍ଛା ପ୍ରକାଶ କଲେ ନାହିଁ । ଏହି ପରିସ୍ଥିତିରେ ଫର୍ଣ୍ଣାଣ୍ଡୋ ଯେ କି ବିମଳାଙ୍କ ପରିବାରକୁ ଜାଣିଥିଲେ ତାଙ୍କର ବାପା, ମା'ଙ୍କୁ କହିଲେ ଯେ ପ୍ରକୃତରେ କୌଣସି ଦେବୀଙ୍କର ବିମଳାଠାରେ ଆବିର୍ଭାବ ହେଉ ନାହିଁ । ବରଂ ସେ କିଛି ମାନସିକ ବିକୃତି ଯୋଗୁଁ ଏପରି ବ୍ୟବହାର କରୁଛନ୍ତି । ସୁତରାଂ ତାଙ୍କୁ କୌଣସି ମନସ୍ତତ୍ତ୍ୱବିତ ବା ସାଇକିଆଟ୍ରିଷ୍ଟଙ୍କ ପାଖରେ ଦେଖାଇବା ଆବଶ୍ୟକ । ଏହି ସ୍ଥିତିରେ ବିମଳାଙ୍କୁ ନେଇ ଫର୍ଣ୍ଣାଣ୍ଡୋ ଓ ପରିବାରର କେତେକ ଲୋକ ୨୧.୯.୬୪ରେ କୋଭୁରଙ୍କ ପାଖରେ ପହଞ୍ଚିଲେ । ସେହି ଦଳରେ ବିମଳାଙ୍କର ଜେଜେମା ମଧ୍ୟ ଥିଲେ । କିନ୍ତୁ ତାଙ୍କର ବାପା, ମା ଅନୁପସ୍ଥିତ ଥିବାରୁ ଆସିପାରି ନଥିଲେ ।

ପ୍ରଥମେ କୋଭୁର ବିମଳାଙ୍କର ଜେଜେମାଙ୍କ ସହିତ ଏ ସମ୍ପର୍କରେ ଏକାନ୍ତରେ ଆଲୋଚନା କଲେ । ସେ ଜାଣିବାକୁ ପାଇଲେ ଯେ ବିମଳାଙ୍କୁ ଦଶ ବର୍ଷ ହୋଇଥିଲା ବେଳେ ସେ ଥରେ ସ୍କୁଲରେ ଥିବା ଅବସ୍ଥାରେ ବେହୋସ ହୋଇଗଲା । ତାପରେ ଚେତା ପାଇବାରୁ ତାକୁ ଡାକ୍ତରଙ୍କ ପାଖକୁ ନିଆଗଲା ଓ ଡାକ୍ତର ସେପରି କିଛି ଅସୁସ୍ଥତା ନ ଥିବା ଦର୍ଶାଇଲେ । ଏହାର ଦୁଇମାସ ପରେ ସେ ପୁଣି ଥରେ ଅଚେତ

ହୋଇଗଲା । ଏଥର ଜଣେ ସ୍ନାୟୁରୋଗ ବିଶେଷଜ୍ଞ ତାକୁ ପରୀକ୍ଷା କରି କେତେକ ଔଷଧ ଲେଖିଦେଲେ । ତାର ଅନ୍ୟ କୌଣସି ଅସୁସ୍ଥତା ନ ଥିବାରୁ ସେ ବିଦ୍ୟାଳୟକୁ ଯାଉଥିଲା । ପୁଣି କିଛି ମାସ ପରେ ସେ ଆଉ ଥରେ ଅଚେତ ହୋଇ ପଡିବା ଯୋଗୁଁ ଏଥର ତା'ର ବାପା ଓ ସମ୍ପର୍କୀୟମାନେ ଡାକ୍ତରଙ୍କୁ ପରାମର୍ଶ କରିବା ପରିବର୍ତ୍ତେ କୌଣସି ତାନ୍ତ୍ରିକଙ୍କୁ ଦେଖାଇବାକୁ ଭାବିଲେ । କାରଣ ସ୍ୱରୂପ ସେମାନେ ଭାବିଲେ ଯେ କୌଣସି ଦୁଷ୍ଟ ଆତ୍ମା ତା ଭିତରେ ପ୍ରବେଶ କରିବାରୁ ତା ପାଖରେ ଏପରି ଲକ୍ଷଣ ଦେଖାଦେଉଛି । ଜଣେ ତାନ୍ତ୍ରିକ ପାଖକୁ ତାକୁ ନେବାଦ୍ୱାରା ସେ କହିଲେ ଯେ ବିମଳା ଭିତରେ ଏକ ମନ୍ଦ ଆତ୍ମା ମଝିରେ ମଝିରେ ଲାଗୁଛି । ଏଥିପାଇଁ ପୂଜାର ଆୟୋଜନ କରିବା ପାଇଁ ତାନ୍ତ୍ରିକ ପରାମର୍ଶ ଦେଲେ । ସେହି ପୂଜାଦ୍ୱାରା ବିମଳାକୁ ମଧ୍ୟ ଆତ୍ମାର ପ୍ରଭାବରୁ ମୁକ୍ତ ରଖାଯାଇପାରିବ । ସେ ପୂଜା କରି ମନ୍ତ୍ରପୂତ ଏକ ତାବିଜ ତାର ହାତରେ ବାନ୍ଧିବା ସହିତ ତାର ବେକରେ ଏକ ଶୁଦ୍ଧ ଉପବୀତ ଲଗାଇ ଦେଲେ । ଏହି ଘଟଣା ପରେ ବିମଳାର ଅଚେତ ହେବା ବନ୍ଦ ହେବା ପରିବର୍ତ୍ତେ ଅଧିକ ହେଲା ଓ ଅନେକ ସମୟରେ ସେ ଏଣୁ ତେଣୁ କଥା କହିବାରେ ଲାଗିଲା । ତାର ଅବସ୍ଥା ଅଧିକ ଖରାପ ହେବାରୁ ତାକୁ ଜଣେ ପ୍ରସିଦ୍ଧ ଗୁଣିଆଁ ପାଖକୁ ନେବାକୁ ସ୍ଥିର ହେଲା । ଗୁଣିଆଁ ସମସ୍ତ ବିଷୟ ଶୁଣି ତିନୋଟି ପୂଜା କରିବାକୁ ପରାମର୍ଶ ଦେଲେ । ସେହି ଅନୁଯାୟୀ ସମସ୍ତ ବ୍ୟବସ୍ଥା କରାଗଲା । ପ୍ରତି ପୂଜାରେ ବିମଳା ଗୁଣିଆଁଙ୍କ ସହିତ ନାଚ କରି କରି ଅଚେତ ହୋଇ ପଡୁଥିଲା । ଶେଷଥର ପୂଜାଦିନ ଏହି ନାଚ ଅବସ୍ଥାରେ 'ମୁଁ ଦେବୀ ବାଳୀ', 'ମୁଁ ଦେବୀ ବାଳୀ' ବୋଲି ଚିତ୍କାର କରି ଉଠିଲା । ଏହା ସହିତ ସେ ଘୋଷଣା କଲା ଯେ ଏହି ପୂଜା ଠିକ ଭାବରେ ହେଉ ନଥିବାରୁ ସେ ସେଠାକୁ ଆଉ ଆସିବ ନାହିଁ । ବରଂ ସେ କେବଳ ବିମଳାଠାରେ ଆବିର୍ଭାବ ହେବ ବୋଲି କହିଲା । ବିମଳାର ଏହି ବ୍ୟବହାରରେ ଗୁଣିଆ ନିଜେ ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ତାଙ୍କଠାରୁ କିଛି ମନ୍ତ୍ରପୂତ ଡେଉଁରିଆ ଆଣି ବିମଳାର ପରିବାର ଫେରିଥିଲେ । ପରଦିନ ବିମଳା ପୁନଶ୍ଚ ଏକ ଭିନ୍ନ ଭଙ୍ଗୀରେ କଥା କହିବାକୁ ଲାଗିଲା । ସେ ତା ପାଇଁ ଏକ ମନ୍ଦିର ନିର୍ମାଣ କରିବାକୁ କହିଲା । ଏହା ଦେବୀ ବାଳୀଙ୍କର ନିର୍ଦ୍ଦେଶ ଭାବି ତାର ବାପା ଗୋଟିଏ ପୂଜା ଆସ୍ଥାନ କରିଦେଲେ ଓ ସେଠାରେ ବାଳୀଙ୍କର ନିୟମିତ ପୂଜା ଉପାସନା କରାଗଲା । ସେଠାରେ ଘଣ୍ଟ ଶଂଖ ଇତ୍ୟାଦି ବାଜିବା ବେଳେ ବିମଳାଠାରେ ବାଳୀଙ୍କର ଆବିର୍ଭାବ ହେଉଥିଲା । ଆସ୍ତେ ଆସ୍ତେ ଗ୍ରାମର ଲୋକମାନେ ସେଠାରେ ସମବେତ

ହୋଇ ବିମଳା ମାଧ୍ୟମରେ ଦେବୀଙ୍କର ଆବିର୍ଭାବ ହେଉଛି ବୋଲି କହିବାକୁ ଲାଗିଲେ । ଏହାଦ୍ୱାରା ବିମଳାର ଶରୀର ଉପରେ ଅଧିକ ଚାପ ପଡୁଥିବା ଅନୁଭବ କରି ସପ୍ତାହରେ ମଙ୍ଗଳବାର ଓ ଶୁକ୍ରବାର ଦୁଇଦିନ ବିମଳା ଜରିଆରେ ଦେବୀଙ୍କର ଆବାହନ କରାଗଲା । ଏହି ଘଟଣା ଆସ୍ତେ ଆସ୍ତେ ଗାଁରୁ ଗାଁ ହୋଇ ସେ ଅଞ୍ଚଳରେ ପ୍ରଚାର ହୋଇଗଲା । ତାଙ୍କ ପରିବାରରେ ଏଥିପାଇଁ ଆନନ୍ଦ ଦେଖାଗଲା ଯେ ଦେବୀ ବାଳୀ ତାଙ୍କ ପରିବାର ପ୍ରତି ଦୟା କରିଛନ୍ତି । ସେମାନଙ୍କର ଆର୍ଥିକ ସ୍ଥିତିରେ ମଧ୍ୟ ଯଥେଷ୍ଟ ଉନ୍ନତି ହେଲା । ଏହା ଭିତରେ ଗତ ଚାରି ମାସ ଧରି ବିମଳାର ଅନୁରୋଧରେ ଏହା ବନ୍ଦ ହେବାରୁ ସେଠାରେ ଚାଲିଥିବା ପୂଜା, ଆରାଧନା, ମନ୍ତ୍ରପାଠ ଇତ୍ୟାଦି ମଧ୍ୟ ବନ୍ଦ ରହିଛି । ଏହି ଚାରି ମାସ ଭିତରେ ବିମଳା ଦୁଇଥର ଅଚେତ ହୋଇଥିଲେ ବି ସେ ବାଳୀଙ୍କ ପରି ବ୍ୟବହାର ଦେଖାଇ ନାହିଁ ।

ବିମଳା ଜେଜେମା'ଙ୍କ ପାଖରୁ ଏହି ସମସ୍ତ ଘଟଣା ସଂଗ୍ରହ କରି କୋଭୁର ବିମଳା ସହ ଏକାନ୍ତରେ କଥା ହେଲେ । ବିମଳାକୁ ଏକ ସମ୍ମୋହିତ ମାନସିକ ସ୍ଥିତି ଭିତରେ ରଖି ତାର ବ୍ୟକ୍ତିଗତ ଜୀବନ ସମ୍ପର୍କରେ କେତେକ କଥା ଜାଣିବାକୁ ପାଇଲେ । ଏହାପରେ କୋଭୁର ତାକୁ ବୁଝାଇଲେ ଯେ କୌଣସି କାଳ୍ପନିକ ଦେବୀ ବାଳୀଙ୍କର ଅସ୍ତିତ୍ୱ ହିଁ ନାହିଁ । ସୁତରାଂ ଅସ୍ତିତ୍ୱ ନଥିବା ଏକ କାଳ୍ପନିକ ଦେବୀଙ୍କର ତା ଭିତରେ ଆଉ ଆବିର୍ଭାବ ହେବ ନାହିଁ । ବିମଳା ପଢାପଢି କରିବାକୁ ଆଗ୍ରହ ପ୍ରକାଶ କଲା ଏବଂ ବିବାହ କରି ଘର ସଂସାର କରିବାକୁ ତାର ଆଗ୍ରହ ଜଣାଇଲା । ପୁନଶ୍ଚ ସେ କହିଲା ଯେ ସେ ଏସବୁ କାର୍ଯ୍ୟରୁ ମୁକ୍ତ ରହି ସାଧାରଣ ଭାବରେ ଜୀବନ ଯାପନ କରିବ । ଏହାପରେ ସେମାନେ କୋଭୁରଙ୍କ ପାଖରୁ ବିଦାୟ ନେଲେ ।

ଘଟଣାଟିର ବିଶ୍ଳେଷଣ କରି କୋଭୁର କୁହନ୍ତି ଯେ ଯଦି ବିମଳାକୁ ସ୍ନାୟୁ ବିଶେଷଜ୍ଞଙ୍କ ଚିକିତ୍ସାରେ ରଖାଯାଇଥାନ୍ତା ତେବେ ହୁଏତ ବେହୋସ ହେବା ଅସୁସ୍ଥତା ଦୂର ହୋଇଥାନ୍ତା । କିନ୍ତୁ ତାର ବାପା, ମା କୁସଂସ୍କାରର ବଶବର୍ତ୍ତୀ ହୋଇ ଯେତେବେଳେ ତାନ୍ତ୍ରିକର ପରାମର୍ଶ କଲେ ଓ ଏକ ମନ୍ଦ ଆତ୍ମାର ପ୍ରବେଶ ଦ୍ୱାରା ସେ ଏପରି ହେଉଛି ବୋଲି ତାନ୍ତ୍ରିକ କହିଲେ ତାର ସମ୍ବେଦନଶୀଳ ମନରେ ଏହି କଥାର ଗଭୀର ଛାପ ପଡିଲା । ଫଳରେ ଗୁଣିଆଁର ପୂଜା ଜନିତ କାର୍ଯ୍ୟଦ୍ୱାରା ସେ ଏକ ଭିନ୍ନ ବ୍ୟକ୍ତିତ୍ୱର ବ୍ୟବହାର ଦେଖାଇଲା । ଏସବୁ କାର୍ଯ୍ୟର ପ୍ରଭାବ ଯୋଗୁଁ ସେ ତାର ଅବଚେତନ

ମନରେ ନିଜକୁ ଦେବୀ ବାଳୀ ବୋଲି ଭାବି ଅପ୍ରାକୃତିକ ବ୍ୟବହାର ପ୍ରଦର୍ଶନ କରୁଥିଲା । ଯେତେବେଳେ ଫର୍ଣ୍ଣାଣ୍ଡୋ ଆତ୍ମାର ପ୍ରବେଶକୁ ଅବାସ୍ତବ କହି ଏହା ଏକ ମାନସିକ ବିକୃତି ବୋଲି ବୁଝାଇଲେ ବିମଳା ପୂଜା ଇତ୍ୟାଦିରେ ଭାଗ ନେଇ ବାଳୀଙ୍କର ମାଧ୍ୟମ ହେବାକୁ ବାରଣ କଲା । ତାର ବ୍ୟକ୍ତିତ୍ୱରେ ପ୍ରକାଶ ପାଉଥିବା ହିଷ୍ଟେରିଆ ସ୍ୱଭାବର ପରିବର୍ତ୍ତନ ସମ୍ଭବ ହେଲା । କୋଭୁରଙ୍କର ସମ୍ମୋହିତ ସ୍ଥିତିରେ ପରାମର୍ଶ ତାର ଅବଚେତନ ମନରୁ ବାଳୀର ଚିନ୍ତା ଦୂର କରିପାରିଲା । ପରେ ସେ ଖବର ନେଇ ଜାଣିଲେ ଯେ ବିମଳା ଜଣେ ସୁସ୍ଥ ବ୍ୟକ୍ତି ପରି ଜୀବନ ନିର୍ବାହ କରୁଛି ।

ଉପରେ ବର୍ଣ୍ଣିତ ହୋଇଥିବା ଘଟଣାମାନ ବାସ୍ତବ ଓ ସତ୍ୟ । ରାଜଲକ୍ଷ୍ମୀ ଘଟଣାଟିକୁ (ଡଂ) କୋଭୁରଙ୍କର ବନ୍ଧୁ ଯୋଶେଫ ଅନୁସନ୍ଧାନ କରିଥିଲେ, ଅନ୍ୟାନ୍ୟ ସମସ୍ତ ଘଟଣାରେ ସେ ନିଜେ ସଂପୃକ୍ତ । ଏକା ପ୍ରକାରର ବହୁ ଘଟଣାକୁ ସେ ଅନୁସନ୍ଧାନ କରିଥିଲେ ବି ବିଭିନ୍ନ ଶ୍ରେଣୀର ଘଟଣା ମଧ୍ୟରୁ ଗୋଟିଏ ଲେଖାଏଁ ଏଠାରେ ଆଲୋଚନା କରାଯାଇଛି । ବିଭିନ୍ନ ଘଟଣାକୁ ଅନୁସନ୍ଧାନ କରି ସଂପୃକ୍ତ ବ୍ୟକ୍ତିମାନଙ୍କର ଅସୁସ୍ଥ ମନକୁ ସୁସ୍ଥ କରିବାରେ ସେ ସଫଳ ହୋଇଛନ୍ତି । ଯଦିବା ବର୍ଣ୍ଣିତ ଘଟଣା ଗୁଡିକ ସତ୍ୟ, ଏଥିରେ ଦିଆଯାଇଥିବା ନାମ ଗୁଡିକ କାଳ୍ପନିକ । ବାସ୍ତବ ନାମରେ ଘଟଣା ଗୁଡିକୁ ପ୍ରକାଶ କରିଥିଲେ ତାର ସାମାଜିକ କୁପ୍ରଭାବ ରହିବା ସମ୍ଭାବନା ହେତୁ ବାସ୍ତବ ଘଟଣାକୁ ଛଦ୍ମ ନାମ ଜରିଆରେ ପ୍ରକାଶ କରିଛନ୍ତି । ଏପରିକି ସ୍ଥଳ ବିଶେଷରେ ସଂପୃକ୍ତ ବ୍ୟକ୍ତିମାନଙ୍କ ସହ ଆଲୋଚନା କରି ସେମାନଙ୍କର ଅନୁମତି କ୍ରମେ ଛଦ୍ମ ନାମରେ ଏହାକୁ ପ୍ରକାଶ କରିଛନ୍ତି ।



# ଆହ୍ୱାନ

ସବୁ ଧର୍ମରେ ନାନା ଅଲୌକିକ ଓ ପାରଲୌକିକ ବିଶ୍ୱାସ ରହିଛି । ବିଭିନ୍ନ ସମାଜରେ ମଧ୍ୟ ନାନା ପ୍ରକାରର ଅତୀନ୍ଦ୍ରିୟ ଓ ଆଧିଦୈବିକ ବିଶ୍ୱାସ ଥିବା ଦେଖିବାକୁ ମିଳେ । ଏହି ସବୁ ବିଶ୍ୱାସ ପଶ୍ଚାତରେ କୌଣସି ବୈଜ୍ଞାନିକ ବା ବସ୍ତୁନିଷ୍ଠ ଭିତ୍ତି ରହିଛି କି ? ଅଲୌକିକ, ପାରଲୌକିକ ଏବଂ ଅତୀନ୍ଦ୍ରିୟ ଘଟଣା ଗୁଡିକର ସମ୍ଭାବନା ସମ୍ପର୍କରେ କୋଭୁର ପ୍ରାୟ ପଚାଶ ବର୍ଷ ଧରି ଖୋଲା ମନ ନେଇ ଗବେଷଣା କରିଛନ୍ତି । ଦୀର୍ଘ ଦିନର ଗବେଷଣାରୁ ତାଙ୍କର ଆତ୍ମ ପ୍ରତ୍ୟୟ ଦୃଢ ହୋଇଛି ଯେ ଚମତ୍କାରିତା ବା ଅଲୌକିକ ଘଟଣା ବୋଲି ଯାହା କୁହାଯାଉଛି ସେପରି କୌଣସି ଘଟଣା ନାହିଁ । ତଥାପି କୌଣସି କ୍ଷେତ୍ରରେ ଅଲୌକିକ ଘଟଣା ସୃଷ୍ଟି କରୁଥିବା କେହି ବ୍ୟକ୍ତି ଥିଲେ ତାଙ୍କର କାର୍ଯ୍ୟକୁ ସେ ପରୀକ୍ଷା କରିବା ପାଇଁ ସର୍ବଦା ଆଗ୍ରହ ପ୍ରକାଶ କରିଛନ୍ତି । ଏହି ପରିପ୍ରେକ୍ଷୀରେ ଅନେକ ଯୋଗୀ, ସାଧୁ, ସିଦ୍ଧ, ଦେବ ପୁରୁଷ, ଅବତାର, ଅଲୌକିକ ଶକ୍ତିଧାରୀ ବ୍ୟକ୍ତିମାନଙ୍କୁ ସେ ପରୀକ୍ଷା କରିବା ପାଇଁ ବହୁବାର ନିବେଦନ କରିଛନ୍ତି । ସମସ୍ତ ଖୋଲାମନ ନେଇ ବୈଜ୍ଞାନିକ ମାନଦଣ୍ଡରେ ସେମାନଙ୍କ ଚମତ୍କାରିତାକୁ ପରୀକ୍ଷା କରିବା ପାଇଁ ସେ ଜୀବନସାରା ଚେଷ୍ଟା କରିଛନ୍ତି । କିନ୍ତୁ ଗୋଟିଏ ହେଲେ ବି ପାରଲୌକିକ ଘଟଣା ବା ଚମତ୍କାରିତା ତାଙ୍କ ସମ୍ମୁଖକୁ ଆସିନାହିଁ । ସୁତରାଂ ସେ ଗ୍ରହଣ କରିଛନ୍ତି ଯେ ପ୍ରକୃତିରେ ଅବସ୍ଥିତ ଥିବା ବା ଘଟୁଥିବା ପ୍ରତ୍ୟେକଟି ଘଟଣା ପ୍ରାକୃତିକ ଓ କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ ବସ୍ତୁନିଷ୍ଠ ଏକରୂପତା ବ୍ୟତୀତ କୌଣସି ଆଧିଦୈବିକ କାରଣ ନାହିଁ । ଅବଶ୍ୟ ପ୍ରକୃତିରେ ଅସଂଖ୍ୟ ରହସ୍ୟ ରହିଛି ଯାହା ସାମ୍ପ୍ରତିକ ଜ୍ଞାନର ପରିସର ଭିତରେ ବିଶ୍ଳେଷଣ କରାଯିବା ସମ୍ଭବ ହୋଇନାହିଁ । ଜ୍ଞାନର ପରିସର ବୃଦ୍ଧି ସହିତ ଅନେକ ରହସ୍ୟ ଉଦ୍‌ଘାଟିତ ହେବାରେ ଲାଗିଛି । ଆଜି ଯାହା ସମ୍ଭବ ହୋଇନାହିଁ ଆଗାମୀ ଦିନରେ ତାହା ବ୍ୟାଖ୍ୟା ହୋଇପାରିବ । ସମ୍ପ୍ରତି ବ୍ୟାଖ୍ୟା ହୋଇ ପାରୁଥିବା ବହୁ ଘଟଣା ଅତୀତରେ ଅସମ୍ଭବ ମନେ ହେଉଥିଲା । ସୁତରାଂ ପ୍ରକୃତିରେ ରହସ୍ୟ ରହିଛି, କିନ୍ତୁ ଅଲୌକିକତା (miracle) ନାହିଁ । ଯାହା

ପ୍ରାକୃତିକ ନିୟମର ପରିପନ୍ଥୀ ଓ ପ୍ରତିଷ୍ଠିତ ବିଶ୍ଳେଷଣାତ୍ମକ ବୈଜ୍ଞାନିକ ନିୟମର ବିରୁଦ୍ଧାଚରଣ କରେ ତାହାକୁ ଅଲୌକିକତା କୁହାଯାଏ । ତଥାପି ଯଦି କୌଣସି କ୍ଷେତ୍ରରେ ଅଲୌକିକ ଘଟଣାର ପରିପ୍ରକାଶ ହେଉଛି ବା କେହି ସେପରି କିଛି କରିପାରୁଛନ୍ତି ତେବେ ତାହା କେତେ ଦୂର ତଥ୍ୟପରକ ତାହା ଜାଣିବା ପାଇଁ ସେ ପରୀକ୍ଷା କରିବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ପରୀକ୍ଷଣ ବ୍ୟତୀତ ଜ୍ଞାନର ବୈଧତାକୁ ସ୍ପଷ୍ଟ କରାଯାଇ ପାରିବ ନାହିଁ । ଅର୍ଥାତ୍ ଏକ ପ୍ରତିଷ୍ଠିତ ପଦ୍ଧତି ସାହାଯ୍ୟରେ ପରୀକ୍ଷା କରାଯାଇ ଯଦି କୌଣସି ଅଲୌକିକ ଘଟଣାକୁ ପ୍ରତିଷ୍ଠା କରାଯାଇ ପାରିବ ତେବେ ତାକୁ ଗ୍ରହଣ କରିବାରେ କିଛି ପ୍ରତିବନ୍ଧକ ନାହିଁ । କିନ୍ତୁ କୋଭୁର ଦୀର୍ଘଦିନର ଗବେଷଣା ସତ୍ତ୍ୱେ ଏପରି କୌଣସି ଗୋଟିଏ ଘଟଣା ପାଇବାକୁ ସମର୍ଥ ହୋଇନାହାନ୍ତି । ଅତୀନ୍ଦ୍ରିୟବୋଧ, ଦିବ୍ୟଦୃଷ୍ଟି, ସୂକ୍ଷ୍ମଜ୍ଞାନ ଇତ୍ୟାଦି ଯେଉଁ ଆଧ୍ୟାତ୍ମିକ ଓ ଅଲୌକିକ ଘଟଣାର ବର୍ଣ୍ଣନା ଧର୍ମଗ୍ରନ୍ଥ ମାନଙ୍କରେ ରହିଛି ଓ କେତେକ ବ୍ୟକ୍ତିଙ୍କର ବିଶ୍ୱାସରେ ଅଛି ସେ ସବୁ ଯେ କେବଳ କାଳ୍ପନିକ କାହାଣୀ ଏହା ସେ ନିଜର ଗବେଷଣାତ୍ମକ ଆତ୍ମପ୍ରତ୍ୟୟ ଦ୍ୱାରା ଗ୍ରହଣ କରିଛନ୍ତି । ଏସବୁ ପ୍ରସଙ୍ଗ ଉପରେ ସେ ବିଭିନ୍ନ ଲେଖା ପ୍ରକାଶ କରିବାଦ୍ୱାରା ବହୁ ବିରୋଧର ସମ୍ମୁଖୀନ ହୋଇଛନ୍ତି । ଏପରିକି ତାଙ୍କଠାରୁ ଅଧିକ ଯୋଗ୍ୟତା ହାସଲ କରିଥିବା ଓ ଉଚ୍ଚ ପଦ ପଦବୀରେ ଥିବା ବ୍ୟକ୍ତିମାନେ ତାଙ୍କ ଲେଖାର କଟୁ ସମାଲୋଚନା କରିଛନ୍ତି । ତାଙ୍କ ସମାଲୋଚକ ମାନଙ୍କର ସାମାଜିକ ପ୍ରତିଷ୍ଠା ଦିଗରୁ କୋଭୁର ନିଜର ବୈଜ୍ଞାନିକ ଚିନ୍ତାଧାରା ପ୍ରସାର କ୍ଷେତ୍ରରେ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି । ଏଣୁ ସେ ଖୋଲାଖୋଲି ଭାବେ ନିଜର ଆହ୍ୱାନକୁ ପ୍ରକାଶ କରିଛନ୍ତି ।

ତଥାକଥିତ ଅବତାର, ଯୋଗୀ, ଭବିଷ୍ୟ ଦ୍ରଷ୍ଟା, ଦିବ୍ୟସାଧକ, ଦେବ ପୁରୁଷ ଇତ୍ୟାଦି କେତେକ ବ୍ୟକ୍ତି ନିଜର ଆଧ୍ୟାତ୍ମିକ ସାଧନା ବଳରେ ଅଲୌକିକ କ୍ରିୟା ସମ୍ପାଦନ କରୁଥିବାର ବହୁ ବିଶ୍ୱାସ ସମାଜରେ ରହିଥିବା ଯୋଗୁଁ ସେ ଏସବୁର ବାସ୍ତବତା ନେଇ ତାଙ୍କର ଆହ୍ୱାନ ଦେଇଛନ୍ତି । ୧୯୬୪ ମସିହାରେ ସେ ଶ୍ରୀଲଙ୍କା ତଥା ପୃଥିବୀର କେତେକ ବିଖ୍ୟାତ ପତ୍ର ପତ୍ରିକାରେ ନିଜର ଆହ୍ୱାନକୁ ପ୍ରକାଶ କରିଥିଲେ । ତାଙ୍କ ଘୋଷଣାନାମା ଅନୁଯାୟୀ ଯଦି କୌଣସି ବ୍ୟକ୍ତି କୌଣସି ପ୍ରକାର ଠକାମି ନ ରଖି ଅଲୌକିକ କ୍ରିୟା ବା ଚମତ୍କାରିତା ଦେଖାଇ ଦେଇ ପାରିବେ, ତେବେ ସେ ସେହି

ବ୍ୟକ୍ତିଙ୍କୁ ଏକ ଲକ୍ଷ ଶ୍ରୀଲଙ୍କା ଟଙ୍କା ଦେବେ । ଏହି ଘୋଷଣା ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ କିମ୍ବା ତାଙ୍କୁ ହରାଇବା ପର୍ଯ୍ୟନ୍ତ ଖୋଲା ରହିଥିଲା । ଯଦି କୌଣସି ବ୍ୟକ୍ତି ତଳଲିଖିତ ଘଟଣା ଭିତରୁ ଗୋଟିଏ କ୍ରିୟା ଦେଖାଇ ପାରିବେ ତେବେ ସେ ତାଙ୍କୁ ଏହି ଅର୍ଥ ପ୍ରଦାନ କରିବେ । ଯେଉଁ ଯେଉଁ କ୍ଷେତ୍ରରେ ସେ ଆହ୍ୱାନ ଦେଇଥିଲେ ସେଗୁଡ଼ିକ ଏଠାରେ ପ୍ରଦତ୍ତ ହେଲା ।

୧. ଏକ ମୁଦ ଲଫାପା ଭିତରେ ଥିବା ଗୋଟିଏ ନୋଟ୍‌ର କ୍ରମିକ ନମ୍ବରକୁ ପଢ଼ିବା;

୨. ଗୋଟିଏ ନୋଟ୍‌ର ନମ୍ବର ସହ ସମାନ ଥିବା ଅବିକଳ ଆଉ ଗୋଟିଏ ନୋଟ୍ ସୃଷ୍ଟି କରିପାରିବା;

୩. ଜଳନ୍ତା ନିଆଁ ଉପରେ ନିଜ ଦେବତାଙ୍କର ସାହାଯ୍ୟରେ ବିନା ଫୋଟକାରେ ନିଷ୍କଳ ହୋଇ ଅଧ ମିନିଟିଏ ଛିଡାହେବା;

୪. ସେ ଚାହିଁବା ମୁତାବକ କୌଣସି ବସ୍ତୁ ଶୂନ୍ୟରୁ ସୃଷ୍ଟି କରିବା;

୫. ନିଜର ଦୃଷ୍ଟିଶକ୍ତି ପ୍ରୟୋଗ କରି କୌଣସି କଠିନ ବସ୍ତୁକୁ ଚଳାଇ ଦେବା ବା ବଙ୍କା କରିବା;

୬. ଦୂରବୋଧୀ (Telepathy) ସାହାଯ୍ୟରେ ଅନ୍ୟ ଜଣେ ବ୍ୟକ୍ତିର ଭାବନାକୁ ଜାଣିପାରିବା;

୭. କୌଣସି ଖଣ୍ଡିତ ଅଙ୍ଗକୁ ପ୍ରାର୍ଥନା, ଆଧ୍ୟାତ୍ମିକ ଶକ୍ତି, ପବିତ୍ର ଜଳ, ବିଭୂତି ଇତ୍ୟାଦି ସାହାଯ୍ୟରେ ଗୋଟିଏ ଇଞ୍ଚ ବୃଦ୍ଧି କରିପାରିବା;

୮. ଯୋଗଶକ୍ତି ବଳରେ ଶୂନ୍ୟରେ ଭାସିପାରିବା;

୯. ଯୋଗଶକ୍ତି ବଳରେ ନିଜର ହୃଦ୍ ସ୍ପନ୍ଦନକୁ ପାଞ୍ଚ ମିନିଟ୍ ପାଇଁ ବନ୍ଦ କରିପାରିବା;

୧୦. ଏକ ସମୟରେ ଦୁଇଟି ସ୍ଥାନରେ ଆବିର୍ଭୂତ ହେବା;

୧୧. ଜଳ ଉପରେ ଚାଲି ପାରିବା;

୧୨. ଯୋଗଶକ୍ତି ବଳରେ ନିଜର ଶ୍ୱାସକ୍ରିୟାକୁ ତିରିଶ ମିନିଟ୍ ବନ୍ଦ କରିବା;

୧୩. ଭାବାତୀତ ବା ସେପରି କୌଣସି ଧ୍ୟାନ ଦ୍ୱାରା ସୃଜନାତ୍ମକ ବୁଦ୍ଧିର ବିକାଶ କରାଇବା;

୧୪. କୌଣସି ପବିତ୍ର ବା ମନ୍ଦ ଆତ୍ମାର ପ୍ରବେଶଦ୍ୱାରା ବା ପୁନର୍ଜନ୍ମଦ୍ୱାରା ଏକ ଅଜଣା ଭାଷା କହିପାରିବା;

୧୫. କୌଣସି ଭୂତ ବା ଆତ୍ମା ଦେଖାଇ ପାରିବା ଯାହାର ଫଟୋ ଉଠାଯାଇ ପାରିବ;

୧୬. ଫଟୋ ଉଠାଇବା ବେଳେ ନେଗେଟିଭରୁ ଉଭେଇଯିବା;

୧୭. ଦିବ୍ୟ ଶକ୍ତି ଦ୍ୱାରା ଏକ କୋଠରୀରୁ ବାହାରି ଆସିପାରିବା;

୧୮. କୌଣସି ବସ୍ତୁର ପରିମାଣକୁ ବୃଦ୍ଧି କରି ତାର ଓଜନ ବଢେଇଦେଇ ପାରିବା;

୧୯. ଗୁପ୍ତରେ ରଖାଯାଇଥିବା ଏକ ବସ୍ତୁକୁ କହିପାରିବା;

୨୦. ଜଳକୁ ମଦ ବା ପେଟ୍ରୋଲରେ ପରିଣତ କରିବା;

୨୧. ମଦକୁ ରକ୍ତରେ ରୂପାନ୍ତରିତ କରିବା;

୨୨. ଜ୍ୟୋତିଷ ଓ ସାମୁଦ୍ରିକ ବିଦ୍ୟାକୁ ବିଜ୍ଞାନ ସମ୍ମତ କହି ସାଧାରଣ ଲୋକମାନଙ୍କୁ ପ୍ରଭାବିତ କରୁଥିବା ଜ୍ୟୋତିଷୀ ଓ ହସ୍ତରେଖା ପାଠକ ମାନଙ୍କୁ ସେ ତାଙ୍କର ଆହ୍ୱାନ ମଧ୍ୟ ଦେଇଥିଲେ । ଯଦି କୌଣସି ବ୍ୟକ୍ତି ଶତକଡା ପାଞ୍ଚ ବ୍ୟତିକ୍ରମରେ ଜାତକ ବା ହସ୍ତରେଖା ଚିତ୍ରରୁ ସଂପୃକ୍ତ ବ୍ୟକ୍ତି ପୁରୁଷ ବା ମହିଳା ଏବଂ ଜୀବିତ ବା ମୃତ କହିପାରିବେ ତାହେଲେ ସେ ମଧ୍ୟ କୋଭୁରଙ୍କ ଦ୍ୱାରା ଘୋଷିତ ଅର୍ଥ ଲାଭ କରିପାରିବେ । ଅର୍ଥାତ୍ କୌଣସି ବ୍ୟକ୍ତିଙ୍କର ଜନ୍ମ ତାରିଖ ଓ ସମୟ ନିର୍ଦ୍ଦିଷ୍ଟ ଭାବରେ ତଥା ଜନ୍ମ ସ୍ଥାନର ଅକ୍ଷାଂଶ ଓ ଦ୍ରାଘିମା ଜଣାଇବା ପରେ ଦଶଟି ଜାତକ ବା ହସ୍ତରେଖା ଚିତ୍ରରୁ ଅନ୍ତତଃ ନଅଟି କ୍ଷେତ୍ରରେ ବ୍ୟକ୍ତି ନାରୀ ବା ପୁରୁଷ ଏବଂ ଜୀବିତ ବା ମୃତ କହିପାରିବେ ସେ ମଧ୍ୟ ତାଙ୍କର ପୁରସ୍କାର ଗ୍ରହଣ କରିପାରିବେ ।

କୋଭୁର ତାଙ୍କର ଆହ୍ୱାନ ପରିପ୍ରେକ୍ଷୀରେ କେତେକ ସର୍ତ୍ତ ରଖିଥିଲେ । ସେଗୁଡିକ ହେଲା:

୧. ତାଙ୍କ ଦ୍ୱାରା ଘୋଷିତ ଅର୍ଥ ଜଣେ ଚାହାନ୍ତୁ ବା ନ ଚାହାନ୍ତୁ, ଯିଏ ତାଙ୍କର ଆହ୍ୱାନକୁ ଗ୍ରହଣ କରିବେ ସେ ପ୍ରଥମେ ତାଙ୍କ ନାମରେ କିମ୍ବା ତାଙ୍କ ମନୋନୀତ ବ୍ୟକ୍ତିଙ୍କ ନାମରେ ଏକ ହଜାର ଟଙ୍କା ଜମା କରିବେ । ଯଦି ଆହ୍ୱାନ ଗ୍ରହଣକରୀ ସଫଳ ହୁଅନ୍ତି ତେବେ ଏହି ଅର୍ଥ ପରୀକ୍ଷା ପରେ ଫେରିପାଇବେ । ଏହି ସର୍ତ୍ତ ରଖିବାର ଉଦ୍ଦେଶ୍ୟ ଥିଲା ଅନେକ ଲୋକଙ୍କର ଶସ୍ତା ଲୋକପ୍ରିୟତାଠାରୁ ନିଜର ଶକ୍ତି, ସମୟ ଓ ଅର୍ଥକୁ ବଞ୍ଚାଇବା ।

୨. ଏହି ଟଙ୍କା ଜମା ଦେବା ପରେ ଯାଇ ପ୍ରତିପକ୍ଷଙ୍କ ସହିତ ଏ ସମ୍ପର୍କରେ ପତ୍ରାଳାପ ହେବ ।

୩. ଏହି ଜମା ପରେ କୋଭୁରଙ୍କ ଦ୍ୱାରା ମନୋନୀତ ବ୍ୟକ୍ତି ସଂପୃକ୍ତ ଆହ୍ୱାନ ଗ୍ରହଣକାରୀଙ୍କ ଅଲୌକିକ ଶକ୍ତିକୁ ଉଭୟ ପକ୍ଷର ସମ୍ମତି ଥିବା କୌଣସି ଦିନରେ ପରୀକ୍ଷା କରିବେ ।

୪. ଯଦି ସଂପୃକ୍ତ ବ୍ୟକ୍ତି ଏହି ପରୀକ୍ଷାରେ ନିଜ ଅଲୌକିକ ଶକ୍ତି ପ୍ରଦର୍ଶନ କରିବାରେ ଅସମର୍ଥ ହେବେ ତେବେ ତାଙ୍କର ଜମା ଅର୍ଥ ବାଜ୍ୟାପ୍ତ ହେବ ।

୫. ଆହ୍ୱାନ ଗ୍ରହଣକାରୀ ପ୍ରାଥମିକ ଅନୁସନ୍ଧାନରେ ସଫଳ ହେଲେ କୋଭୁର ନିଜେ ଖୋଲା ମଞ୍ଚରେ ତାଙ୍କ ଶକ୍ତିର ଅନୁସନ୍ଧାନ କରିବେ । ସେଥିରେ ସେ ସଫଳ ହେଲେ ତାଙ୍କର ଜମା ଅର୍ଥ ଫେରିପାଇବା ସହିତ କୋଭୁରଙ୍କଠାରୁ ଏକ ଲକ୍ଷ ଶ୍ରୀଲଙ୍କା ଟଙ୍କା ଲାଭ କରିବେ । ସମସ୍ତ ପରୀକ୍ଷା କୌଣସି ଠକାମି ନ ରଖି ଏକ ମୁକ୍ତ ମଞ୍ଚରେ କୋଭୁର ବା ତାଙ୍କ ପ୍ରତିନିଧିଙ୍କର ସନ୍ତୋଷ ଅନୁଯାୟୀ ସମାହିତ ହେବ ।

କହିବା ନିଷ୍ପ୍ରୟୋଜନ ଯେ କୋଭୁରଙ୍କ ଜୀବନକାଳ ଭିତରେ କୌଣସି ବ୍ୟକ୍ତି ତାଙ୍କଠାରୁ ଟଙ୍କାଟିଏ ନେବାକୁ ବି ସମର୍ଥ ହୋଇନାହାନ୍ତି । ଅପରପକ୍ଷରେ ସେ ଏ ବାବଦରେ କେତେ ହଜାର ଟଙ୍କା ପାଇଛନ୍ତି । ଏ ସମ୍ପର୍କରେ ସେ ନିଜେ କହିଛନ୍ତି ଯେ

ତାଙ୍କର ଏହି ଆହ୍ୱାନରୁ କେହି ହୁଏତ ଧାରଣା କରିପାରନ୍ତି ଯେ ତାଙ୍କର ଆର୍ଥିକ ସ୍ଥିତି ଅତି ସଚ୍ଛଳ; ଅର୍ଥାତ୍ ଶସ୍ତା ଜନପ୍ରିୟତା ନେବା ପାଇଁ ସେ ଏକ ଲକ୍ଷ ଟଙ୍କା ଦେବାକୁ କୁଣ୍ଠାବୋଧ କରନ୍ତି ନାହିଁ । ପରନ୍ତୁ ଜଣେ ଅଧ୍ୟାପକ ଭାବରେ ସେ ନିଜର ଜୀବନ ବିତାଇଥିଲେ । ଏଣୁ ଯଦି କୌଣସି ବ୍ୟକ୍ତି ନିଜର ଅଲୌକିକ ଶକ୍ତି ପ୍ରଦର୍ଶନ କରିବାକୁ ସମର୍ଥ ହୋଇଥାନ୍ତେ ତେବେ ତାଙ୍କୁ କୌଣସି ଅନାଥାଶ୍ରମରେ ଆଶ୍ରୟ ନେବାକୁ ପଡିଥାନ୍ତା । ସୁତରାଂ ତାଙ୍କ ମତରେ ଅଲୌକିକତା ବୋଲି ଯାହା କୁହାଯାଉଛି ତାହା ଧର୍ମଗ୍ରନ୍ଥ, କେତେକ ପତ୍ର ପତ୍ରିକା ଓ ସମ୍ବାଦପତ୍ର ତଥା କୁସଂସ୍କାରରେ ବିଶ୍ୱାସ କରୁଥିବା ବ୍ୟକ୍ତିଙ୍କର ମନରେ ରହିଛି । କିନ୍ତୁ ବାସ୍ତବ ପକ୍ଷେ ଏସବୁର କୌଣସି ଯଥାଯଥ ଭିତ୍ତି ନାହିଁ ।

ପୁନଶ୍ଚ ସେ କୁହନ୍ତି ଯେ ଅଲୌକିକତା ନେଇ ତାଙ୍କର ରହିଥିବା ସନ୍ଦେହ ପରିପ୍ରେକ୍ଷୀରେ ଯଦି କୌଣସି ସିଦ୍ଧ ବା ଦେବ ପୁରୁଷ ପ୍ରମାଣଦ୍ୱାରା ଅଲୌକିକ ଶକ୍ତିର ବିଶ୍ୱାସ ତାଙ୍କ ଭିତରେ ସୃଷ୍ଟି କରିପାରିବେ ତେବେ ସେ ନିଜର ହେତୁବାଦୀ ଦୃଷ୍ଟିଭଙ୍ଗୀକୁ ପରିହାର କରି ସେହି ଦେବପୁରୁଷଙ୍କର ଅନୁଗତ ଭକ୍ତ ହେବେ । କିନ୍ତୁ ନିଜ ଜୀବନକାଳ ଭିତରେ ସେ ସେପରି କୌଣସି ଦେବପୁରୁଷଙ୍କର ସମ୍ମୁଖୀନ ହୋଇନାହାନ୍ତି ।

ବିଭିନ୍ନ ଦେଶରେ କେତେକ ବ୍ୟକ୍ତି ଯେଉଁ ଅଲୌକିକ କ୍ରିୟା ଦେଖାଇ ଦେବ-ପୁରୁଷ ବୋଲି ସାମାଜିକ ପ୍ରତିଷ୍ଠା ଲାଭ କରିଛନ୍ତି ସେମାନଙ୍କର ସେହି ତଥାକଥିତ ଅଲୌକିକ କ୍ରିୟା ଗୁଡିକ କୋଭୁର ସାଧାରଣରେ ଦେଖାଇ ପାରୁଥିଲେ । ସେ 'ଅଲୌକିକତା ବିରୋଧୀ ଅଭିଯାନ' ଚଳାଇ ଶ୍ରୀଲଙ୍କା, ଭାରତ ତଥା ଅନ୍ୟ ୟୁରୋପୀୟ ରାଷ୍ଟ୍ରମାନଙ୍କରେ ଗସ୍ତ କରି ବିଭିନ୍ନ ବିଶ୍ୱବିଦ୍ୟାଳୟ ମାନଙ୍କରେ ଓ ସାଧାରଣ ସଭା ସମିତିରେ ଦେବ ପୁରୁଷ ମାନଙ୍କର ହାତ ସଫେଇ ଜନିତ ଅଲୌକିକ କ୍ରିୟାକୁ ପ୍ରଦର୍ଶନ କରୁଥିଲେ । ସେ ମଧ୍ୟରେ ଶୂନ୍ୟରୁ ବିଭୂତି ବାଣ୍ଟିବା, ଦେହରେ ନିଆଁ ଲଗାଇବା, ଶୂନ୍ୟରୁ ଅଗ୍ନି ସୃଷ୍ଟି କରିବା, ଜଣେ ହୃଦରୋଗୀ ହୋଇ ମଧ୍ୟ ନିଜର ହୃଦସ୍ପନ୍ଦନକୁ ବନ୍ଦ କରିବା, ଦୂରବୋଧୀ ସାହାଯ୍ୟରେ ବିଭିନ୍ନ ବ୍ୟକ୍ତିଙ୍କର ଉତ୍ତର ଦେବା, ଦୃଷ୍ଟିଶକ୍ତି ପ୍ରୟୋଗ କରି ଲୁହାକୁ ବଙ୍କା କରିବା, ଅଶରୀର ଆତ୍ମାକୁ ଆବାହନ କରି କ୍ରିୟା କରାଇବା ଇତ୍ୟାଦି ମୁଖ୍ୟ ଥିଲା । ଏସବୁ କାର୍ଯ୍ୟ କରିବା ସହିତ ଏସବୁ କିପରି ହାତ ସଫେଇ, ରାସାୟନିକ ବସ୍ତୁ ବ୍ୟବହାର, ବୈଜ୍ଞାନିକ ଜ୍ଞାନ ଓ ଶରୀର ଜ୍ଞାନଦ୍ୱାରା ସମ୍ଭବ ହେଉଛି

ତାହା ଦର୍ଶାଉଥିଲେ । ଏସବୁ କରିବା ପଶ୍ଚାତରେ କୌଣସି ଆଧ୍ୟାତ୍ମିକ ସିଦ୍ଧି ବା ଅଲୌକିକ ସାଧନା ନଥିଲା, ବରଂ ଉପରୋକ୍ତ କାରଣ ଗୁଡିକ ଥିଲା ।

## ପ୍ରତି ଆହ୍ୱାନର ପରିଣାମ :

କୋଭୁରଙ୍କ ଆହ୍ୱାନ ପ୍ରକାଶ ପରେ ଯେଉଁ କେତେ ଜଣ ତାଙ୍କର ଆହ୍ୱାନ ଗ୍ରହଣ କରିଛନ୍ତି ବା ତାଙ୍କୁ ପ୍ରତି-ଆହ୍ୱାନ ଦେଇଛନ୍ତି ସେହିପରି କେତୋଟି ଘଟଣାର ବର୍ଣ୍ଣନା ଦିଆଗଲା ।

(କ) ବାଙ୍ଗାଲୋରର ଡଃ ଜି.ଭେଙ୍କଟରାଓ ନାମକ ଜଣେ ବ୍ୟକ୍ତି କୋଭୁରଙ୍କ ଭାରତୀୟ ପ୍ରତିନିଧିଙ୍କ ନାମରେ ଏକ ହଜାର ଟଙ୍କା ଜମାଦେଇ ତାଙ୍କର ଆହ୍ୱାନକୁ ଗ୍ରହଣ କଲେ । ସେତେବେଳେ କର୍ଣ୍ଣାଟକର ପାଣ୍ଡବପୁରମଠାରେ ଛ'ବର୍ଷର ବାଳକ କିଟି ଯାହାଙ୍କୁ ସାଇକୃଷ୍ଣ ବୋଲି କୁହାଯାଉଥିଲା, ଅଲୌକିକ ଶକ୍ତିର ଅଧିକାରୀ ବୋଲି ପ୍ରଚାର ହୋଇଥିଲା । ସାଇକୃଷ୍ଣ ସାଇବାବାଙ୍କର ଭଜନ ପରେ ଭାବସମାଧି ଲାଭ କରୁଥିଲେ ଓ ସେତେବେଳେ ହଜାର ହଜାର ଲୋକ ବାଳକଟିର ଆଧ୍ୟାତ୍ମିକ ଶକ୍ତି ଦେଖିବାକୁ ସେଠାକୁ ଯାଉଥିଲେ । ଡଃ ରାଓ ସେପ୍ଟେମ୍ବର ୨୪, ୧୯୬୫ରେ କୋଭୁରଙ୍କୁ ଲେଖିଲେ ଯେ ଅଲୌକିକ ବାଳକ ସାଇକୃଷ୍ଣ ଶୂନ୍ୟରୁ କୁଙ୍କୁମ, ବିଭୂତି ଓ ମହୁ ଇତ୍ୟାଦି ସୃଷ୍ଟି କରିବା ସହିତ ଏକ ମୁଦ ଲଫାପା ଭିତରେ ଥିବା ଏକ ନୋଟର କ୍ରମିକ ନମ୍ବର ଅକ୍ଳେଶରେ କହିଦେଇ ପାରିବେ । ଏକଥା ମଧ୍ୟ ଲେଖିଥିଲେ ଯେ କୋଭୁର ଯେଉଁ ଆନ୍ତର୍ଜାତିକ ସୁଖ୍ୟାତି ନେବାକୁ ଚେଷ୍ଟା କରୁଛନ୍ତି ସାଇକୃଷ୍ଣ ତାକୁ ନଷ୍ଟ କରିବା ସହିତ କୋଭୁରଙ୍କର ସମସ୍ତ ସାମାଜିକ ସମ୍ମାନକୁ ଧୂଳିରେ ମିଶାଇ ଦେବେ । ଏହାପରେ କୋଭୁରଙ୍କ ତରଫରୁ ପ୍ରଫେସର ଏ.ଏମ.ଧର୍ମଲିଙ୍ଗମ କେତେକ ସାମ୍ବାଦିକଙ୍କ ସହିତ ଯାଇ ଡଃ ଭେଙ୍କେଟରାଓଙ୍କୁ ସାକ୍ଷାତ କରି ସାଇକୃଷ୍ଣଙ୍କର ଅଲୌକିକ ସାମର୍ଥ୍ୟକୁ ପରୀକ୍ଷା କରିବାକୁ ଚାହିଁଲେ । ଡଃ ଭେଙ୍କେଟରାଓ ଏଥିରେ ନିଜର ଅକ୍ଷମତା ପ୍ରକାଶ କରି କହିଲେ ଯେ ସାଇକୃଷ୍ଣଙ୍କ ବାପା ଏହି ପ୍ରସ୍ତାବରେ ସମ୍ମତ ନୁହନ୍ତି । ପୁନଶ୍ଚ ସାଇକୃଷ୍ଣଙ୍କର ବାପା କୋଭୁରଙ୍କର କୌଣସି ଟଙ୍କା ଚାହାନ୍ତି ନାହିଁ; ବରଂ କୋଭୁର ଚାହିଁଲେ ତାଙ୍କ ପୁଅ ତାଙ୍କୁ ଟଙ୍କା ଦେଇପାରିବେ ବୋଲି ସେ ଜଣାଇଲେ । ଡଃ ଭେଙ୍କେଟରାଓ କୋଭୁରଙ୍କ ଆହ୍ୱାନ ଗ୍ରହଣ କରିବା ପରିପ୍ରେକ୍ଷୀରେ

ଘଟଣାଟି ଯେତିକି ପ୍ରଚାର ଲାଭ କରିଥିଲା ତା ଫଳରେ ହଜାର ହଜାର ଲୋକ ସାଇକୃଷ୍ଣଙ୍କ ପାଖକୁ ଯିବାକୁ ଲାଗିଲେ । ସାଇକୃଷ୍ଣଙ୍କର ବାପା କିପରି ନିଜ ପୁଅର ଅଲୌକିକ ଶକ୍ତି ଥିବା କଥାକୁ ପ୍ରଚାର କରିଥିଲେ ଯାହାକି ପରେ ଧରାପଡିଲା ତାହା ପରବର୍ତ୍ତୀ ପରିଚ୍ଛେଦରେ ଆଲୋଚନା ହୋଇଛି । କିନ୍ତୁ ଏହି ଘଟଣାରେ କୋଭୁର ତାଙ୍କର ଆହ୍ୱାନ ଗ୍ରହଣକାରୀଙ୍କଠାରୁ ଏକ ହଜାର ଟଙ୍କା ପାଇଲେ ।

(ଖ) ସିଡେନର ଗୋଏଟବର୍ଗର ଅଧିବାସୀ ଜେଲ ଆଇଡ୍ ୧୯୭୬ ମାର୍ଚ୍ଚରେ କୋଭୁରଙ୍କୁ ଏକ ପତ୍ର ଲେଖି ଜଣାଇଲେ ଯେ ଆମେରିକାରୁ ପ୍ରକାଶ ପାଉଥିବା ଫେଟ୍ (FATE) ପତ୍ରିକାରୁ ସେ ତାଙ୍କର ଆହ୍ୱାନ ଓ ତତ୍‌ସମ୍ପର୍କୀୟ ସର୍ତ୍ତ ପଢିଛନ୍ତି । ସେ ତାଙ୍କର ଆହ୍ୱାନକୁ ଗ୍ରହଣ କରୁଛନ୍ତି । କୋଭୁରଙ୍କଦ୍ୱାରା ଆୟୋଜିତ ପରିବେଶରେ ସେ ଜଳ ଉପରେ ଚାଲିଯାଇ ପାରିବେ । ଏହାଛଡା ସେ ଜାଣିବାକୁ ଚାହିଁଲେ ଯେ ତାଙ୍କର ଏହି ପ୍ରଦର୍ଶନବେଳେ ସାମ୍ବାଦିକମାନେ ରହି ଫଟୋ ନେଇ ପାରିବେ କି ନାହିଁ । ତାଙ୍କଠାରୁ ଏହି ପତ୍ର ପାଇବା ପରେ ଏପ୍ରିଲ ୫,୧୯୭୬ରେ କୋଭୁର ଜେଲ ଆଇଡ୍‌ଙ୍କୁ ଜଣାଇଲେ ଯେ ସିଡେନରେ ତାଙ୍କର ମନୋନୀତ ବ୍ୟକ୍ତି ଅଲଫ୍ ମୋର୍ଲିଂଙ୍କ ନାମରେ ସେ ଯଦି ୧୬୦ ଡଲାର (ଶ୍ରୀଲଙ୍କା ମୁଦ୍ରାରେ ଏକ ହଜାର ଟଙ୍କା) ଜମାଦେବେ ତେବେ ସେ ତାଙ୍କର ଆହ୍ୱାନକୁ ଗ୍ରହଣ କଲେ ବୋଲି ଧରାଯିବ । ଏହାପରେ କଲୋମ୍ବୋ ସହରରେ ଥିବା କୌଣସି ତାରକା ହୋଟେଲର ପୁଷ୍କରିଣୀରେ ଉଭୟ ପକ୍ଷର ରାଜିଥିବା କୌଣସି ଦିନରେ ସେ ତାଙ୍କର ଅଲୌକିକ ଶକ୍ତି ପ୍ରଦର୍ଶନ କରିପାରିବେ । ଏହାଛଡା କୋଭୁର ସିଡେନସ୍ଥିତ ତାଙ୍କର ପ୍ରତିନିଧି ଅଲଫ୍ ମୋର୍ଲିଂଙ୍କୁ ଏହି ଅର୍ଥ ଗ୍ରହଣ କରିବାକୁ ଲେଖିଲେ । ଜେଲ ଆଇଡ୍‌ଙ୍କର ଶ୍ରୀଲଙ୍କା ରହଣି କାଳ ସମୟର ସମସ୍ତ ଖର୍ଚ୍ଚ ଓ ଫେରିବା ପାଇଁ ଟିକେଟ୍ ବ୍ୟବସ୍ଥା କରିବେ ବୋଲି ତାଙ୍କୁ ଜଣାଇଲେ । କୋଭୁରଙ୍କର ପତ୍ର ପାଇବାପରେ ୧୮.୫.୧୯୭୬ରେ ଜେଲ ଆଇଡ୍ ତାଙ୍କୁ ଜଣାଇଲେ ଯେ ସେ ଏହା ଭିତରେ ଅଲଫ୍ ମୋର୍ଲିଂଙ୍କ ନାମରେ ଆବଶ୍ୟକୀୟ ଅର୍ଥ ଜମା କରିଛନ୍ତି । ଏହାଛଡା ୭୬ ନଭେମ୍ବର ୧୫ ଠାରୁ ୭୭ ଫେବୃଆରୀ ୧୫ ଭିତରେ ଯେ କୌଣସି ଦିନ ଧାର୍ଯ୍ୟ କରିବାକୁ ସେ ପତ୍ରରେ ସୂଚନା ଦେଇଥିଲେ । ଆହୁରି ମଧ୍ୟ ଜଣାଇଥିଲେ ଯେ ସେ ତାଙ୍କ ଅଲୌକିକ ଶକ୍ତି ପ୍ରଦର୍ଶନ ବେଳେ ପାଣିରେ ବୁଡିଯିବାର ସମ୍ଭାବନା ନାହିଁ କାରଣ ସେ ଜଣେ ଭଲ

ସନ୍ତରଣକାରୀ । ସୁତରାଂ କୋଭୁର ଏ କ୍ଷେତ୍ରରେ ନିଶ୍ଚିତ ରହିବା ଆବଶ୍ୟକ । ଏହି ଅବସରରେ ଅଲଫ୍ ମୋର୍ଲିଂଙ୍କଠାରୁ ପତ୍ର ପାଇ କୋଭୁର ଜାଣିଲେ ଯେ ସେ ନିର୍ଦ୍ଧାରିତ ଜମା ଟଙ୍କା ପାଇଛନ୍ତି । ଏହାପରେ ଜେଲ ଆଇଡ୍‌ଙ୍କୁ ୭୭ ମହିହାର ଫେବୃଆରୀ ୧୨/୧୩ ତାରିଖ ସୁବିଧା ହେବକି ବୋଲି କୋଭୁର ଜାଣିବାକୁ ଚାହିଁଲେ । ଏହାଛଡା ସେ କିପରି ଏହି ଅଲୌକିକ ଶକ୍ତି ଲାଭ କରିଛନ୍ତି ସେ ସମ୍ପର୍କରେ ସୂଚନା ଦେବାକୁ ଲେଖିଥିଲେ । ଯେହେତୁ ଏହି ଘଟଣାଟି ବିଭିନ୍ନ ମହଲରେ ଯଥେଷ୍ଟ ଆଲୋଡନ ସୃଷ୍ଟି କରିବ ତେଣୁ ଏସବୁ ଜଣାଇଲେ ସେ ଏହାର ଯଥାଯଥ ବିଜ୍ଞାପନ ଶ୍ରୀଲଙ୍କା ଓ ବାହାରେ କରିପାରିବେ । ଏହାପରେ ଜେଲ ଆଇଡ୍ ୭୭ର ଫେବୃଆରୀ ୧୨/୧୩ ତାରିଖ ତାଙ୍କ ପାଇଁ ସୁବିଧାଜନକ ହେବ ବୋଲି ମତ ଦେଲେ ଓ ଫେବୃଆରୀ ଆରମ୍ଭରେ ଶ୍ରୀଲଙ୍କାରେ ପହଞ୍ଚିବେ ବୋଲି ଜଣାଇଲେ । ତାଙ୍କର ଗୋଟିଏ ଫଟୋ ପଠାଇବାକୁ କୋଭୁର ତାଙ୍କୁ ଅନୁରୋଧ କରିଥିଲେ । କଲମ୍ବୋର ବିଭିନ୍ନ ହୋଟେଲ ମାଲିକଙ୍କ ସହ ପରାମର୍ଶ କରି ଶେଷରେ ସେଣ୍ଟ ଯୋଶେଫ କଲେଜର ସୁଇମିଂ ପୁଲକୁ ଫେବୃଆରୀ ୧୨ ତାରିଖ ପାଇଁ ନିର୍ଦ୍ଧାରିତ ଭଡାରେ ସ୍ଥିର କଲେ । କୋଭୁରଙ୍କର ସମସ୍ତ ଆୟୋଜନ ବିଷୟ ତାଙ୍କୁ ଜଣାଇ ଦିଆଗଲା ଓ ସେ କେଉଁଦିନ ସଠିକ ଭାବରେ ପହଞ୍ଚିବେ ଜଣାଇବାକୁ ଅନୁରୋଧ କରାଗଲା ।

ନିର୍ଦ୍ଧାରିତ କାର୍ଯ୍ୟକ୍ରମର ପୂର୍ବଦିନ ପର୍ଯ୍ୟନ୍ତ ଜେଲ ଆଇଡ୍ ଶ୍ରୀଲଙ୍କାରେ ନ ପହଞ୍ଚିବା ହେତୁ ଶ୍ରୀଲଙ୍କା ହେତୁବାଦୀ ସମାଜର ମୁଖପାତ୍ର ଏହି ବିବୃତି ପ୍ରେସରେ ଦେଇଥିଲେ, "ସିଡେନର ଜେଲ ଆଇଡ୍ ପାଣି ଉପରେ ଚାଲିବେ ବୋଲି କୋଭୁରଙ୍କର ଆହ୍ୱାନକୁ ଗ୍ରହଣ କରି ଏ ପର୍ଯ୍ୟନ୍ତ ଶ୍ରୀଲଙ୍କାରେ ପହଞ୍ଚି ନାହାନ୍ତି ବା ଶେଷ ପତ୍ରର କୌଣସି ଉତ୍ତର ଦେଇନାହାନ୍ତି । ଫଳରେ ନିର୍ଦ୍ଧାରିତ କାର୍ଯ୍ୟକ୍ରମକୁ ବାତିଲ କରାଯାଉଛି ।"

ଜେଲ ଆଇଡ୍ କେବେ ବି ଶ୍ରୀଲଙ୍କା ଆସିଲେ ନାହିଁ ବା ପତ୍ରର ଉତ୍ତର ଦେଲେ ନାହିଁ ।

(ଗ) ଶ୍ରୀଲଙ୍କାରୁ ପ୍ରକାଶ ପାଉଥିବା ସାପ୍ତାହିକ ପତ୍ରିକା "ଦି ଟାଇମସ" ର ଜାନୁଆରୀ ୨୫,୧୯୬୯ ସଂଖ୍ୟାରେ କୋଭୁରଙ୍କ ଉଦ୍ଦେଶ୍ୟରେ ନିଜର ନାମକୁ

ଗୁପ୍ତ ରଖି ଏକ ଆହ୍ୱାନ ପ୍ରକାଶ ପାଇଥିଲା । ସେହି ସମ୍ବାଦରେ ଲେଖାଥିଲା ଯେ କୋଭୁର ଅଲୌକିକ ଓ ଆଧିଦୈବିକ ଘଟଣାକୁ ଅସ୍ୱୀକାର କରୁଛନ୍ତି । କିନ୍ତୁ ମଣିଷ ଦୃଷ୍ଟିର ଅନ୍ତରାଳରେ ଯେଉଁ ଆଧ୍ୟାତ୍ମିକ ଶକ୍ତି ରହିଛି ତାହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ସୁତରାଂ ପତ୍ର ଲେଖକ କୋଭୁରଙ୍କର ସମ୍ମୁଖୀନ ହୋଇ ଅଲୌକିକ କ୍ରିୟା ପ୍ରଦର୍ଶନ କରିଦେଇ ପାରିବେ । ତାଙ୍କର ଏହି 'ପ୍ରତିଆହ୍ୱାନ' ପ୍ରଦତ୍ତ ସର୍ତ୍ତଦ୍ୱାରା ପର୍ଯ୍ୟବସିତ ହେବ ଓ ସେ କୋଭୁରଙ୍କର ସମ୍ମୁଖୀନ ହେବାକୁ ପ୍ରସ୍ତୁତ । ତାଙ୍କର ସର୍ତ୍ତ ଗୁଡିକ ହେଲା –

(୧) ଯଦି କୋଭୁର ନିଜେ ସମ୍ମୁଖରେ ଉପସ୍ଥିତ ରହିବା ସମ୍ଭବ ନ ହୁଏ ତେବେ ତାଙ୍କଦ୍ୱାରା ମନୋନୀତ ହେତୁବାଦୀ ଅନୁଷ୍ଠାନର କୌଣସି ବ୍ୟକ୍ତିବିଶେଷଙ୍କୁ ପଠାଇ ପାରିବେ । ସେମାନ ତାଙ୍କଠାରୁ ସ୍ୱୀକୃତି ପତ୍ର ଆଣିଥିବେ । ଏହି ପ୍ରଦର୍ଶନ ସମୟରେ ଯଦି ସେମାନଙ୍କ ଭିତରେ କୌଣସି ଭୟ, ଆତଙ୍କ ବା ଶାରୀରିକ ବିଲକ୍ଷଣ ଦେଖାଯାଏ ତେବେ ସେଥିରେ ଆହ୍ୱାନକାରୀ ଦାୟୀ ରହିବେ ନାହିଁ । ଯଦି କୋଭୁର ନିଜେ ଉପସ୍ଥିତ ରୁହନ୍ତି ତେବେ ତାଙ୍କୁ ଏକ ସ୍ୱୀକାରୋକ୍ତି ଦେବାକୁ ହେବ ଯେ ଏକ ଅଜଣା ଆଧ୍ୟାତ୍ମିକ ଶକ୍ତିର ସ୍ତରରୁ କୋଭୁରଙ୍କ ଶରୀରରେ କିଛି ପ୍ରତିକ୍ରିୟା ପ୍ରକାଶ ପାଏ ସେଥିପାଇଁ ସେ ଦାୟୀ ରହିବେ ନାହିଁ ।

(୨) ଏହି ପ୍ରଦର୍ଶନ ସମୟରେ ତାଙ୍କ ସହିତ ଅନ୍ୟ ଯେଉଁ ବ୍ୟକ୍ତିଗଣ ଯୋଗଦେବେ ସେମାନଙ୍କର ନାମ ତାଲିକା ଦେବାକୁ ହେବ ।

(୩) ଏହି କାର୍ଯ୍ୟକ୍ରମ ପାଇଁ ସେ (କୋଭୁର) କୌଣସି ସ୍ଥାନ ସ୍ଥିର କରିପାରନ୍ତି, କିନ୍ତୁ ସର୍ବସାଧାରଣ ଉପସ୍ଥିତ ରହିବା ଭଳି କୌଣସି ଚର୍ଚ୍ଚ, ମନ୍ଦିର, ମସଜିଦ୍ ବା ସ୍ତୂପ ପରି ଆଧ୍ୟାତ୍ମିକ ପୀଠ ସ୍ଥିର କରିବା ସେ (ଆହ୍ୱାନକାରୀ) ଚାହାନ୍ତି ।

(୪) ଏହି ସଭାର ଆୟୋଜନ ପର୍ଯ୍ୟନ୍ତ ଆହ୍ୱାନକାରୀ ନିଜର ନାମକୁ ଗୋପନ ରଖିବେ । ଯଦି ଏହି ସମ୍ବାଦରୁ କୋଭୁର ଏହି ଆହ୍ୱାନକୁ ଗ୍ରହଣ କରନ୍ତି ତେବେ "ଦି ଟାଇମସ" ପତ୍ରିକା ଜରିଆରେ ଜଣାଇବା ପରେ ଆହ୍ୱାନକାରୀ ତାଙ୍କୁ ଅନ୍ୟ ମାଧ୍ୟମରେ ଯୋଗାଯୋଗ କରିବେ ।

(୪) "ଦି ଟାଇମସ" ପତ୍ରିକା ମାଧ୍ୟମରେ ଉଭୟ ପକ୍ଷର ମତାମତ ପ୍ରକାଶ ପାଉଥିଲେ ବି ପତ୍ରିକା କର୍ତ୍ତୃପକ୍ଷଙ୍କୁ ଏହି ବ୍ୟାପାରରେ କୌଣସି ମତେ ଦାୟୀ କରାଯାଇ ପାରିବ ନାହିଁ । କୋଭୁର ପତ୍ରିକାର ସମ୍ପାଦକଙ୍କୁ ଏହି ପ୍ରତିଶ୍ରୁତି ଦେବା ଆବଶ୍ୟକ ।

ପତ୍ରିକାରେ ଏହି ପତ୍ରଟି ପ୍ରକାଶ ପାଇବାପରେ ଶହ ଶହ ଟେଲିଫୋନ ଓ ଚିଠି କୋଭୁର ପାଇବାକୁ ଲାଗିଲେ । ସୁତରାଂ ଆହ୍ୱାନକାରୀ ଓ ପାଠକମାନଙ୍କ ଅବଗତି ନିମନ୍ତେ 'ଦି ଟାଇମସ' ପତ୍ରିକାର ୧ ଫେବୃଆରୀ ୧୯୬୯ ସଂଖ୍ୟାରେ ସେ ଯେଉଁ ବିବୃତି ଦେଇଥିଲେ ତାହା "ଅପରିଚିତ ଆହ୍ୱାନକାରୀଙ୍କ ଆହ୍ୱାନକୁ କୋଭୁର ଗ୍ରହଣ କରିଛନ୍ତି" ଶିରୋନାମାରେ ପ୍ରକାଶ ପାଇଲା । ସେଥିରେ ସେ ଲେଖିଥିଲେ, "ମୁଁ ୨୫.୧.୬୯ରେ ପ୍ରକାଶିତ ବିବୃତିଟି ପଢି ଚମକୃତ ହୋଇଛି । ମୁ ଆଧ୍ୟାତ୍ମିକ ଶକ୍ତିର କାଯ୍ୟକାରିତା ନେଇ ପରୀକ୍ଷା କରିବାର ଅବକାଶ ପାଇଥିବାରୁ ଆନନ୍ଦିତ ହେବା ସହିତ ସାପ୍ତାହିକ ପତ୍ରିକା 'ଦି ଟାଇମସ' କର୍ତ୍ତୃପକ୍ଷଙ୍କୁ ଧନ୍ୟବାଦ ଜଣାଉଛି । ମୋର ବିଶ୍ୱାସ ଏହାଦ୍ୱାରା ଲୋକମାନଙ୍କର ମନରେ ଥିବା ଅଲୌକିକତା ନେଇ ଅନ୍ଧବିଶ୍ୱାସକୁ ଦୂର କରିବାରେ ସମର୍ଥ ହେବି । ମୁ ଯେହେତୁ ଆହ୍ୱାନକୁ ଗ୍ରହଣ କରୁଛି ମୁଁ ପ୍ରକାଶିତ ସମ୍ବାଦ ଉପରେ ନିମ୍ନ ମନ୍ତବ୍ୟ ଦେବାକୁ ଉଚିତ ମନେକରୁଛି ।"

"ମୁଁ ମୋର କେତେକ ହେତୁବାଦୀ ବନ୍ଧୁଙ୍କ ଉପସ୍ଥିତିରେ ଥିଷ୍ଟାନ କଲେଜ ହଲରେ ଫେବୃଆରୀ ୨୪,୧୯୬୯ ଦିନ ଅପରାହ୍ନ ୫ଟା ସମୟରେ ଏହା ପରୀକ୍ଷା କରିବାକୁ ପ୍ରସ୍ତୁତ ଅଛି । ମୁଁ ଏବଂ ମୋର ସହଯୋଗୀମାନେ ତାଙ୍କର ଆଧ୍ୟାତ୍ମିକ କ୍ରିୟାରୁ ଯଦି କିଛି କୁପ୍ରଭାବ ପାଉ ତେବେ ସେଥିପାଇଁ ଆମେ ଦାୟୀ ରହିବୁ ବୋଲି ସ୍ୱୀକାର କରୁଛୁ । ଭୂତ,ପ୍ରେତ,ଶୟିତାନ, ଦେବଦୂତ ବା ସେପରି କିଛି ଶକ୍ତିଙ୍କର ପ୍ରଭାବରୁ ସୃଷ୍ଟ କୁପ୍ରଭାବକୁ ସମ୍ମୁଖୀନ ହେବାକୁ ପ୍ରସ୍ତୁତ ଅଛୁ । କିନ୍ତୁ ଆମ ଉପରେ କୌଣସି ଆକ୍ରମଣ, ଅପରାଧ, ବେଆଇନ କାର୍ଯ୍ୟ, ଠକାମି, ଇଲେକଟ୍ରିକ୍ ସକ୍, ବିଷପାନ, ହତ୍ୟା ଇତ୍ୟାଦି ମାନବୀୟ ଅପରାଧ ମୂଳକ କାର୍ଯ୍ୟ ପାଇଁ ଆହ୍ୱାନକାରୀ ଦାୟୀ ରହିବେ । କୌଣସି ପ୍ରକାରର ଠକାମି ଇତ୍ୟାଦି କାର୍ଯ୍ୟରୁ ମୁକ୍ତ ରହି ଅଲୌକିକ ଶକ୍ତିର ପ୍ରଦର୍ଶନ ପାଇଁ ଏହି ପରୀକ୍ଷା ସାଧାରଣରେ ଓ ଅନ୍ୟମାନଙ୍କ ଉପସ୍ଥିତିରେ ହେବା ଦରକାର । ଆହ୍ୱାନକାରୀ ତାଙ୍କର ଶକ୍ତି ପ୍ରଦର୍ଶନ ପୂର୍ବରୁ କୌଣସି ଠକାମି ରଖି ନାହାନ୍ତି ବୋଲି

ଆମର ସନ୍ତୋଷ ପାଇଁ ତାଙ୍କର ଶରୀରକୁ ଆମେ ଅନୁସନ୍ଧାନ କରିବୁ । ଯେହେତୁ ଏହି କାର୍ଯ୍ୟକ୍ରମକୁ ଦେଖିବା ପାଇଁ ବହୁଲୋକ ଉତ୍କଣ୍ଠା ପ୍ରକାଶ କରିପାରନ୍ତି ସେ ଦୃଷ୍ଟିରୁ କଲେଜର ଷ୍ଟାଡିୟମ ବା ସେହିପରି କିଛି ଖୋଲାସ୍ଥାନ ଏଥିପାଇଁ ଦରକାର । ଆହ୍ୱାନକାରୀ ଯେହେତୁ ମୋର ଆହ୍ୱାନକୁ ଗ୍ରହଣ କରିନାହାନ୍ତି (ଏକ ହଜାର ଟଙ୍କା ଜମାଦେଇ) ସେ ଦୃଷ୍ଟିରୁ ଏହି ପ୍ରଦର୍ଶନୀରେ ଆବଶ୍ୟକ ହେଉଥିବା ଖର୍ଚ୍ଚ ବହନ କରିବେ । ଆହ୍ୱାନକାରୀ ନିଜର ନାମକୁ ଗୁପ୍ତ ରଖିଥିବାରୁ ତାଙ୍କର ନିଷ୍ଠା ନେଇ ମୋର ସନ୍ଦେହ ରହିଛି । ଅତୀତରେ ଏହିପରି ଅନେକ ଘଟଣାରେ ମୋର ତିକ୍ତ ଅନୁଭୂତିରୁ ମୁଁ ଏହି ସନ୍ଦେହ ପୋଷଣ କରୁଛି । କାରଣ ଏହାଦ୍ୱାରା ଶେଷ ମୁହୂର୍ତ୍ତରେ ନିଜର ସାମାଜିକ ସମ୍ମାନ ନ ହରାଇ ସେ ହୁଏତ ଅଲୌକିକ ଶକ୍ତିର ପ୍ରଦର୍ଶନ ପାଇଁ ଆସି ନ ପାରନ୍ତି । ସୁତରାଂ ଏହି ପ୍ରଦର୍ଶନ ପୂର୍ବରୁ ଆହ୍ୱାନକାରୀ ନିଜର ନାମ ଓ ଠିକଣା ସାଧାରଣରେ ପ୍ରକାଶ କରିବା ଆବଶ୍ୟକ । ପୁନଶ୍ଚ ଯେହେତୁ ସେ କେଉଁ ପ୍ରକାରର ଅଲୌକିକ କାର୍ଯ୍ୟ ଦେଖାଇବେ ଉଲ୍ଲେଖ କରିନାହାନ୍ତି ସେ ଦୃଷ୍ଟିରୁ ତାଙ୍କର ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଜାଣିବାପରେ ମୁଁ ହୁଏତ ସେ କ୍ଷେତ୍ରରେ ମୁକ୍ତ ପରୀକ୍ଷା ପାଇଁ ଅନ୍ୟ ସର୍ତ୍ତ ରଖିପାରେ । ସାପ୍ତାହିକ ପତ୍ରିକା "ଦି ଟାଇମସ" ଉଭୟ ପକ୍ଷର ମତାମତ ପ୍ରକାଶ କରିବା ପରିପ୍ରେକ୍ଷୀରେ ଏହି ବ୍ୟାପାରରେ କୌଣସି କ୍ଷେତ୍ରରେ ଆମଦ୍ୱାରା ଦାୟୀ ହେବେ ନାହିଁ ।"

କୋଭୁରଙ୍କର ଏହି ବିବରଣୀ "ଦି ଟାଇମସ" ପତ୍ରିକାରେ ପ୍ରକାଶ ପାଇବା ପରେ ୯.୨.୬୯ରେ ଆହ୍ୱାନକାରୀ ପୁଣି ନିଜର ମତାମତ ଜଣାଇଲେ । ତାଙ୍କର ବିବୃତି "ଈଶ୍ୱର ବିଶ୍ୱାସୀ ଓ ହେତୁବାଦୀଙ୍କ ଭିତରେ ମୁକାବିଲାର ସର୍ତ୍ତ" ଶିରୋନାମାରେ ପ୍ରକାଶ ପାଇଲା । ସେ ଲେଖିଥିଲେ, "ମୋର ପୂର୍ବ ପତ୍ରରେ ପ୍ରକାଶ ପାଇନଥିବା ଗୋଟିଏ ବିଷୟରେ ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ମୁଁ କୋଭୁରଙ୍କର ଆହ୍ୱାନକାରୀ ନୁହଁ । ସେ ବିଭିନ୍ନ ସମୟରେ ଅଲୌକିକ ବା ଆଧ୍ୟାତ୍ମିକ ଶକ୍ତି ନେଇ ଆହ୍ୱାନ ଦେଇଛନ୍ତି ଯାହାକୁ ଅନେକ ସୁଧୀ ପାଠକ ଜାଣନ୍ତି । ସେ ଅନ୍ୟମାନଙ୍କର ବିଶ୍ୱାସ ପ୍ରତି ଅସହିଷ୍ଣୁତା ପ୍ରଦର୍ଶନ କରିଥାନ୍ତି । ଏଣୁ ମୁଁ ବିନୟର ସହ କହିବାକୁ ଚାହେଁ ଯେ ନିଜର ବିଚାରରେ କୋଭୁର ଯଥାର୍ଥ ନୁହନ୍ତି । ମୋର ପୂର୍ବ ପତ୍ରରେ ଥିବା ସର୍ତ୍ତ ଗୁଡିକ ବଳବତ୍ତର ରହିଛି ଓ ସେ କୌଣସି ଏକ ଉପାସନା ପୀଠ ଏହି କାର୍ଯ୍ୟକ୍ରମ ପାଇଁ ସ୍ଥିର

କରିବା ଦରକାର । ସେ ମୋର ଶରୀରକୁ ପରୀକ୍ଷା କରିବାକୁ ଯାହା ସର୍ତ୍ତ ରଖିଛନ୍ତି ମୋର ମଧ୍ୟ ସେହି ଅଧିକାର ରହିଛି । ବରଂ ଆମେ ଉଭୟ ଧୋତି ପିନ୍ଧି ଦର୍ଶକଙ୍କ ପାଖରେ ଉପସ୍ଥିତ ହେବା ଦରକାର । ମୋର ବିଶ୍ୱାସ କୋଭୁର ଦିନେ ଦୈବୀ ଶକ୍ତିର ପ୍ରାଧାନ୍ୟକୁ ସ୍ୱୀକାର କରିବାକୁ ବାଧ୍ୟ ହେବେ ।

"ମୋର କୌଣସି ମନ୍ଦ ଉଦ୍ଦେଶ୍ୟ ନାହିଁ । ମୋର ବିଶ୍ୱାସ ଈଶ୍ୱରଙ୍କ ଶକ୍ତିରେ ବିଶ୍ୱାସ ନ ଥିବା ଜଣେ ଭଦ୍ରବ୍ୟକ୍ତିଙ୍କର ସମ୍ମୁଖୀନ ହୋଇ ତାଙ୍କୁ ଈଶ୍ୱର ବିଶ୍ୱାସୀ କରିବାକୁ ସମର୍ଥ ହେବି । କାରଣ ପ୍ରତ୍ୟେକ ମଣିଷ ଭିତରେ ଈଶ୍ୱରଙ୍କ ଅସ୍ତିତ୍ୱ ରହିଛି । ସେ ଯେହେତୁ କୌଣସି ଅଜ୍ଞାତ ଶକ୍ତିର ଭୟ ରଖିନାହାନ୍ତି ତେଣୁ କୌଣସି ଉପାସନା ପୀଠରେ ଏହି ପ୍ରଦର୍ଶନ ନେଇ ଆଶଙ୍କା ରଖିବା ଉଚିତ ନୁହେଁ । ସେ ହୁଏତ ତାଙ୍କର ନିରାପତ୍ତା ପାଇଁ ପୋଲିସ ଆଣି ପାରନ୍ତି । କିନ୍ତୁ ମୁଁ ସମସ୍ତଙ୍କୁ ଈଶ୍ୱରଙ୍କ ସନ୍ତାନ ଭାବି ଭଲପାଏ ଓ ତାଙ୍କୁ ମଧ୍ୟ ଭଲପାଏ । "ଦି ଟାଇମସ"ର ଆଗାମୀ ସଂଖ୍ୟାରେ ତାଙ୍କର ମତାମତକୁ ମୁଁ ଅପେକ୍ଷା କରୁଛି । ଯଦି ସେ ମୋର ସର୍ତ୍ତରେ ରାଜି ନହୁଅନ୍ତି ତେବେ ତାଙ୍କର ପରାଜୟ ହେଲା ବୋଲି ଧରିନେବାକୁ ହେବ । ଅବଶ୍ୟ ତାଙ୍କ ପାଇଁ ମୁଁ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରିବି ।"

ଯେଉଁ ସଂଖ୍ୟାରେ ନିଜର ନାମକୁ ଗୋପନ ରଖି ଭଦ୍ରଲୋକ ପୂର୍ବ ପତ୍ରଟି ପ୍ରକାଶ କରିଥିଲେ, 'ଦି ଟାଇମସ'ର ସେହି ସଂଖ୍ୟାରେ କୁରୁନେଗାଲ୍ଲର ଆରିୟ ପାଥିରାନା ନାମକ ଜଣେ ପାଠକଙ୍କର ମତାମତ ମଧ୍ୟ ପ୍ରକାଶ ପାଇଥିଲା । ଯେଉଁ ଭଦ୍ରବ୍ୟକ୍ତି ବା ଭଦ୍ରମହିଳା କୋଭୁରଙ୍କ ଉଦ୍ଦେଶ୍ୟରେ ସର୍ତ୍ତମୂଳକ ଆହ୍ୱାନ ଦେଇଥିଲେ, ତା ଉପରେ ନିଜର ପ୍ରତିକ୍ରିୟା ପ୍ରକାଶ କରିବାକୁ ଯାଇ ଆରିୟ ଲେଖିଥିଲେ ଯେ 'ସେ କୋଭୁରଙ୍କ ସହିତ ସେଠାରେ ଉପସ୍ଥିତ ରହିବେ ଏବଂ ତାଙ୍କ ତରଫରୁ ଆହ୍ୱାନକାରୀଙ୍କୁ କୌଣସି ଭୟ ପ୍ରଦର୍ଶନର ପ୍ରଶ୍ନ ହିଁ ଉଠୁନାହିଁ । କିନ୍ତୁ ଆହ୍ୱାନକାରୀ ନିଜର ନାମ ଓ ଠିକଣା ଗୋପନ ରଖିବା ଉଚିତ ନୁହେଁ । ନିର୍ଦ୍ଧାରିତ ସ୍ଥାନ, ଦିନ ଓ ସମୟରେ ଆହ୍ୱାନକାରୀ ଉପସ୍ଥିତ ହେବା ଦରକାର । ଆଇ.ଜି. ପୋଲିସଙ୍କର କୌଣସି ପ୍ରତିନିଧିଙ୍କ ଉପସ୍ଥିତିରେ ଅପରାଧ ବିଜ୍ଞାନରେ ଅଭିଜ୍ଞତା ଥିବା କୌଣସି ଡାକ୍ତର ଆହ୍ୱାନକାରୀଙ୍କୁ ପ୍ରଥମେ ପରୀକ୍ଷା କରିବା ଆବଶ୍ୟକ । କୌଣସି ଉପାସନା ପୀଠରେ ଏହି ପରୀକ୍ଷା କରିବା ପାଇଁ ଆହ୍ୱାନକାରୀ ଉଲ୍ଲେଖ କରିଛନ୍ତି । କିନ୍ତୁ ଆମ୍ଭ,

ଭୂତ, ଦେବତା, ଦେବଦୂତ ଇତ୍ୟାଦିଙ୍କର ଅଲୌକିକ ଶକ୍ତିକୁ କୌଣସି ସାଧନା ବା ପ୍ରାର୍ଥନା ଦ୍ୱାରା ପ୍ରଦର୍ଶନ କରଯାଇ ପାରିବ ବୋଲି ଆହ୍ୱାନକାରୀ ଭାବୁଥାନ୍ତି ତେବେ ଏହା ସର୍ବସାଧାରଣରେ ଓ ଦିନ ସମୟରେ ଦେଖାଇ ପାରିବେ । ଏହି ପ୍ରଦର୍ଶନ ସମୟରେ ଏ ସବୁଥିରେ ବିଶ୍ୱାସ କରୁଥିବା ଓ ବିଶ୍ୱାସ କରୁନଥିବା ଯେ କେହି ବ୍ୟକ୍ତି ଉପରିସ୍ଥ ରହି ପାରିବେ । ପ୍ରକୃତରେ ଯଦି ଆହ୍ୱାନକାରୀ ନିଜର ଦୃଢ ବିଶ୍ୱାସରେ ଏସବୁ ଦେଖାଇ ପାରିବେ ବୋଲି ଭାବୁଥାନ୍ତି ତେବେ ସେ ନିଜର ନାମ ଗୁପ୍ତ ରଖିବା ଉଚିତ ହେଉନାହିଁ ।'

ଆହ୍ୱାନକାରୀଙ୍କ ମତ ପ୍ରକାଶ ପାଇବା ପରେ କୋଭୁର "ଦି ଟାଇମସ"ରେ ୧୬.୨.୬୯ରେ ତାଙ୍କର ମତ ପ୍ରକାଶ କଲେ । ବିଭିନ୍ନ ସମୟରେ କେତେକ ବ୍ୟକ୍ତି ଜନପ୍ରିୟତା ହାସଲ କରିବା ପାଇଁ ଅଲୌକିକ ବା ଆଧ୍ୟାତ୍ମିକ ପ୍ରସଙ୍ଗ ଉପରେ ବଡ ବଡ କଥା ପ୍ରକାଶ କରିଥାନ୍ତି । କିନ୍ତୁ ସେ ସବୁ ପଶ୍ଚାତରେ କୌଣସି ପରୀକ୍ଷିତ ସତ୍ୟତା ନଥାଏ । ବର୍ତ୍ତମାନ ସୁଦ୍ଧା ଆହ୍ୱାନକାରୀ ନିଜର ନାମକୁ ଗୁପ୍ତ ରଖିଛନ୍ତି । ତାଙ୍କର ପୂର୍ବ ବିବୃତି ପଢି ମନେହୁଏ ସେ ଅଲୌକିକ ଶକ୍ତି, କାଳ୍ପନିକ ଦେବଦେବୀ,ଦେବଦୂତ, ଶୟିତାନ ଇତ୍ୟାଦିରେ ବିଶ୍ୱାସ କରନ୍ତି । କିନ୍ତୁ ସଂପ୍ରତି ମଣିଷର ଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଯେତିକି ଅଗ୍ରଗତି କରିଛି ସେଥିରୁ ଅନ୍ତତଃ ମନେ ହେଉଛି ଯେ ଅଲୌକିକତା ବୋଲି ଯାହା କୁହାଯାଉଛି ତାହା କେବଳ ଧର୍ମ ଧାରଣାରୁ ଚଳି ଆସିଥିବା କେତେକ ବିଶ୍ୱାସ ମାତ୍ର । କୋଭୁର ପୁଣି ଲେଖିଥିଲେ, "ସେ ମୋର କେଉଁ ଆହ୍ୱାନଟିକୁ ଗ୍ରହଣ କରୁଛନ୍ତି ତାହାର ସୂଚନା ଦେଇ ନାହାନ୍ତି । ସୁତରାଂ ତାଙ୍କର ଅବଗତି ନିମନ୍ତେ ମୁଁ ପୁନଶ୍ଚ ମୋର ଆହ୍ୱାନକୁ ପ୍ରକାଶ କରୁଛି । ସେ କେଉଁ କାର୍ଯ୍ୟଦ୍ୱାରା ବା କ'ଣ ପ୍ରଦର୍ଶନ କରି ତାଙ୍କର ଅଲୌକିକ ଶକ୍ତିର ପ୍ରମାଣ ଦେବେ ତାହା ସ୍ପଷ୍ଟ କରିବା ଆବଶ୍ୟକ । ୨୪ ଫେବୃଆରୀ ୧୯୬୯ରେ ଥିଷ୍ଟାନ କଲେଜ ପ୍ରାଙ୍ଗଣରେ ପୂର୍ବ ନିର୍ଦ୍ଧାରିତ ସମୟରେ ମୁଁ ଓ ମୋର କେତେକ ସହଯୋଗୀ ବନ୍ଧୁ ଆହ୍ୱାନକାରୀଙ୍କର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ଅଛୁ । ମୋର ପୂର୍ଣ୍ଣ ବିଶ୍ୱାସ ଅନ୍ୟମାନଙ୍କ ଉପସ୍ଥିତିରେ ମୁଁ ଏହା ପରୀକ୍ଷା କରିବାର ଅବକାଶ ପାଇବି । ଆହ୍ୱାନକାରୀ କୌଣସି ଉପାସନା ପୀଠରେ ଏହା କରିବାକୁ ଯାହା ପ୍ରକାଶ କରିଛନ୍ତି ସେ କ୍ଷେତ୍ରରେ ମୁଁ ରାଜମହାବିହାର ମନ୍ଦିର ପ୍ରାଙ୍ଗଣରେ ଏହା କରିବାକୁ ସମ୍ମତ ହେଉଛି, ଯଦି ମନ୍ଦିର କର୍ତ୍ତୃପକ୍ଷ ଏଥିପାଇଁ ଅନୁମତି

ପ୍ରଦାନ କରନ୍ତି । ସେଠାରେ ଥିବା ଖୋଲା ଜାଗା ବହୁ ଲୋକଙ୍କର ସମାଗମ ପାଇଁ ସୁବିଧା ହେବ ।"

କୋଭୁରଙ୍କର ଏହି ବିବରଣୀ ପ୍ରକାଶ ପାଇବାପରେ "ଦି ଟାଇମସ" ପତ୍ରିକାର ୨୨.୨.୬୯ ସଂଖ୍ୟାରେ ଆହ୍ୱାନକାରୀ ଏହି ବିବରଣୀ ପ୍ରକାଶ କଲେ-

ସମ୍ପାଦକ, ଦି ଟାଇମସ

୨୨.୨.୬୯

ମହାଶୟ,

କୋଭୁରଙ୍କର ଆହ୍ୱାନକୁ ଗ୍ରହଣ କରିବା ନେଇ ମୋର ମତାମତ ପ୍ରକାଶ କରିଥିବାରୁ ଧନ୍ୟବାଦ ଜଣାଉଛି । ମୁଁ ମୋର ଆତ୍ମବିଶ୍ୱାସରୁ ଈଶ୍ୱରଙ୍କର ଅସ୍ତିତ୍ୱକୁ ପ୍ରମାଣ କରିପାରିବି । ମୁଁ କୌଣସି ଗୁଣିଆଁ ବା ତାନ୍ତ୍ରିକ ନୁହଁ । ଅନ୍ୟମାନେ କୋଭୁରଙ୍କର ଆହ୍ୱାନକୁ ସମ୍ମୁଖୀନ ନ ହୋଇ ପାରିବାର କାରଣ ହେଉଛି ଗୋଟିଏ ମନ୍ଦ ଭାବନାକୁ ସେମାନେ ଅନ୍ୟ ଏକ ମନ୍ଦ ପନ୍ଥାରେ ସମ୍ମୁଖୀନ ହେଉଛନ୍ତି । ଆଧ୍ୟାତ୍ମିକ ଶକ୍ତିର ଅସ୍ୱୀକାର କରିବାଦ୍ୱାରା ଈଶ୍ୱର ଓ ତାଙ୍କର ଅଲୌକିକତାକୁ ଅସମ୍ମାନ କରାଯାଉଛି । ବର୍ତ୍ତମାନ ସୁଦ୍ଧା ମୁଁ ମୋର ପରିଚୟକୁ ଗୁପ୍ତ ରଖିଛି । ଏହି ସପ୍ତାହରେ ମୁଁ ତାଙ୍କର ସମ୍ମୁଖୀନ ହୋଇଥାନ୍ତି । କିନ୍ତୁ ମୋର ମତ ପ୍ରକାଶ ପାଇବାପରେ ୩.୩.୬୯ ସକାଳ ୮ଟା ସମୟରେ ରାଜମହାବିହାରଠାରେ ମୁଁ ଉପସ୍ଥିତ ରହିବି । ମନ୍ଦିର ଭିତରେ ପ୍ରବେଶ ପୂର୍ବରୁ ପାହାଚ ପାଖରେ ମୁଁ ଉପସ୍ଥିତ ଥିବି । ସେଠାରେ କୋଭୁରଙ୍କୁ "ମୁଁ ଈଶ୍ୱରଙ୍କର ନାମରେ ଏଠାକୁ ଆସିଛି" କହି ସ୍ୱାଗତ କରିବି । ସେ ଯାହା ଉଚିତ ମନେ କରନ୍ତି ତାହା କରିପାରନ୍ତି, କିନ୍ତୁ ମୁଁ ସେଠାରେ ଏକା ଉପସ୍ଥିତ ରହିବି ଓ ମୋ ତରଫରୁ କେହି କୌଣସି ଭୟର ଆଶଙ୍କା କରିବା ଉଚିତ ନୁହେଁ । ଏ ପର୍ଯ୍ୟନ୍ତ ମୋର ପରିଚୟ ଗୁପ୍ତ ଥିଲେ ବି ମାର୍ଚ୍ଚ ୩ ତାରିଖ ପରେ ତାହା ଆପଣ ପ୍ରକାଶ କରିପାରିବେ ।

ଆହ୍ୱାନକାରୀ

ଆହ୍ୱାନକାରୀଙ୍କର ଏହି ବିବରଣୀ ପରେ କୋଭୁର ତିନୋଟି ପ୍ରଶ୍ନ ଉଠାଇ ବିବୃତି ଦେଇଥିଲେ-

(୧) ଆହ୍ୱାନକାରୀ ନିଜର ଶକ୍ତି ପ୍ରଦର୍ଶନ ପୂର୍ବରୁ ପରିଚୟ ପ୍ରକାଶ କରିବା ଆବଶ୍ୟକ ; (୨) କ'ଣ ପ୍ରଦର୍ଶନ କରିବେ ତାହା ସ୍ପଷ୍ଟ କରିବା ଦରକାର; ଓ (୩) ମନ୍ଦିର ପ୍ରାଙ୍ଗଣରେ କରିବାକୁ ଯାହା ଲେଖିଛନ୍ତି ତା'ର ଆୟୋଜନ ବା ଆନୁଷଙ୍ଗିକ ଖର୍ଚ୍ଚ ବହନ କରିବା ଉଚିତ ।

କୋଭୁର ଏହି ସର୍ତ୍ତ ପ୍ରସଙ୍ଗରେ ଲେଖିଥିଲେ, "ଏହି ସର୍ତ୍ତ ଦେବାର ଉଦ୍ଦେଶ୍ୟ ହେଉଛି ସେହି ସ୍ଥାନରେ ଯେକୌଣସି ବ୍ୟକ୍ତି ନିଜକୁ ଆହ୍ୱାନକାରୀ ବୋଲି ଦାବି କରିପାରନ୍ତି । ସେହିପରି ଯେକୌଣସି ଘଟଣାକୁ କାକ-ତାଳୀୟ ନ୍ୟାୟରେ ଈଶ୍ୱରଙ୍କ ଅସ୍ତିତ୍ୱର ପ୍ରମାଣ ବୋଲି ଦାବି କରିପାରନ୍ତି । ବର୍ଷା ହେବା, ସୂର୍ଯ୍ୟଙ୍କୁ ବାଦଲ ଢାଙ୍କିବା, ପବନରେ ମୋର ମୁଣ୍ଡର ଟୋପିଟି ଉଡିଯିବା ଅଥବା ସେପରି କିଛି ସାଧାରଣ ଘଟଣାକୁ ଈଶ୍ୱରଙ୍କ କାର୍ଯ୍ୟ ବୋଲି ଅଭିହିତ କରିବା ସମ୍ଭାବନା ଦୃଷ୍ଟିରୁ ସେ କ'ଣ କରି ଈଶ୍ୱରଙ୍କର ଅସ୍ତିତ୍ୱର ପ୍ରମାଣ କରିବେ ତାହା ପ୍ରକାଶ କରିବା ଆବଶ୍ୟକ ।"

୨୪.୨.୬୯ରେ ଥିଷ୍ଟାନ କଲେଜ ପରିସରରେ ଏହି ପରୀକ୍ଷା କରିବାକୁ କୋଭୁର ଚାହିଁଥିଲେ । କିନ୍ତୁ ଆହ୍ୱାନକାରୀ ୩.୩.୬୯ରେ ରାଜମହାବିହାର ମନ୍ଦିର ପ୍ରାଙ୍ଗଣରେ ସାକ୍ଷାତ ପାଇଁ ବିବୃତି ଦେଲେ । ୨୭.୨.୬୯ରେ କୋଭୁର ମନ୍ଦିର କର୍ତ୍ତୃପକ୍ଷଙ୍କଠାରୁ ଜାଣିବାକୁ ପାଇଲେ ଯେ କୌଣସି ବ୍ୟକ୍ତି ସେମାନଙ୍କ ସହିତ ଯୋଗାଯୋଗ କରିନାହାନ୍ତି । ପୁନଶ୍ଚ ମନ୍ଦିର କର୍ତ୍ତୃପକ୍ଷ ଏଭଳି କୌଣସି ପ୍ରଦର୍ଶନର ପକ୍ଷପାତୀ ନୁହନ୍ତି । ଏହାପରେ "ଦି ଟାଇମସ" ଓ ଗଣମାଧ୍ୟମ ଜରିଆରେ ନିମ୍ନ ବିବୃତି କୋଭୁର ଦେଇଥିଲେ, "ଅଦ୍ୟାବଧି ଯେହେତୁ ଆହ୍ୱାନକାରୀ ନିଜର ପରିଚୟ ପ୍ରକାଶ କରିନାହାନ୍ତି ଓ ତାଙ୍କର ମନୋନୀତ ଉପାସନା ପୀଠର କର୍ତ୍ତୃପକ୍ଷଙ୍କୁ ସାକ୍ଷାତ କରି ତାହା ସଂରକ୍ଷଣ କରିନାହାନ୍ତି, ସୁତରାଂ ଯେଉଁ ଆଗ୍ରହୀ ବନ୍ଧୁମାନେ ମୋ ସହିତ ତାଙ୍କର ସମ୍ମୁଖୀନ ହେବାକୁ ଚାହୁଁଥିଲେ ପରବର୍ତ୍ତୀ ଘୋଷଣା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ମୁଁ ଅନୁରୋଧ କରୁଛି ।

"ହେତୁବାଦୀମାନେ ଖୋଲାଖୋଲି ଭାବରେ ଜ୍ଞାନ ସମ୍ପର୍କରେ ଆଲୋଚନା କରିବାବେଳେ ଈଶ୍ୱରଙ୍କର ପ୍ରତିନିଧିମାନେ ଗୁପ୍ତରେ ନିଜର ଜ୍ଞାନକୁ ଦେବାକୁ କାହିଁକି

ଆଗ୍ରହ କରନ୍ତି ? ଶେଷ ପର୍ଯ୍ୟନ୍ତ ନିଜକୁ ଗୋପନ ରଖିବାଦ୍ୱାରା ମୋର ବିଶ୍ୱାସ ହେଉଛି ଯେ କୌଣସି ବ୍ୟକ୍ତିଗତ ସମ୍ମାନ ନ ହରାଇ ଶେଷ ମୁହୂର୍ତ୍ତରେ ଆହ୍ୱାନକାରୀ ଖସିଯାଇ ପାରିବେ ।"

ନିର୍ଦ୍ଧାରିତ ଦିବସ ପରେ ଉଦ୍ୟମ କରି କୋଭୁର ଜାଣିବାକୁ ପାଇଲେ ଯେ ଭଦ୍ରଲୋକ ଜଣେ ୟୁରୋପୀୟ ଓ ସିନେମା ପ୍ରଯୋଜକ । ସେ ଭାବାତୀତ ଧ୍ୟାନ ସଂସ୍ଥା ସହିତ ମଧ୍ୟ ସଂଶ୍ଳିଷ୍ଟ । ତାଙ୍କର ପରିଚୟ ଜାଣିବା ପରେ କୋଭୁର ତଥାପି ଆଶାକଲେ ଯେ ଭଦ୍ରବ୍ୟକ୍ତି ତାଙ୍କ ପରି ହେତୁବାଦୀମାନଙ୍କୁ କୌଣସି ଅଲୌକିକ କାର୍ଯ୍ୟ ଦେଖାଇବାକୁ ଆଗେଇ ଆସିବେ । କିନ୍ତୁ ତାହା କେବେ ବି ସମ୍ଭବ ହେଲା ନାହିଁ ।

## ଅସଫଳ ଉଦ୍ୟମ :

ନେଭିଲ ଡି.ସିଲଭା ନିଜର ଦୂରବୋଧ ଶକ୍ତିର (Telepathic power) ସାମର୍ଥ୍ୟ ରହିଛି ବୋଲି ଦାବି କରିବା ସହିତ କୋଭୁର ଚାହିଁଲେ ସେ ତାହା ପ୍ରମାଣ ଦେବାକୁ ପ୍ରସ୍ତୁତ ବୋଲି ଘୋଷଣା କଲେ । ଫଳରେ "ଦି ଟାଇମସ ଅଫ ସିଲୋନ" ସମ୍ବାଦପତ୍ର କାର୍ଯ୍ୟାଳୟରେ କେତେକ ବରିଷ୍ଠ କର୍ମଚାରୀ ଓ ସମ୍ପାଦକଙ୍କ ଉପସ୍ଥିତିରେ ୧୫.୮.୬୭ଦିନ କୋଭୁର ଏକ ପରୀକ୍ଷାର ଆୟୋଜନ କରିଥିଲେ । ସାତୋଟି ପ୍ରସଙ୍ଗ ଉପରେ ସିଲଭା ଯେଉଁ ଉତ୍ତର ଦେଲେ, ତାହା ମଧ୍ୟରୁ କୋଣସି ଗୋଟିଏ ଉତ୍ତର ବି ଠିକ୍ ହୋଇନଥିଲା ।

ବାମ୍ବାତୁବାର ସି.ଡି. ଏତୁସୁରିୟା ସୂକ୍ଷ୍ମଦୃଷ୍ଟିର (Clairvoyance) ଅଧିକାରୀ ବୋଲି ଶ୍ରୀଲଙ୍କାର ଅନେକ ଲୋକ ବିଶ୍ୱାସ କରୁଥିଲେ । ବହୁ ବିଶିଷ୍ଟ ବ୍ୟକ୍ତି,ମନ୍ତ୍ରୀ, ସାଂସଦ ତାଙ୍କ ପାଖକୁ ଯାଇ ନିଜ ନିଜର ଭବିଷ୍ୟତ ସମ୍ପର୍କରେ ତାଙ୍କଠାରୁ ଜାଣିବାକୁ ପାଉଥିଲେ । ଭବିଷ୍ୟତ କଥା କହି ପାରୁଥିବା ସେହି ବ୍ୟକ୍ତି କୋଭୁରଙ୍କ ଆହ୍ୱାନକୁ ଗ୍ରହଣ କଲେ । ଏକ ମୁଦ ଲଫାପା ଭିତରେ ରହିଥିବା ଗୋଟିଏ ନୋଟର ନମ୍ବର ସେ କହିଦେଇ ପାରିବେ ବୋଲି ଦମ୍ଭୋକ୍ତି ପ୍ରକାଶ କଲେ । କୋଭୁର ତାହା ପରୀକ୍ଷା କରିବାକୁ ଚାହିଁବାରୁ ଏକ ଶୁଭଦିନ ଓ ମାହେନ୍ଦ୍ର ମୁହୂର୍ତ୍ତକୁ ଅପେକ୍ଷା କରିବାକୁ ସେ କହିଲେ । ବହୁଦିନ ପରେ ଶେଷରେ ଏକ ଶୁଭଦିନ ସ୍ଥିର ହେଲା । 'ଦବାସା' ସମ୍ବାଦ

ପତ୍ରର ସମ୍ପାଦକଙ୍କ ଉପସ୍ଥିତିରେ ଏହି ପରୀକ୍ଷାର ଆୟୋଜନ ହେଲା । ଏଡୁସୁରିୟା ପ୍ରଥମେ ପୁଜାରେ ବସି ସୂକ୍ଷ୍ମ ଦୃଷ୍ଟି ପ୍ରାପ୍ତ ହେଲାପରେ ମୁଦା ଲଫାପାରେ ଥିବା ଯେଉଁ ନମ୍ବରଟି କହିଲେ ତାହା ଲଫାପା ଭିତରେ ଥିବା ନୋଟ ସହ କୌଣସି ମେଳ ଖାଇଲା ନାହିଁ ।

ମନ୍ତ୍ର, ତନ୍ତ୍ର ବା ଗୁଣିଗାରେଡି ପ୍ରୟୋଗ କରି କୌଣସି ବ୍ୟକ୍ତିଙ୍କୁ ମାରି ଦେଇହେବ ବୋଲି ବିଶ୍ୱାସ କେତେକ ସମାଜରେ ବେଶ୍ ଜଣାଶୁଣା । ଏହି ପରିପ୍ରେକ୍ଷୀରେ କୌଣସି ମନ୍ତ୍ର ତନ୍ତ୍ର ପ୍ରୟୋଗ କରି କେହି ତାଙ୍କୁ ମାରିଦେଇ ପାରିବେ କି ବୋଲି କୋଭୁର ସିଂହଳୀ, ତାମିଲ ଓ ଇଂରାଜୀ ସମ୍ବାଦପତ୍ରମାନଙ୍କରେ ଗୁଣିଆଁ, କାପାଳିକ ଓ ତାନ୍ତ୍ରିକ ମାନଙ୍କୁ ଖୋଲା ଆହ୍ୱାନ ଦେଲେ । ସେ ଏହାପରେ ପଚାଶଟି ମନ୍ତ୍ର ଜନିତ ଲେଖା ଡାକଯୋଗେ ପାଇଲେ । ସେଗୁଡିକ ତାଳପତ୍ର, କାଗଜ ଓ ଏପରିକି ତମ୍ବା ପାତିଆରେ ଲେଖାଯାଇ ନାମ ଗୋପନ ରଖି ତାଙ୍କ ପାଖକୁ ପଠାଯାଇଥିଲା । ସମ୍ଭବତଃ ସେମାନଙ୍କର ବିଶ୍ୱାସ ଥିଲା ଯେ କୋଭୁର ସେମାନଙ୍କର ମନ୍ତ୍ର ପଢିବାପରେ ମୃତ୍ୟୁ ବରଣ କରିବେ । ଏସବୁ ଶ୍ରୀଲଙ୍କାର ବିଭିନ୍ନ ଅଞ୍ଚଳରୁ ତାନ୍ତ୍ରିକମାନଙ୍କ ଦ୍ୱାରା ତାଙ୍କ ପାଖକୁ ପଠାଯାଇଥିଲେ ବି କୌଣସିଟିର କିଛି ପ୍ରଭାବ ତାଙ୍କ ଉପରେ ପଡିନଥିଲା । ଅତି ପରିଣତ ବୟସ ପର୍ଯ୍ୟନ୍ତ ସେ ସୁସ୍ଥ ସବଳ ରହି ନିଜର କାର୍ଯ୍ୟ ସମ୍ପାଦନ କରୁଥିଲେ । ହୁଏତ ତାଙ୍କ ମୃତ୍ୟୁ ପରେ କେହି କେହି ତାନ୍ତ୍ରିକ ତାଙ୍କ ମନ୍ତ୍ରର ପ୍ରଭାବ ବିଳମ୍ବରେ ହେଲେ ବି କାର୍ଯ୍ୟକାରୀ ହେଲା ବୋଲି କହିବା ଅସମ୍ଭବ ନୁହେଁ ବୋଲି ସେ ଆଶଙ୍କା ପ୍ରକାଶ କରିଥିଲେ । କୋଭୁର ୭୮ ବର୍ଷର ଦୀର୍ଘ ଜୀବନ ବିତାଇ ଚତୁର୍ଥ ଥର ପାଇଁ ହୃଦରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁ ବରଣ କରିଥିଲେ ।

ସମ୍ପ୍ରତି ଆନ୍ତର୍ଜାତିକ ସ୍ତରରେ ଆଧିଦୈବିକ ଘଟଣାର ବୈଜ୍ଞାନିକ ବିଶ୍ଳେଷଣ ପାଇଁ ଏକ ଅନୁଷ୍ଠାନ ରହିଛି । ଏହି ଅନୁଷ୍ଠାନଟିର ନାମ ହେଉଛି- "ଆଧିଦୈବିକ ଘଟଣାର ବୈଜ୍ଞାନିକ ବିଶ୍ଳେଷଣ କମିଟି" (Committee for Scientific Investigation of Claims of the Paranormal) । ପୃଥିବୀର ବହୁ ପ୍ରବୀଣ ବୈଜ୍ଞାନିକ, ମନସ୍ତତ୍ତ୍ୱବିତ୍ ଓ କେତେକ ଯାଦୁକର ଏଥିରେ ସଂପୃକ୍ତ ରହିଛନ୍ତି । ଅଦ୍ୟାବଧି ଅନୁଷ୍ଠାନଦ୍ୱାରା ଅନୁସନ୍ଧାନ କରଯାଇଥିବା ସହସ୍ରାଧିକ ଘଟଣା ମଧ୍ୟରୁ କୌଣସି ଗୋଟିଏ ଘଟଣା ବି ପାରଲୌକିକ ବୋଲି ପ୍ରମାଣିତ ହୋଇପାରି ନାହିଁ ।

ଭାରତବର୍ଷରେ ଏହି ଆନ୍ତର୍ଜାତିକ ଅନୁଷ୍ଠାନର କେନ୍ଦ୍ର ମଧ୍ୟ ରହିଛି । ତାମିଲନାଡୁର ବିଶିଷ୍ଟ ହେତୁବାଦୀ ବି.ପ୍ରେମାନନ୍ଦ ଭାରତୀୟ ଶାଖାର ମୁଖ୍ୟ ରହିଛନ୍ତି । ତାଙ୍କଦ୍ୱାରା ପ୍ରକାଶିତ ମାସିକ ପତ୍ରିକା (Indian Sceptic) ଏ କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପଦକ୍ଷେପ । ବି ପ୍ରେମାନନ୍ଦଙ୍କର ଦେହାନ୍ତ ୪.୧୦.୨୦୦୯ ଦିନ ହେଲା । ତାଙ୍କର ଦେହାନ୍ତ ପରେ ଏହି ଆହ୍ୱାନକୁ କର୍ଣ୍ଣାଟକର ଡ. ନରେନ୍ଦ୍ର ନାୟକ ରଖିଛନ୍ତି । ସେ ହେଉଛି ଭାରତୀୟ ହେତୁବାଦୀ ମହାସଂଘର (Federation of Indian Rationalist Association) ସଭାପତି ।



# ଅଲୌକିକ ଶକ୍ତିର ଅଧିକାରୀ ବୋଲାଉଥିବା କେତେକ ବ୍ୟକ୍ତି

ବିଭିନ୍ନ ଧର୍ମଗ୍ରନ୍ଥ ଓ ପୁରାଣମାନଙ୍କରେ ଅଲୌକିକ ଓ ଆଧିଦୈବିକ ଘଟଣାର ବର୍ଣ୍ଣନା ଦେଖିବାକୁ ମିଳେ । ପାଣି ଉପରେ ଚାଲିବା, ପର୍ବତକୁ ଆଙ୍ଗୁଠିରେ ଟେକି ରଖିବା, ଜହ୍ନକୁ ଭାଙ୍ଗିଦେବା ଇତ୍ୟାଦି କାହାଣୀ ଗୁଡିକ ଖ୍ରୀଷ୍ଟିଆନ, ହିନ୍ଦୁ ଓ ମୁସଲିମମାନଙ୍କ ମଧ୍ୟରେ ଯଥାକ୍ରମେ ବେଶ୍ ପ୍ରଚଳିତ । ଏହି ଅଲୌକିକ କାର୍ଯ୍ୟଗୁଡିକ ଧର୍ମ ପ୍ରତିଷ୍ଠାତାମାନଙ୍କ ନାମରେ ଯୋଡିଦେବାର ଉଦ୍ଦେଶ୍ୟ ହେଉଛି ସେମାନଙ୍କୁ ଅସାଧାରଣ ବୋଲି ଲୋକମାନଙ୍କ ପାଖରେ ପ୍ରଚାର କରିବା । କିନ୍ତୁ ସେଗୁଡିକ ସତ୍ୟ ହୋଇଥିବା ମନେହୁଏ ନାହିଁ । କୌଣସି ବ୍ୟକ୍ତିଙ୍କର ମହନୀୟତା ଅଲୌକିକ ଶକ୍ତି ପ୍ରଦର୍ଶନରେ ନିହିତ ନ ଥାଏ । ବରଂ ତାଙ୍କର ଦିଗଦର୍ଶନ ଓ ମଣିଷ ଜାତି ପ୍ରତି ଅବଦାନ ତାଙ୍କୁ ସ୍ମରଣୀୟ କରି ରଖିଥାଏ । କିନ୍ତୁ କୌଣସି ବ୍ୟକ୍ତିଙ୍କର ମହନୀୟତା ତାଙ୍କର ଅଲୌକିକ ଶକ୍ତି ପ୍ରଦର୍ଶନ କରିବା ସହିତ ସଂଶ୍ଳିଷ୍ଟ ବୋଲି ଏକ ମାନସିକତା ସାଧାରଣ ଲୋକଙ୍କ ଭିତରେ ଦେଖାଯାଏ । ଅଲୌକିକତା ଯଦି ମହନୀୟତାର ମାନଦଣ୍ଡ ହୁଏ ତେବେ ଐନ୍ଦ୍ରଜାଲିକ କଳା ଓ ଯାଦୁବିଦ୍ୟା ଦେଖାଇ ପାରୁଥିବା ବ୍ୟକ୍ତିଗଣ ସବୁଠାରୁ ମହନୀୟ ବୋଲି ଗଣାହେବେ ।

ଠକାମି ଏକ ଧର୍ତ୍ତବ୍ୟ ଅପରାଧ ହୋଇଥିଲେ ବି ଧର୍ମର ଦ୍ୱାହି ଦେଇ ଜନଗଣଙ୍କୁ ବିଭ୍ରାନ୍ତ କରିବା କେତେକ ସମାଜରେ ଏକ ସାଧାରଣ ଘଟଣା ଅଟେ । ଭାରତ ବା ଶ୍ରୀଲଙ୍କା ପରି ରାଷ୍ଟ୍ରମାନଙ୍କରେ ଧର୍ମଗତ ସ୍ୱାଧୀନତା ରହିଥିବାରୁ କେତେକ ବ୍ୟକ୍ତି ଲୋକମାନଙ୍କର ଧର୍ମଗତ ଭାବପ୍ରବଣତାର ସୁଯୋଗ ନେଇ ସେମାନଙ୍କୁ ବେଶ୍ ଶୋଷଣ କରିଥାନ୍ତି । ସେମାନେ ସିଦ୍ଧ, ଯୋଗୀ, ଆଧ୍ୟାତ୍ମିକ ସାଧକ, ଅବତାର ବା ଅଲୌକିକ ଶକ୍ତିର ଅଧିକାରୀ ବୋଲି ଭାବନାକୁ ଅତି କୌଶଳତାର ସହ ଜନଗଣଙ୍କ ଭିତରେ ପ୍ରଚାର କରିଥାନ୍ତି । ସାଧାରଣ ଲୋକମାନଙ୍କ ଭିତରେ ଐଶ୍ୱରୀୟ କାର୍ଯ୍ୟ

ପ୍ରତି ଭୟ ଓ ଏସବୁରେ ଭାବପ୍ରବଣତା ରହିଥିବାରୁ ସେମାନେ ତଥାକଥିତ ଦେବପୁରୁଷମାନଙ୍କର ବାଣୀକୁ- ତାହା ଯେତେ ଅହେତୁକ ମନେ ହେଲେ ବି- ବିଶ୍ୱାସ କରିଥାନ୍ତି । ପିଲାଟି ବେଳରୁ ନିଜର ବୃହତ୍ତର ସାମାଜିକ ପରିବେଶରୁ ପାଇଥିବା ବିଶ୍ୱାସ ଗୁଡିକୁ ପରିହାର କରି ଅନୁସନ୍ଧିତ୍ସୁ ହେବା ସମସ୍ତଙ୍କ ପାଖରେ ସମ୍ଭବ ହୁଏ ନାହିଁ । ତଥାକଥିତ ଦେବପୁରୁଷ ଓ ସେମାନଙ୍କର କୁଶଳୀ ଭକ୍ତମାନେ ଜନମାନସରେ ଯେଉଁ ଭାବନା ପ୍ରଚାର କରନ୍ତି ସମାଜର ଅନେକ ଲୋକ ସେସବୁକୁ ଅନାୟାସରେ ବିଶ୍ୱାସ କରନ୍ତି । କିନ୍ତୁ ସମାଜର କେତେକ ଅନୁସନ୍ଧିତ୍ସୁ ବ୍ୟକ୍ତି ଅଲୌକିକତାକୁ ସନ୍ଦେହ କରନ୍ତି ଓ ସେସବୁର ବସ୍ତୁନିଷ୍ଠ ପରୀକ୍ଷଣ ପାଇଁ ଆଗ୍ରହ ଦେଖାଇଥାନ୍ତି । କୋଭୁର ସଚେତନ ହେବା ପରଠୁ ଏକ ଅନୁସନ୍ଧିତ୍ସୁ ମନ ନେଇ ଜୀବନସାରା ଏ କ୍ଷେତ୍ରରେ ମନନ, ପରୀକ୍ଷା ନିରୀକ୍ଷା ଓ ଗବେଷଣା କରିଛନ୍ତି । ପୂର୍ବ ପରିଚ୍ଛେଦରେ କୌଣସି ଅଲୌକିକ କ୍ରିୟା ପ୍ରଦର୍ଶନ କରିବା ପାଇଁ ସେ ଅବତାର, ଦେବପୁରୁଷ ବା ଅଲୌକିକ ଶକ୍ତିର ଅଧିକାରୀ ବୋଲାଉଥିବା ବ୍ୟକ୍ତିମାନଙ୍କୁ ଖୋଲାଖୋଲି ଆହ୍ୱାନ ଦେବା ଆଲୋଚନା ହୋଇଛି ।

ଏହି ପୃଷ୍ଠଭୂମିରେ ଯେଉଁ ବ୍ୟକ୍ତିମାନେ ଦେବପୁରୁଷ, ଅବତାର,ସିଦ୍ଧ ଇତ୍ୟାଦି ଭାବରେ ଲୋକମାନଙ୍କ ଭିତରେ ଆଦୃତ ହୋଇଛନ୍ତି ତାର ସାମାଜିକ କାରଣ ସୁବୁକୁ ଅନୁଧ୍ୟାନ କରାଯାଇପାରେ । ବେଳେବେଳେ ଦେବପୁରୁଷମାନେ କେତେକ ତାତ୍ତ୍ୱିକ ଓ ଦୁର୍ବୋଧ୍ୟ ଶବ୍ଦ ପ୍ରୟୋଗ କରି ଚିନ୍ତା ସ୍ତରରେ ଅସ୍ପଷ୍ଟତା ସୃଷ୍ଟି କରିଥାନ୍ତି । ଶବ୍ଦର ଇନ୍ଦ୍ରଜାଲ ଭିତରେ କେତେକ ଦୁର୍ବୋଧ୍ୟ ଚିନ୍ତାକୁ ବେଶ୍ ଚମତ୍କାର ଭାବରେ ନିଜର ଲେଖା ବା ଭାଷଣ ଜରିଆରେ ବ୍ୟକ୍ତ କରିଥାନ୍ତି । ପରମ ସତ୍ତା, ପରମ ସତ୍ୟ, ମହାନିର୍ବାଣ,ଭାବାତୀତ ଧ୍ୟାନ, ଦିବ୍ୟ ଆଲୋକ, ଅତି ମାନସ ଅବତରଣ, ସମର୍ପିତ ପ୍ରାଣ, ଦିବ୍ୟାନୁଭୂତି, ଶାଶ୍ୱତ ଚେତନା ପରି ଶବ୍ଦ ଗୁଡିକ ବେଶ୍ ଶ୍ରୁତି ମଧୁର ହେଲେ ବି ସେଗୁଡିକର ପ୍ରତ୍ୟୟଗତ ବୋଧଗମ୍ୟତା ଅସ୍ପଷ୍ଟ ମନେହୁଏ । ଏହି ଶବ୍ଦଗୁଡିକ ମାଧ୍ୟମରେ ସେମାନେ ସାଧାରଣ ଲୋକଙ୍କର ମନସ୍ତତ୍ତ୍ୱକୁ ଆକୃଷ୍ଟ କରିଥାନ୍ତି । ସେହିପରି କେତେକ ଦେବପୁରୁଷ କିଛି ଐନ୍ଦ୍ରଜାଲିକ କଳା ଓ ଯାଦୁ ମାଧ୍ୟମରେ ସେମାନେ ଯେ ଅଲୌକିକ ଶକ୍ତିର ଅଧିକାରୀ ଏହି ବିଶ୍ୱାସ ଲୋକମାନଙ୍କ ଭିତରେ ସୃଷ୍ଟି କରିଥାନ୍ତି । ଏଥିପାଇଁ କେତେକ କିଛି ଅନୁଗତ ଭକ୍ତ ଓ ଗଣମାଧ୍ୟମକୁ ବ୍ୟବହାର କରିଥାନ୍ତି । ସେମାନେ କେତେକ ସାହିତ୍ୟ ସୃଷ୍ଟିକରି ତାହା ଭକ୍ତମାନଙ୍କ ମାଧ୍ୟମରେ

ପ୍ରସାର କରିଥାନ୍ତି ଓ ବୈଜ୍ଞାନିକ ପରୀକ୍ଷାକୁ ସର୍ବଦା କୌଶଳତାର ସହ ଏଡାଇ ଚାଲିଥାନ୍ତି । ନିଜର ପ୍ରତିଷ୍ଠା ଅନୁସାରେ ସେମାନେ ଦାତବ୍ୟ ଅନୁଷ୍ଠାନ ମାନ କରି ସମାଜର ଦୃଷ୍ଟି ଆକର୍ଷଣ କରନ୍ତି ।

ସରଳ ବିଶ୍ୱାସୀ ଲୋକମାନେ ଦେବପୁରୁଷମାନଙ୍କର ଦୁର୍ବୋଧ୍ୟ ତାତ୍ତ୍ୱିକ ବକ୍ତବ୍ୟ, ହାତ ସଫେଇ କଳା ଓ ପ୍ରଚାରଦ୍ୱାରା ବିମୋହିତ ହୋଇଥାନ୍ତି । ସେମାନଙ୍କର ମାନସିକତାକୁ ଏହା ଏପରି ପ୍ରଭାବିତ କରିଥାଏ ଯେ ସେମାନେ ସ୍ଥଳ ବିଶେଷରେ ଏକ ବା ଏକାଧିକ ଦେବପୁରୁଷଙ୍କର ଭକ୍ତ ହୋଇପଡନ୍ତି । ସାଧାରଣ ଲୋକ ପାଖରେ ସ୍ୱାଧୀନ ଚିନ୍ତାର ଅଭାବ ଓ ପିଲାଟି ଦିନରୁ ତାର ଅବଚେତନ ମନରେ ରହି ଆସିଥିବା ବିଶ୍ୱାସ ଏଥିପାଇଁ ଅନୁକୂଳ ହୋଇଥାଏ । ଏପରିକି ସମାଜର ପ୍ରତିଷ୍ଠିତ ଓ ଉଚ୍ଚପଦ ପଦବୀରେ ଥିବା ବ୍ୟକ୍ତି ଓ କେତେକ ବୈଜ୍ଞାନିକ ମଧ୍ୟ ତଥାକଥି ଦେବପୁରୁଷଙ୍କର ଭକ୍ତ ହୋଇଥିବା ଯୋଗୁଁ ସାଧାରଣ ଲୋକମାନଙ୍କୁ ତାହା ପ୍ରଭାବିତ କରିଥାଏ । ଜଣେ ଜଣେ ଦେବ ପୁରୁଷଙ୍କୁ ନେଇ ଗଢି ଉଠିଥିବା ବଡ ବଡ ସଂଗଠନ ଓ ସେମାନଙ୍କର ସହସ୍ରାଧିକ ଭକ୍ତ ଏହିପରି ନାନା କାରଣ ଯୋଗୁଁ ସମ୍ଭବପର ହୋଇଛି । ମଣିଷର ଚିନ୍ତାରାଜ୍ୟକୁ ସେପରି କିଛି ମୌଳିକ ଅବଦାନ ଦେଇ ନଥିବା ଏହି ବ୍ୟକ୍ତିଗଣ ନିଜର ସାମ୍ରାଜ୍ୟ ପ୍ରତିଷ୍ଠା କରି ସେଥିରେ ନିଜକୁ ଅବତାର ବୋଲି ଜାହିର କରିଥାନ୍ତି । କେତେକ ବୈଜ୍ଞାନିକ ବିଜ୍ଞାନାଗାରରେ ବିଜ୍ଞାନର ତଥ୍ୟକୁ ଗ୍ରହଣ କରୁଥିଲେ ମଧ୍ୟ ବ୍ୟକ୍ତିଗତ ଜୀବନରେ ନାନା ଅବୈଜ୍ଞାନିକ ଧାରଣାକୁ ପୋଷଣ କରିଥାନ୍ତି । ବିଜ୍ଞାନରେ ଉଚ୍ଚତର ଉପାଧି ଲାଭ କରିବା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ରଖିବା ମଧ୍ୟରେ ପାର୍ଥକ୍ୟ ରହିପାରେ । ଜଣେ ବୈଜ୍ଞାନିକ ହୋଇ ମଧ୍ୟ ଜୀବନର ପ୍ରତ୍ୟେକଟି ବ୍ୟାପାରରେ ବୈଜ୍ଞାନିକ ଦୃଷ୍ଟିକୋଣ ପୋଷଣ କରି ନ ପାରନ୍ତି, ଅଥଚ ବିଜ୍ଞାନ ସଂକ୍ରାନ୍ତରେ କୌଣସି ଅଧ୍ୟୟନ ନଥାଇ ମଧ୍ୟ ଜଣେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ରଖିପାରନ୍ତି । ସ୍ଥଳ ବିଶେଷରେ କେତେକ ବୈଜ୍ଞାନିକ ଦେବପୁରୁଷ ମାନଙ୍କର ଯାଦୁକୁ ଆଧାତ୍ମିକ ଶକ୍ତି ବୋଲି ଭାବିବାର ବି ନାନା ଦୃଷ୍ଟାନ୍ତ ଦେଖିବାକୁ ମିଳେ । କୋଭୁର ଏହିପରି କେତେକ ବୈଜ୍ଞାନିକଙ୍କ ସହ ମୁକାବିଲା କରିଛନ୍ତି ।

ସଂପ୍ରତି ବିଜ୍ଞାନର ବହୁଳ ବିକାଶ ସତ୍ତ୍ୱେ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ଆଶାନୁରୂପ ହୋଇନାହିଁ । ଫଳରେ ସାମାଜିକ ପରିବେଶରେ କୁସଂସ୍କାର ଓ ଅଲୌକିକ

ବିଶ୍ୱାସ ଯଥେଷ୍ଟ ରହିଛି । ଅନୁକୂଳ ସାମାଜିକ ପରିବେଶ ଓ ନାନା ମନସ୍ତାତ୍ତ୍ୱିକ କାରଣ ଯୋଗୁଁ ଦେବପୁରୁଷ ମାନଙ୍କର ପ୍ରଭାବ ବିସ୍ତାର ଲାଭ କରିଛି । ସମ୍ବାଦପତ୍ର ଓ ଗଣମାଧ୍ୟମ ଦ୍ୱାରା ସେମାନେ ନିଜର ପ୍ରଭାବକୁ ବୃଦ୍ଧି କରିପାରୁଛନ୍ତି । ଏହି ପ୍ରସଙ୍ଗରେ କେତେକ ଦେବପୁରୁଷଙ୍କ ସହ କୋଭୁରଙ୍କର ମୁକାବିଲା ବିଚାର୍ଯ୍ୟ ।

**ୟୁରିଗେଲର:** ଇସ୍ରାଏଲର ୟୁରିଗେଲର ଜଣେ ପ୍ରସିଦ୍ଧ ବ୍ୟକ୍ତିଭାବରେ ପରିଚିତ । ଏକଦା ଆମେରିକା ଓ ୟୁରୋପର କେତେକ ସଭ୍ୟ ରାଷ୍ଟ୍ରମାନଙ୍କରେ ତାଙ୍କର ଅଗଣିତ ସ୍ତାବକ ଥିଲେ । ନିଜର ମାନସିକ ଶକ୍ତି ଅଚିନ୍ତନୀୟ ଭାବରେ ବେଶି ବୋଲି ଧାରଣା ସୃଷ୍ଟି କରିବାରେ ସେ ସମର୍ଥ ହୋଇଥିଲେ । ଚାମଚ, ଚାବି, ଲୁହାକଣ୍ଟା ଇତ୍ୟାଦି କଠିନ ବସ୍ତୁମାନଙ୍କୁ ଦୃଷ୍ଟି ଶକ୍ତି ପ୍ରୟୋଗ କରି ସେ ବଙ୍କା କରିଦେଇ ପାରୁଥିଲେ । ଲେନ୍ସକୁ ନିବୁଜ ଖୋଳ ଭିତରେ ରଖି ତାହା ସାହାଯ୍ୟରେ ସେ ଫଟୋ ଉଠାଇ ପାରୁଥିଲେ । କୌଣସି ଖୋଳ ଭିତରେ ଥିବା ଚିତ୍ରକୁ ନଦେଖି ସେ ତାହା ଅଙ୍କନ କରି ଦେଉଥିଲେ । ସେ ଏପରି ଅଲୌକିକ ମାନସିକ ଶକ୍ତିର ଅଧିକାରୀ ବୋଲି ଭାବନା ସୃଷ୍ଟି ହୋଇଥିଲା । ନ୍ୟୁୟର୍କର ଡଃ ଆନ୍ଦ୍ରିଜା ପୁହାରିଚ ୟୁରିଗେଲରଙ୍କ ଏକ ଜୀବନୀ ଲେଖି ତାଙ୍କର ଅଲୌକିକ ସାମର୍ଥ୍ୟ ସଂକ୍ରାନ୍ତରେ ନାନା କାହାଣୀ ଉଲ୍ଲେଖ କରିଥିଲେ । ଏପରିକି ପୃଥିବୀଠାରୁ ଆଲୋକ ବର୍ଷ ଦୂରରେ ଥିବା କୌଣସି ବସ୍ତୁକୁ ନିଜର ମାନସିକ ଶକ୍ତିଦ୍ୱାରା ଜାଣିବାକୁ ସମର୍ଥ ବୋଲି ତାଙ୍କର ଜୀବନୀ ଲେଖକ ଡଃ ପୁହାରିଚ ଉଲ୍ଲେଖ କରିଥିଲେ । ଆମେରିକାରୁ ପ୍ରକାଶ ପାଉଥିବା କେତେକ ବିଜ୍ଞାନ ପତ୍ର ପତ୍ରିକାରେ ୟୁରିଗେଲରଙ୍କର ସାମର୍ଥ୍ୟ ବିଷୟରେ ନାନା କାହାଣୀ ପ୍ରକାଶ ପାଇଥିଲା । କେତେକ ବୈଜ୍ଞାନିକଙ୍କୁ ସେ କୌଶଳତାର ସହ ନିଜର ଅଲୌକିକ ସାମର୍ଥ୍ୟ ଦେଖାଇ ଆଶ୍ଚର୍ଯ୍ୟ କରିଥିଲେ । ଆମେରିକାର ବିଶିଷ୍ଟ ମହିଳା ସାମ୍ବାଦିକ ବାର୍ବରା ଓ୍ୱାଲଟର୍ସ ତାଙ୍କର ମାନସିକ ସାମର୍ଥ୍ୟ ଓ ଅଲୌକିକ ଶକ୍ତିକୁ ନେଇ ଏକ ଚଳଚିତ୍ର କରିଥିଲେ । ଏହାଦ୍ୱାରା ୟୁରିଗେଲର ଜଣେ ଅଲୌକିକ ବ୍ୟକ୍ତି ବୋଲି ଧାରଣା କେତେକ ପାଶ୍ଚାତ୍ୟ ଦେଶରେ ସୃଷ୍ଟି ହୋଇଥିଲା ।

ପୃଥିବୀ ପ୍ରସିଦ୍ଧ ଆମେରିକାର ଯାଦୁକର ଜେମସ୍ ରେଣ୍ଡି 'ୟୁରିଗେଲରଙ୍କର ଯାଦୁ' ନାମରେ ଏକ ପୁସ୍ତକ ଲେଖିଲେ । ସେହି ବହିର ଏକ କପି କୋଭୁରଙ୍କୁ ଉତ୍ସର୍ଗ କରି ଲେଖିଥିଲେ, "ଆପଣ ଅହେତୁକ ବିଶ୍ୱାସକୁ ଦୂର କରିବା ପାଇଁ ଯେଉଁ ସଂଗ୍ରାମ

ଚଳାଇଛନ୍ତି ତାର ସ୍ୱୀକୃତି ସ୍ୱରୂପ ଏହି ପୁସ୍ତକ ଆପଣଙ୍କୁ ପଠାଇଲି । ମୋର ବିଶ୍ୱାସ ୟୁରିଗେଲରଙ୍କୁ ନେଇ ଯେଉଁ ଧାରଣା ସୃଷ୍ଟି ହୋଇଛି ତାହା ଦୂର କରିବାକୁ ଆପଣ ସମର୍ଥ ହେବେ ।" ଏହାପରେ ବିଭିନ୍ନ ଦେଶର ଗଣମାଧ୍ୟମ ଜରିଆରେ କୋଭୁର ୟୁରିଗେଲରଙ୍କୁ ଆହ୍ୱାନ ଦେଲେ । କୌଣସି ପ୍ରକାରର ଠକାମି ନ ରଖି ଯଦି ଖୋଲାଖୋଲି ଭାବରେ ସେ ତାଙ୍କ ସମ୍ମୁଖରେ କିମ୍ବା ତାଙ୍କ ମନୋନୀତ ବ୍ୟକ୍ତି ନୋବେଲ୍ ପୁରସ୍କାର ପ୍ରାପ୍ତ ବୈଜ୍ଞାନିକ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ପ୍ରଫେସର ହେନି ଆଲଫେନ୍‌ଙ୍କ ପାଖରେ ତାଙ୍କର ଅଲୌକିକ ଶକ୍ତିର ପ୍ରମାଣ ଦେଇପାରିବେ ତେବେ ସେ ତାଙ୍କୁ ୧୬ ହଜାର ଡଲାର ବା ଶ୍ରୀଲଙ୍କା ମୁଦ୍ରାରେ ଏକ ଲକ୍ଷ ଟଙ୍କା ଦେବେ । ୟୁରିଗେଲର କୋଭୁରଙ୍କର ଆହ୍ୱାନ ଗ୍ରହଣ ନକରିବାରୁ ତାଙ୍କ ଉପରେ ଚଳଚିତ୍ର ନିର୍ମାଣ କରିଥିବା ବାର୍ବରା ୱାଲଟର୍ସ ୧୫.୨.୭୫ରେ ଶ୍ରୀଲଙ୍କା ଆସି କୋଭୁରଙ୍କ ସହ ସାକ୍ଷାତ କଲେ । କୋଭୁର ୟୁରିଗେଲର ଦେଖାଉଥିବା ଅଲୌକିକ ମାନସିକ ସାମର୍ଥ୍ୟର କୌଶଳ ଗୁଡିକ ୱାଲଟର୍ସ ଓ ତାଙ୍କର ବ୍ୟକ୍ତିଗତ ସଚିବଙ୍କୁ ଦେଖାଇ ଆଶ୍ଚର୍ଯ୍ୟ କରି ଦେଇଥିଲେ । କୋଭୁରଙ୍କର ଏହି ଅଲୌକିକ କାର୍ଯ୍ୟ ଦେଖି (ଯାହା ସେ ୟୁରିଗେଲରଙ୍କ ପାଖରେ ଦେଖିଥିଲେ) ବାର୍ବରା ସ୍ତମ୍ଭୀଭୂତ ହେବା ସହିତ ତାଙ୍କ ସହ ଆମେରିକା ଯିବାକୁ ତାଙ୍କୁ ଅନୁରୋଧ କରିଥିଲେ । ଏହା ସହିତ ଏହା ମଧ୍ୟ କହିଥିଲେ ଯେ ତାଙ୍କ ସହିତ ଯାଇ ଯଦି ସେହିସବୁ ଅଲୌକିକ କାର୍ଯ୍ୟ ଦେଖାଇବେ, ତେବେ ଆମେରିକାରେ ଅପର୍ଯ୍ୟାପ୍ତ ଅର୍ଥ ପାଇବା ସହ ଅନେକ ଶିଷ୍ୟ ସୃଷ୍ଟି କରିପାରିବେ ।

ଯେତେବେଳେ ୟୁରିଗେଲରଙ୍କର ତଥାକଥିତ ଅଲୌକିକ ଶକ୍ତି ଏକ ହାତ ସଫେଇ ବୋଲି ଜଣାପଡିଲା ସେ ଜନମାନସକୁ ବିଭ୍ରାନ୍ତ କରିଥିବାରୁ ତାଙ୍କ ଦେଶର ଆଇନଦ୍ୱାରା ଅଭିଯୁକ୍ତ ହୋଇ ଦଣ୍ଡିତ ହୋଇଥିଲେ ।

**ପାଣ୍ଡିମୋଲାଇ ସ୍ୱାମୀଗଲ :** ବମ୍ବେରୁ ପ୍ରକାଶ ପାଉଥିବା ସାପ୍ତାହିକ ପତ୍ରିକା 'ଭାରତ ଜ୍ୟୋତି'ରେ ଶ୍ରୀ ପାଣ୍ଡିମୋଲାଇ ସ୍ୱାମୀଗଲଙ୍କର ଅଲୌକିକ ଶକ୍ତି ସମ୍ପର୍କରେ ତିନିଜଣ ବିଶିଷ୍ଟ ବ୍ୟକ୍ତି ତିନୋଟି ସଂଖ୍ୟାରେ ପ୍ରବନ୍ଧମାନ ପ୍ରକାଶ କରିଥିଲେ । ପତ୍ରିକାର ସମ୍ପାଦକ ଏ.ବି.ନାୟାର ନିଜେ "କେତେକ ସ୍ମରଣୀୟ ଅନୁଭୂତି" ଶିରୋନାମାରେ ପ୍ରବନ୍ଧଟିଏ ଲେଖିଥିଲେ । ସେହିପରି ଶ୍ରୀ ସି.କେ.ନାରାୟଣସ୍ୱାମୀ

"ଆଧ୍ୟାତ୍ମିକ ଶକ୍ତିର ରହସ୍ୟ" ଓ ଶ୍ରୀ ବାମନରାଓ ରାଣେ "ଯେଉଁଠି ବିଜ୍ଞାନ ହାର ମାନେ" ଶୀର୍ଷକ ଲେଖା ପ୍ରକାଶ କରିଥିଲେ । ପ୍ରତ୍ୟେକ ଲେଖକ ସ୍ୱାମୀଗଲଙ୍କର ରହିଥିବା ଅଲୌକିକ ଓ ଆଧ୍ୟାତ୍ମିକ ଶକ୍ତି ସମ୍ପର୍କରେ ଲେଖିଥିଲେ । ଜଣେ ପାଠକ ଭି.ଏ. ମେନନ ଏହି ଲେଖାଗୁଡିକ ପଠାଇ ଏହି ଦେବପୁରୁଷଙ୍କ ସମ୍ପର୍କରେ କୋଭୁରଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଲେଖା ଗୁଡିକରେ ବର୍ଣ୍ଣିତ ହୋଇଥିବା ଅନେକ ଅଲୌକିକ କାହାଣୀକୁ ପଢି ୪.୫.୭୧ରେ ସମ୍ପାଦକଙ୍କୁ ନିଜର ମନ୍ତବ୍ୟ ଦେଇ କୋଭୁର ଏହି ପ୍ରକାର ଲେଖିଥିଲେ ।

ପ୍ରିୟ ମହାଶୟ,

ଆପଣଙ୍କର ପତ୍ରିକାରେ ଶ୍ରୀ ଶ୍ରୀ ପାଣ୍ଡିମୋଲାଇ ସ୍ୱାମୀଗଲଙ୍କ ସମ୍ପର୍କରେ ପ୍ରକାଶ ପାଇଥିବା ଲେଖା ପଢି ବିସ୍ମିତ ହେଲି । ସେହି ଲେଖା ଗୁଡିକରେ ଉଲ୍ଲେଖ ଥିବା କେତେକ ପ୍ରସଙ୍ଗ ଉପରେ ମୁଁ ମୋର ମନ୍ତବ୍ୟ ଦେଉଛି । ଆପଣ ଯଦି ଏହା ପ୍ରକାଶ କରନ୍ତି ତେବେ ପାଠକମାନେ ଏହା ଜାଣିବାର ଅବକାଶ ପାଇବେ । ପ୍ରକାଶିତ ଲେଖା ଓ ତା ଉପରେ ମୋର ମନ୍ତବ୍ୟକୁ ମୁଁ କ୍ରମିକ ନମ୍ବର ଦେଇ ଉଲ୍ଲେଖ କରୁଛି ।

(୧) "ଧନ, ସୁନାମ ଇତ୍ୟାଦି ଲାଭ କରିବା ପାଇଁ କେତେକ ହୁଏତ ଅଲୌକିକ କ୍ରିୟା ଦେଖାଇ ପାରିଥାନ୍ତି, କିନ୍ତୁ ସେସବୁ ବାସ୍ତବ ଅଲୌକିକ ଶକ୍ତିଠାରୁ ପୃଥକ ଅଟେ । କେତେକ ଦେବପୁରୁଷ ଅଛନ୍ତି ଯେଉଁମାନେ ଯଥାର୍ଥରେ ଅଲୋକିକ ଶକ୍ତିର ଅଧିକାରୀ । ସେମାନଙ୍କର ଅଲୌକିକ କ୍ରିୟା ପ୍ରଦର୍ଶନ କରିବାର ଉଦ୍ଦେଶ୍ୟ ହେଉଛି ଅନ୍ୟମାନଙ୍କୁ ପରିବର୍ତ୍ତନ କରିବା ଓ ସେମାନଙ୍କ ଭିତରେ ଆଧ୍ୟାତ୍ମିକ ଚେତନା ସୃଷ୍ଟି କରିବା ।"

ମୁଁ ଆପଣଙ୍କର ଏହି ମନ୍ତବ୍ୟ ସହିତ ଏକମତ । କିନ୍ତୁ ହାତ ସଫେଇ କଳା ଓ ଅଲୌକିକତା ଭିତରେ ପାର୍ଥକ୍ୟ ଦେଖାଇବା ପାଇଁ ବୈଜ୍ଞାନିକ ପଦ୍ଧତିରେ ପରୀକ୍ଷା କରାଯିବା ଉଚିତ ନୁହେଁ କି ?

(୨) "ବିଶ୍ୱାସ ତର୍କ ବୁଦ୍ଧିର ଉର୍ଦ୍ଧ୍ୱରେ । ବୈଜ୍ଞାନିକ ପଦ୍ଧତିରେ ସବୁ ବିଷୟକୁ ବୁଝାଇହେବ ନାହିଁ । ବିଜ୍ଞାନର ଉର୍ଦ୍ଧ୍ୱରେ ଆମକୁ ଅନେକ କିଛି ବିଶ୍ୱାସ କରିବାକୁ ହେବ ।"

ଯଦି ବି ବିଶ୍ୱାସକୁ ବିଚାରଶୀଳ ତର୍କବୁଦ୍ଧିର ଉର୍ଦ୍ଧ୍ୱରେ ରଖାଯାଏ, ତଥାପି ବିଶ୍ୱାସ ସତ୍ୟର ଉର୍ଦ୍ଧ୍ୱରେ ରହିବା ଉଚିତ କି ? ଅସତ୍ୟରେ ବିଶ୍ୱାସ କୁସଂସ୍କାର ନୁହେଁ କି ?

(୩) "ଆମର ପୁଣ୍ୟଭୂମି ଭାରତବର୍ଷରେ ସବୁ ସମୟରେ ବହୁ ସାଧୁ ଓ ଯୋଗୀଙ୍କର ଆବିର୍ଭାବ ହୋଇଛି । ଏହି ମହାମାନବମାନେ ଆମ ଦେଶକୁ ପବିତ୍ର କରିଛନ୍ତି । ଆଜି ମଧ୍ୟ ଅନେକ ଦେବପୁରୁଷ ଆମର ଏହି ପବିତ୍ର ଭୂମିରେ ରହିଛନ୍ତି । ସେହିମାନେ ସେମାନଙ୍କର ଅଲୌକିକ ଶକ୍ତି ସାହାଯ୍ୟରେ ଆଧିଭୌତିକ ଶକ୍ତିର ପ୍ରଦର୍ଶନ କରିଥାନ୍ତି । ନାସ୍ତିକ ଓ ସନ୍ଦେହୀ ବ୍ୟକ୍ତିମାନଙ୍କର ସଂସ୍କାର କରି ମଣିଷ ଜାତିକୁ ଈଶ୍ୱରୀୟ ଚେତନାରେ ଉଦ୍‌ବୁଦ୍ଧ କରନ୍ତି ।"

କେବଳ ଭାରତବର୍ଷରେ ଦେବପୁରଷମାନେ ଜନ୍ମଗ୍ରହଣ କରି ଯେ ଅଲୌକିକ କ୍ରିୟା ଦେଖାଇଛନ୍ତି ତାହା ନୁହେଁ । ଗୋଟିଏ ଖ୍ରୀଷ୍ଟିଆନ ପରିବାରରେ ଲାଳିତ ପାଳିତ ହୋଇଥିବା ଯୋଗୁଁ ବାଇବେଲରେ ବର୍ଣ୍ଣିତ ଥିବା କାହାଣୀ ଗୁଡିକୁ ମୁଁ ମଧ୍ୟ ବିଶ୍ୱାସ କରୁଥିଲି । ପିଲାଟିବେଳେ ସାନ୍ତାକ୍ଲଜଙ୍କର ଅଲୌକିକ କାର୍ଯ୍ୟକୁ ବିଶ୍ୱାସ କରି ଭାବୁଥିଲି ଯେ ପବିତ୍ର ଖ୍ରୀଷ୍ଟମାସ ରାତ୍ରିରେ ମୋ ପ୍ରକୋଷ୍ଠରେ ପ୍ରବେଶ କରି ସେ ମୋ ପାଇଁ ଉପହାର ଆଣିଦେବେ । ଯଦି ସେହି କଥାରେ ମୁଁ ଏବେ ବିଶ୍ୱାସ ସ୍ଥାପନ କରେ ତେବେ ଆପଣ ମୋତେ ଏକ ଅନ୍ଧବିଶ୍ୱାସୀ ବ୍ୟକ୍ତି କହିବେ ନାହିଁ କି ? ପୃଥିବୀର ଅଧିକାଂଶ ଧର୍ମ ପୁସ୍ତକ ମାନଙ୍କରେ ସେହି ସେହି ଧର୍ମମାନଙ୍କର ଈଶ୍ୱରମାନେ ବା ଦେବପୁରୁଷ ମାନେ ନାନା ଅଲୌକିକ କ୍ରିୟା କରିବାର ବର୍ଣ୍ଣନା ଦେଖିବାକୁ ମିଳେ । ସେ ସମୟରେ ଅଲୌକିକ କ୍ରିୟାକୁ ସଂପ୍ରତି ଆମେ ପରୀକ୍ଷା କରିପାରିବା ନାହିଁ । କିନ୍ତୁ ସାଂପ୍ରତିକ ଯୁଗରେ ଅଗଣିତ ଦେବପୁରୁଷଗଣ ସଂଶୟବାଦୀମାନଙ୍କୁ ପରିବର୍ତ୍ତନ କରିବା ପାଇଁ ଯେଉଁ ଅଲୌକିକ କ୍ରିୟା ଦେଖାଉଛନ୍ତି ତାହାର ଯଥାର୍ଥତାକୁ ପରୀକ୍ଷା କରାଯିବା ସମୀଚୀନ ନୁହେଁ କି ?

(୪) "ଯାହାକୁ ଆମେ ବୋଧଗମ୍ୟ କରିପାରୁ ନାହୁଁ ସେ ସବୁକୁ ଆମେ ପରିହାର କରିବା ଠିକ୍ ନୁହଁ । ଆମ ଭିତରେ ଏବେ ବି ଦେବ ପୁରୁଷମାନେ ରହିଛନ୍ତି ଯେଉଁମାନେ ନିଜର ସଂଯମ, ଆତ୍ମଶକ୍ତି ଓ ସିଦ୍ଧିଦ୍ୱାରା ଅଚିନ୍ତନୀୟ ଘଟଣା ସୃଷ୍ଟି କରିପାରୁଛନ୍ତି ।"

ଯାହାକୁ ଆମେ ବୁଝି ପାରୁନାହେଁ, ତାହାକୁ ଆମେ ପୂଜା କରିବା କି ? ବିଶିଷ୍ଟ ଯାଦୁକର ଭାଗ୍ୟନାଥ ଏପରି ଆଶ୍ଚର୍ଯ୍ୟଜନକ ଖେଳ ଦେଖାଇପାରନ୍ତି ଯାହାକୁ ଆମେ ସାଧାରଣରେ ଚିନ୍ତା କରିପାରିବା ନାହିଁ । ଯେହେତୁ ତାଙ୍କର ଏହି କଳାକୁ ଆମେ ବୁଝିବାକୁ ଅସମର୍ଥ, ତେଣୁ ତାଙ୍କୁ ପୂଜା କରିବା କି ? ଯଦି କୌଣସି ଦେବ ପୁରୁଷଙ୍କର ଅଲୌକିକ କ୍ରିୟା ପରୀକ୍ଷା ପରେ ଯଥାର୍ଥ ବୋଲି ମନେ ହୁଏ, ତେବେ ତାଙ୍କୁ ପୂଜା କରିବାରେ ମୋର ଆପତ୍ତି ନାହିଁ । ଯଦି ଅଲୌକିକ କ୍ରିୟା ପ୍ରତିଷ୍ଠା ହୋଇପାରେ ତେବେ ହିଁ କୁହାଯାଇ ପାରିବ ଯେ ବିଜ୍ଞାନ ଓ ତର୍କବୁଦ୍ଧିର ଉର୍ଦ୍ଧ୍ୱରେ ବିଶ୍ୱାସ ରହିବା ଆବଶ୍ୟକ । କିନ୍ତୁ ଜଣେ ଦେବ ପୁରୁଷଙ୍କର ଅଲୌକିକ କାର୍ଯ୍ୟ ବୈଜ୍ଞାନିକ ପରୀକ୍ଷାଦ୍ୱାରା ଯଦି ଏକ ହାତ ସଫେଇ ବୋଲି ପ୍ରମାଣିତ ହୁଏ ସେ କ୍ଷେତ୍ରରେ ତାଙ୍କୁ ପୂଜା କରିବା ପରିବର୍ତ୍ତେ ସାଧାରଣରେ ତାଙ୍କର ସ୍ୱରୂପକୁ ଖୋଲିଦେବା ଠିକ୍ ହେବ ନାହିଁ କି ?

(୪) "ମୋର ବନ୍ଧୁ ଏସ.ରାମକ୍ରିଷ୍ଣ ଶ୍ରୀ ପାଣ୍ଡିମୋଲାଇ ସ୍ୱାମୀଗଲଙ୍କୁ ମାଡ୍ରାସରେ ସାକ୍ଷାତ ଅବସରରେ ଯେଉଁ ଆଶ୍ଚର୍ଯ୍ୟଜନକ ଅନୁଭୂତି ଲାଭକଲେ ତାହା ପାଠକମାନଙ୍କୁ ଜଣାଇବା ପାଇଁ ମୁଁ ଉଚିତ ମନେକରି ଲେଖୁଛି ।"

ଆପଣ ଓ ଆପଣଙ୍କର ବନ୍ଧୁ ପାଣ୍ଡିମୋଲାଇଙ୍କର ଅନେକ ଅଲୌକିକ କାର୍ଯ୍ୟ ପ୍ରଦର୍ଶନ ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ସେ ସବୁର ସତ୍ୟତା ନେଇ କୌଣସି ପରୀକ୍ଷା ନକରି ପାଠକମାନଙ୍କର ବିଶ୍ୱାସ ପାଇଁ ପତ୍ରିକାରେ ଲେଖିଛନ୍ତି । କିନ୍ତୁ କୌଣସି କଥାକୁ ବିନା ପରୀକ୍ଷାରେ ବିଶ୍ୱାସ କରିବା ଉଚିତ୍ ନୁହଁ ବୋଲି ଆପଣ ମୋ ସହିତ ଏକମତ ହେବେ । ଜଣେ ବ୍ୟକ୍ତିଙ୍କର ଅଲୌକିକ କାର୍ଯ୍ୟ ଏକ ଆଧ୍ୟାତ୍ମିକ ସାଧନାର ସିଦ୍ଧି ବା ଏକ ହାତସଫେଇ କଳା ତାହା ଜାଣିବା ପାଇଁ ବସ୍ତୁନିଷ୍ଠ ପରୀକ୍ଷଣ ଆବଶ୍ୟକ ନୁହେଁ କି ?

ଗତ ପଚାଶ ବର୍ଷ ଧରି ଅଲୌକିକ ଓ ଆଧିଦୈବିକ ଘଟଣା ସମ୍ପର୍କରେ ମୁଁ ଅନୁସନ୍ଧାନ କରୁଛି । ପରୀକ୍ଷାମୂଳକ ଅନୁସନ୍ଧାନରୁ ମୋର ଆତ୍ମପ୍ରତ୍ୟୟ ଦୃଢ ହୋଇଛି ଯେ ଅଲୌକିକ ଶକ୍ତିର ଅଧିକାରୀ ବୋଲାଉଥିବା ବ୍ୟକ୍ତିଗଣ ମାନସିକ ବିକାରଗ୍ରସ୍ତ ବା ଧୂର୍ତ୍ତ ଅଟନ୍ତି । ତଥାପି କୌଣସି ପୂର୍ବ ଧାରଣାର ବଶବର୍ତ୍ତୀ ନ ହୋଇ ପାଣ୍ଡିମୋଲାଇ ସ୍ୱାମୀଗଲଙ୍କର ଅଲୌକିକ କାର୍ଯ୍ୟ ସମ୍ପର୍କରେ ମୁଁ ଅନୁସନ୍ଧାନ କରିବାକୁ ଚାହୁଁଛି ।

ଯଦି ମୁଁ ତାଙ୍କର ପୋଷାକକୁ ପରୀକ୍ଷା କରିବାପରେ ଆପଣ ଉଲ୍ଲେଖ କରିଥିବା ଘଟଣା ମଧ୍ୟରୁ ବିଭୂତି, ମହୁ, ଶୂନ୍ୟରୁ ବାହାର କରିଦେଇ ପାରିବେ ତେବେ ତାଙ୍କର ଅଲୌକିକ କାର୍ଯ୍ୟ ଯଥାର୍ଥ ବୋଲି ପ୍ରମାଣିତ ହେବ । ସଂଶୟବାଦୀମାନଙ୍କୁ ପରିବର୍ତ୍ତନ କରିବା ତାଙ୍କର ଉଦ୍ଦେଶ୍ୟ ହୋଇଥିବାରୁ (ଆପଣ ଯାହା ଲେଖିଛନ୍ତି) ସେ ମୋର ଆହ୍ୱାନକୁ ଗ୍ରହଣ କରିବା ଦରକାର । ଯଦି ତାଙ୍କର ପୋଷାକକୁ ମୁ ଦେଖିବା ସେ ପସନ୍ଦ କରିବେ ନାହିଁ ତେବେ ମୁଁ ତାଙ୍କୁ ଦେଖାଇବା ଗୋଟିଏ ନୋଟ୍‌ର ସମାନ କ୍ରମିକ ନମ୍ବର ଥିବା ଏକ ଅବିକଳ ପ୍ରତିରୂପ ସୃଷ୍ଟି କରିଦେଇ ପାରିବେ, ତେବେ ମୁଁ ତାଙ୍କର ଅନୁଗତ ଶିଷ୍ୟ ହେବି । ଯଦି ସ୍ୱାମୀଗଲ ପରୀକ୍ଷା କରିବା ପାଇଁ ସମ୍ମତ ହେବେ, ତେବେ ତାଙ୍କ ବାସ ଭବନରେ ତାଙ୍କୁ ସାକ୍ଷାତ କରିବା ପାଇଁ ମୁଁ ଯିବି ।

ଆପଣଙ୍କର ସତ୍ୟାନୁସନ୍ଧାନୀ
ସ୍ୱା- ଆବ୍ରାହମ କୋଭୁର

ଏହାପରେ କୋଭୁର ଶ୍ରୀ ପାଣ୍ତିମୋଲାଇ ସ୍ୱାମୀଗଲଙ୍କ ଉଦ୍ଦେଶ୍ୟରେ ତଳ ପତ୍ରଟି ଲେଖିଥିଲେ –

ପ୍ରିୟ ସ୍ୱାମୀଜୀ,

ଆପଣ ନିଜର ଆଧ୍ୟାତ୍ମିକ ସିଦ୍ଧିଦ୍ୱାରା ଶୂନ୍ୟରୁ ଅଲୌକିକ ଭାବେ ବିଭିନ୍ନ ବସ୍ତୁ ସୃଷ୍ଟି କରୁଥିବା ବିଷୟ ମୁଁ 'ଭାରତ ଜ୍ୟୋତି' ପତ୍ରିକାରୁ ବିଭିନ୍ନ ଲେଖାରେ ପଢ଼ିଲି । ଯେହେତୁ ଅଲୌକିକ କ୍ରିୟା ସମ୍ପର୍କରେ ମୁଁ ଅନୁସନ୍ଧାନ କରୁଛି ସୁତରାଂ ଆପଣଙ୍କୁ ଦେଖିବାକୁ ସୁଯୋଗ ଦେବାକୁ ଆପଣଙ୍କୁ ଅନୁରୋଧ କରୁଛି । ଯଦି ଆପଣ ମୋ ସମ୍ମୁଖରେ ମୁଁ ଚାହିଁବା ମୁତାବକ କୌଣସି ବସ୍ତୁ ଶୂନ୍ୟରୁ ସୃଷ୍ଟି କରିଦେଇପାରିବେ ତେବେ ମୁଁ ଆପଣଙ୍କୁ ଏକ ଦେବ ପୁରୁଷ ଭାବରେ ଗ୍ରହଣ କରିବା ସହିତ ଶ୍ରଦ୍ଧାର ସହ ପଚିଶ ହଜାର ଟଙ୍କା ପ୍ରଦାନ କରିବି । ସାଧାରଣ ଲୋକମାନେ ଓ ଏପରିକି ଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ କେତେକ ବ୍ୟକ୍ତିଙ୍କର ହାତ ସଫେଇ କଳାକୁ ଅଲୌକିକ କାର୍ଯ୍ୟ ବୋଲି ବିଶ୍ୱାସ କରୁଥିବାରୁ ମୁଁ ସେ ସମ୍ପର୍କରେ ଅନୁସନ୍ଧାନ କରୁଛି । ମୋର ବିଶ୍ୱାସ, ମୋର ଏହି ସତ୍ୟାନୁସନ୍ଧାନ ଦିଗରେ ଆପଣ ସାହାଯ୍ୟ କରିବେ ।

ଆପଣଙ୍କ ଉତ୍ତର ଅପେକ୍ଷାରେ
ସ୍ୱା- ଆବ୍ରାହମ କୋଭୁର

ଭାରତଜ୍ୟୋତି ପତ୍ରିକାରେ ପାଣ୍ଡିମୋଲାଇଙ୍କ ଉପରେ ପ୍ରକାଶ କରିଥିବା ଆଉଜଣେ ଲେଖକ ବାମନରାଓ ରାଣେଙ୍କୁ ମଧ୍ୟ କୋଭୁର ଏହି ମର୍ମରେ ଏକ ପତ୍ର ଲେଖିଥିଲେ । କିନ୍ତୁ ସେ କେବେବି କାହା ପାଖରୁ ହେଲେ କୌଣସି ଉତ୍ତର ପାଇଲେ ନାହିଁ ।

**ନୀଳକଣ୍ଠ ବାବା:** ଶ୍ରୀଲଙ୍କାରୁ ପ୍ରକାଶ ପାଉଥିବା 'ଥିନାକରଣ ବରମଞ୍ଜରୀ' ସମ୍ବାଦ ପତ୍ରରେ ଜାଫନାର ପଞ୍ଚାକ୍ଷର କୁରୁବାଲ ୭.୧୦.୧୯୭୧ରେ ଭାରତବର୍ଷର ନୀଳକଣ୍ଠ ବାବାଙ୍କ ସମ୍ପର୍କରେ ଏକ ପୃଷ୍ଠା ବିଶିଷ୍ଟ ଏକ ଲେଖା ଦେଇଥିଲେ । ପ୍ରତିବର୍ଷ ଶ୍ରୀଲଙ୍କାରୁ ଭକ୍ତମାନେ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଭାରତକୁ ଯାଇଥାନ୍ତି । କୁରୁବାଲ ସେହିପରି ଭାରତ ଯାତ୍ରା ସମୟରେ ଜଣେ ବନ୍ଧୁଙ୍କଠାରୁ ନୀଳକଣ୍ଠ ବାବାଙ୍କର ଅଲୌକିକ ଶକ୍ତି ବିଷୟରେ ଶୁଣିବାକୁ ପାଇ ତାଙ୍କୁ ଦର୍ଶନ କରିବାକୁ ଯାଇଥିଲେ । ଏହାପରେ ଶ୍ରୀଲଙ୍କା ଫେରି ସେ ବାବାଙ୍କ ସମ୍ପର୍କରେ ଏକପୃଷ୍ଠା ସମ୍ବଳିତ ଯେଉଁ ଲେଖାଟି ସମ୍ବାଦପତ୍ରରେ ପ୍ରକାଶ କରିଥିଲେ ସେଥିରେ ଅନ୍ୟାନ୍ୟ ପ୍ରସଙ୍ଗ ସହ ଏହି କଥା ଗୁଡିକ ଉଲ୍ଲେଖ କରିଥିଲେ,- "ଏକଦା ନୀଳକଣ୍ଠ ବାବାଙ୍କ ଆଖିରେ ଲୋତକ ଦେଖାଦେବା ବେଳେ ତାଙ୍କ ସମ୍ମୁଖରେ ଟଙ୍ଗାଯାଇଥିବା ଶିବଙ୍କ ଫଟୋରୁ ମଧ୍ୟ ଲୁହ ଝରିଥିଲା । ଥରେ ଶୂନ୍ୟରୁ ବିଭୂତି ସୃଷ୍ଟି କରି ଜଣେ ଅନ୍ଧ ବାଳକର ଆଖିରେ ତାହା ବାବା ଲଗାଇ ଦେବାରୁ ପିଲାଟି ଦୃଷ୍ଟିଶକ୍ତି ଫେରି ପାଇଥିଲା । ଥରେ ଏକ କାରରେ ବାବା ତାମିଲନାଡୁରେ ଗଲାବେଳେ ବାଟରେ ଗୋଟିଏ ନଦୀର ଜଳକୁ ଦୁଇଭାଗ କରିଦେଇ ନଦୀ ଉପରେ କାର ଚଳାଇ ନେଇ ଚାଲିଯାଇଥିଲେ । ଭଗବାନ ନୀଳକଣ୍ଠ ବାବା ଏକ ସମୟରେ ବିଭିନ୍ନ ସ୍ଥାନରେ ଆବିର୍ଭାବ ହୋଇପାରିବା ତାଙ୍କ ପାଇଁ ଏକ ସାଧାରଣ ଘଟଣା ଅଟେ । ଥରେ ବାବା ଏକ ଜଙ୍ଗଲ ରାସ୍ତା ମଧ୍ୟ ଦେଇ କାରରେ ଗଲାବେଳେ କାରରୁ ପେଟ୍ରୋଲ ସରିଯିବାରୁ ନିଜେ ଗାଡିର ଷ୍ଟିଅରିଂ ଧରି ବିନା ପେଟ୍ରୋଲରେ ୨୩ କି.ମି. ରାସ୍ତା ଚଳାଇ ପେଟ୍ରୋଲ ପମ୍ପ ପାଖକୁ ଗାଡିଟିକୁ ନେଇଯାଇଥିଲେ । ଆନ୍ଧ୍ର ପ୍ରଦେଶର ରାଜ୍ୟପାଳ ନଗେଶଙ୍କର ସାକ୍ଷାତ ବେଳେ ବାବା ନିଜ ଉଦରରୁ ଏକ ଶିବଲିଙ୍ଗ ବାହାରକରି ଉପହାର ଦେଇଥିଲେ । ରାଜ୍ୟପାଳ ନଗେଶ ଲଣ୍ଡନରେ ଏକ ଡାକ୍ତରଖାନାରେ ଅପରେସନ୍ ହେବାବେଳେ ସେଠାରେ ଆବିର୍ଭୂତ ହୋଇଥିଲେ । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ ରାଷ୍ଟ୍ରପତି ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ବାବାଙ୍କର

ଦର୍ଶନ କରି ତାଙ୍କର ଆଶୀର୍ବାଦ ନେବାକୁ ଆସିଥିବା ଅବସରରେ ବାବା ଏକ ସ୍ଫଟିକ ଶିବଲିଙ୍ଗ ଶୂନ୍ୟରୁ ସୃଷ୍ଟିକରି ଶ୍ରୀମତୀ ଗାନ୍ଧୀଙ୍କୁ ଦେଇଥିଲେ ।"

ଏହି ଅଲୌକିକ କାର୍ଯ୍ୟ ସକଳର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ସମ୍ବାଦପତ୍ରର ଲେଖାଟି ସହ କୋଭୁର ଶ୍ରୀମତୀ ଗାନ୍ଧୀଙ୍କୁ ଏହି ପତ୍ର ଲେଖିଥିଲେ ।

୧୮.୧୧.୭୧

ମହାଶୟା,

ଶ୍ରୀଲଙ୍କାରୁ ପ୍ରକାଶ ପାଉଥିବା ଏକ ସମ୍ବାଦପତ୍ରରେ ତାମିଲନାଡୁର ଜଣେ ସିଦ୍ଧ ପୁରୁଷ ନୀଳକଣ୍ଠ ବାବାଙ୍କ ସମ୍ପର୍କରେ କେତେକ ଅଲୌକିକ ଘଟଣା ପ୍ରକାଶ ପାଇଥିଲା । ସେଥିରେ ଲେଖାଥିଲା ଯେ 'ନୀଳକଣ୍ଠ ବାବାଙ୍କୁ ଦର୍ଶନ କରି ତାଙ୍କର ଆଶୀର୍ବାଦ ନେବାକୁ ଆସୁଥିବା ଅନେକ ବ୍ୟକ୍ତିଙ୍କ ମଧ୍ୟରେ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଅନ୍ୟତମ । ଶ୍ରୀମତୀ ଗାନ୍ଧୀଙ୍କର ସାକ୍ଷାତ ବେଳେ ବାବା ଶୂନ୍ୟରୁ ଏକ ସ୍ଫଟିକ ଶିବଲିଙ୍ଗ ଦେଇଥିବାରୁ ସେ ଆଜି ଏତେ ଗୌରବର ଅଧିକାରୀ ହୋଇଛନ୍ତି ।' ଏହି ଘଟଣାଟି ସତ୍ୟ କି ନୁହଁ ତାହା ଜାଣିବା ଉଦ୍ଦେଶ୍ୟରେ ମୁଁ ଆପଣଙ୍କୁ ଲେଖୁଛି । ଆପଣଙ୍କର ବହୁ ମୂଲ୍ୟ ସମୟକୁ ଅନିଚ୍ଛା ସତ୍ତ୍ୱେ ମୁଁ ନଷ୍ଟ କରୁଛି । କିନ୍ତୁ ସମ୍ବାଦଟି ଶ୍ରୀଲଙ୍କା ଓ ଭାରତବର୍ଷର ଅଗଣିତ ପାଠକମାନଙ୍କୁ ପ୍ରଭାବିତ କରିବାର ସମ୍ଭାବନା ଥିବାରୁ ସତ୍ୟାସତ୍ୟ ଜାଣିବା ଉଦ୍ଦେଶ୍ୟରେ ଏହା ଲେଖିବାକୁ ବାଧ୍ୟ ହେଲି ।

ଆପଣଙ୍କର ବିଶ୍ୱସ୍ତ
ସା- ଆବ୍ରାହମ କୋଭୁର

ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଏହି ପତ୍ର ଲେଖିବାର କିଛି ଦିନ ପରେ ତାଙ୍କର ବ୍ୟକ୍ତିଗତ ସଚିବ ଏନ.କେ.ଶେଷାନଙ୍କ ନିକଟରୁ କୋଭୁର ତଳ ପତ୍ରଟି ପାଇଥିଲେ-

ନୂଆଦିଲ୍ଲୀ,୨୨.୧୧.୧୯୭୧

ପ୍ରିୟ ମହାଶୟ,

ଆପଣଙ୍କର ୧୮.୧୧.୭୧ର ପତ୍ର ପ୍ରଧାନମନ୍ତ୍ରୀଙ୍କୁ ମିଳିଛି । ତାଙ୍କ ଦ୍ୱାରା ନିର୍ଦ୍ଦେଶିତ ହୋଇ ମୁଁ ଆପଣଙ୍କୁ ଜଣାଇବାକୁ ଚାହୁଁଛି ଯେ ଶ୍ରୀମତୀ ଗାନ୍ଧୀ ନୀଳକଣ୍ଠ

ବାବାଙ୍କୁ ଦର୍ଶନ କରିବା ଓ ତାଙ୍କଠାରୁ ଏକ ଶିବଲିଙ୍ଗ ପାଇବା ସମ୍ପୂର୍ଣ୍ଣ କପୋଳକଳ୍ପିତ ଓ ମିଥ୍ୟା ।

ଆପଣଙ୍କର ବିଶ୍ୱସ୍ତ
ସାକ୍ଷର- ଏନ.କେ.ଶେଷାନ
ପ୍ରଧାନମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚିବ

କେତେକ ବ୍ୟକ୍ତି ତଥାକଥିତ ଦେବପୁରୁଷଙ୍କର ପ୍ରସାର ପାଇଁ କିପରି ଗୁଡାଏ ମନଗଢା କାହାଣୀ ସୃଷ୍ଟି କରିଥାନ୍ତି ଏହା ତାହାର ଏକ ଦୃଷ୍ଟାନ୍ତ ଅଟେ ।

**ସାଇକୃଷ୍ଣ :** କର୍ଣ୍ଣାଟକର ପାଣ୍ଡବପୁର ଗ୍ରାମର ସେତ୍ତପ୍ପାଙ୍କର ପୁଅ କିଟି । ବୟସ ଛ' ବର୍ଷ । ହଠାତ୍ ସେତ୍ତପା ଓ ତାଙ୍କ ପତ୍ନୀଙ୍କଦ୍ୱାରା ପ୍ରଚାର କରାଗଲା ଯେ କିଟି ହେଉଛନ୍ତି କୃଷ୍ଣଙ୍କର ଅବତାର । ସେ ଅନେକ ଅଲୌକିକ କାର୍ଯ୍ୟ କରିପାରୁଛି ଏବଂ ଶୂନ୍ୟରୁ ବସ୍ତୁ ସୃଷ୍ଟି କରିପାରୁଛି । ସାଇବାବା ମଧ୍ୟ ଏଥିରେ ସମ୍ମତି ପ୍ରକାଶ କରିଥିଲେ ବୋଲି ସମ୍ବାଦ ପ୍ରକାଶ ପାଇଲା । ଫଳରେ କିଟିର ନାମ ସାଇକୃଷ୍ଣ ହୋଇଗଲା ଓ ଖୁବ ଅଳ୍ପଦିନ ଭିତରେ ତାଙ୍କର ଦର୍ଶନ ପାଇଁ ହଜାର ହଜାର ଲୋକ ସେଠାକୁ ଚାଲିଲେ । ସମ୍ବାଦପତ୍ରରେ ବାହାରିଲା ଯେ ପ୍ରତିଦିନ ପାଣ୍ଡବପୁରରେ ସାଇକୃଷ୍ଣର ବାପା, ମା ଓ ସାଇବାବାଙ୍କର ଭକ୍ତମାନେ ମିଶି ଭଜନ ଗାନ କରନ୍ତି । ଏହାପରେ ସାଇକୃଷ୍ଣ ମା'ଙ୍କ କୋଳରେ ଭାବ ସମାଧି ଲାଭ କରି ସେହି ଅବସ୍ଥାରେ ବିଭୂତି, ସାଇବାବାଙ୍କ ଲକେଟ, ନୋଟ୍ ଏବଂ ମହୁ ଇତ୍ୟାଦି ଶୂନ୍ୟରୁ ସୃଷ୍ଟି କରିଦିଅନ୍ତି ।

ଅଲୌକିକ କ୍ରିୟା ଦେଖାଇବା ସଂକ୍ରାନ୍ତରେ କୋଭୁରଙ୍କର ଆହ୍ୱାନକୁ ଡଃ ଜି.ଭେଙ୍କଟରାଓ ଗ୍ରହଣ କରିଥିଲେ । ସାଇକୃଷ୍ଣ ଅଲୌକିକ କ୍ରିୟା ଦେଖାଇ ପାରିବେ ବୋଲି ଭାବି ଡଃ ଭେଙ୍କଟରାଓ ଏହା କରିଥିଲେ । ଯେତେବେଳେ କୋଭୁରଙ୍କ ତରଫରୁ ତାଙ୍କର ପ୍ରତିନିଧି ପ୍ରଫେସର ଏ.ଏମ.ଧର୍ମଲିଙ୍ଗମ ସାଇକୃଷ୍ଣଙ୍କର ଅଲୌକିକ ଶକ୍ତିକୁ ପରୀକ୍ଷା କରିବାକୁ ଚାହିଁଲେ ସେତେବେଳେ ତାଙ୍କର ବାପା ଏଥିରେ ସମ୍ମତ ହେଲେ ନାହିଁ । ଡଃ ଭେଙ୍କଟରାଓ କୋଭୁରଙ୍କର ଆହ୍ୱାନ ଗ୍ରହଣକରିବା ସମ୍ବାଦ ସେତେବେଳେ ବେଶ୍ ଆଲୋଡନ ସୃଷ୍ଟି କରିଥିଲା । କିନ୍ତୁ ସାଇକୃଷ୍ଣଙ୍କର ଅଲୌକିକ ଶକ୍ତିକୁ ପରୀକ୍ଷା କରାଯାଇ ପାରିଲା ନାହିଁ ।

ସେହି ସମୟରେ ଅଲୌକିକ ବିରୋଧୀ କାର୍ଯ୍ୟକ୍ରମରେ କୋଭୁର ବିଭିନ୍ନ ସ୍ଥାନକୁ ଯାଇ ଲୋକମାନଙ୍କୁ ସଚେତନ କରାଉଥାନ୍ତି । ଭାରତବର୍ଷ ଛାଡିବା ପୂର୍ବରୁ ତଥାକଥିତ ଅଲୌକିକ ଶକ୍ତିର ଅଧିକାରୀ ବୋଲାଉଥିବା ବ୍ୟକ୍ତିମାନଙ୍କ ଠକାମି ସମ୍ପର୍କରେ ଜନଗଣଙ୍କୁ ସଚେତନ କରିବା ପାଇଁ ସେ ସରକାରଙ୍କୁ ନିବେଦନ କରିଥିଲେ । ହାତ ସଫେଇ ଦ୍ୱାରା କେତେକ ବ୍ୟକ୍ତି ଅଲୌକିକ ଶକ୍ତିର ଅଧିକାରୀ ବା ଦେବପୁରୁଷ ବୋଲି ନିଜକୁ କହି ଜନଗଣଙ୍କୁ ବିଭ୍ରାନ୍ତ କରୁଥିବାରୁ ସେମାନଙ୍କ ବିରୁଦ୍ଧରେ ଆଇନଗତ ପଦକ୍ଷେପ ନେବାକୁ ଏକ ସାମ୍ବାଦିକ ସମ୍ମିଳନୀରେ ସେ ଦାବି କରିଥିଲେ ।

ଆନ୍ତର୍ଜାତିକ ଖ୍ୟାତିସମ୍ପର୍ଣ୍ଣ ବୈଜ୍ଞାନିକ ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ଓ ସ୍ୱାଧୀନତା ସଂଗ୍ରାମୀ ଡଃ ଏଚ.ନରସିମହାୟା ବାଙ୍ଗାଲୋର ବିଶ୍ୱବିଦ୍ୟାଳୟର କୁଳପତି ହେବା ପରେ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଏକ କମିଟି ଗଠନ କରିଥିଲେ । ଅଲୌକିକ ତଥା ଆଧିଦୈବିକ ଘଟଣାର ଅନୁସନ୍ଧାନ କରି ସତ୍ୟାସତ୍ୟ ନିରୂପଣ କରିବା ଏହି କମିଟିର ଉଦ୍ଦେଶ୍ୟ ଥିଲା । କମିଟିରେ ପ୍ରଫେସର ନରସିମହାୟା ଚେୟାରମ୍ୟାନ ଥିଲେ ଓ ନିମ୍ନ ବିଶିଷ୍ଟ ବ୍ୟକ୍ତିଗଣ ସଦସ୍ୟ ରହିଥିଲେ ।

୧. ଡଃ.ଏ.ଆର.ବାସୁଦେବ ମୂର୍ତ୍ତି
ପ୍ରଫେସର, ରସାୟନ ବିଜ୍ଞାନ
ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନ, ବାଙ୍ଗାଲୋର

୨. ପ୍ରଫେସର ଆର.ନରସିଂହ
ଏରୋନେଟିକ ଇଂଜିନିୟରିଂ ବିଭାଗ, ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନ

୩. ଡଃ କେ.ପି.ସିନ୍ହା
ପ୍ରଫେସର, ପଦାର୍ଥ ବିଜ୍ଞାନ ବିଭାଗ
ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନ

୪. ପ୍ରଫେସର ବି.କୁପ୍ପା ସ୍ୱାମୀ
ପ୍ରାକ୍ତନ ପ୍ରଫେସର,ମନସ୍ତତ୍ତ୍ୱ ବିଭାଗ
ମହିଶୂର ବିଶ୍ୱବିଦ୍ୟାଳୟ

୫. ଡଃ (ଶ୍ରୀମତୀ) ବିନୋଦା ଏନ.ମୁର୍ତ୍ତି
ପ୍ରଫେସର,ମନସ୍ତତ୍ତ୍ୱ ବିଭାଗ
ନେସନାଲ ଇନଷ୍ଟିଚ୍ୟୁଟ୍ ଅଫ ମେଣ୍ଟାଲ ହେଲଥ ଓ ନିୟୁରୋ ସାଏନ୍ସ

୬. ଡଃ (ଶ୍ରୀମତୀ) ଅନୁପମା ନିରଞ୍ଜନା, ଡାକ୍ତର

୭. ଡଃ ଏନ.ଆର. ନାରାୟଣ, ସର୍ଜନ

୮. ଶ୍ରୀ ବି. ନିଳକଣ୍ଠନ
ମୁଖ୍ୟ ଯନ୍ତ୍ରୀ, ଭାରତୀୟ ଟେଲିଫୋନ ଇଣ୍ଡଷ୍ଟ୍ରିଜ

୯. ପ୍ରଫେସର ଏ.ଏମ. ଧର୍ମଲିଙ୍ଗମ
ପ୍ରଫେସର, ଆଇନ

୧୦. ଶ୍ରୀ ଏସ.କେନ୍ଦଗାନ୍ନା ସାମୀ- ଆବାହକ, ଡେପୁଟି ରେଜିଷ୍ଟ୍ରାର
ବାଙ୍ଗାଲୋର ବିଶ୍ୱବିଦ୍ୟାଳୟ

ସେତେବେଳ ସାଇକୃଷ୍ଣଙ୍କ ଅଲୌକିକ ଶକ୍ତି ସମ୍ପର୍କରେ ବିଭିନ୍ନ ସମ୍ବାଦପତ୍ର ମାନଙ୍କରେ ସମ୍ବାଦ ବାହାରୁଥିଲା । ବହୁ ବିଶିଷ୍ଟ ବ୍ୟକ୍ତି ଓ ଏପରିକି କର୍ଣ୍ଣାଟକର ରାଜ୍ୟପାଳ ସେହି ଅଲୌକିକ କ୍ରିୟା ଦେଖିବା ପାଇଁ ପାଣ୍ଡବପୁରକୁ ଯାଇଥିଲେ । ବିଶ୍ୱବିଦ୍ୟାଳୟ କମିଟି ସାଇକୃଷ୍ଣଙ୍କର ଅଲୌକିକ ଶକ୍ତିକୁ ପରୀକ୍ଷା କରିବା ପାଇଁ ନିଷ୍ପତ୍ତି ନେଲେ । ଫଳରେ ସାଇକୃଷ୍ଣଙ୍କ ବାପାଙ୍କୁ ଏ କ୍ଷେତ୍ରରେ ସହଯୋଗ କରିବା ପାଇଁ କେତେ ଗୁଡିଏ ପତ୍ର ଲେଖାଗଲା । କିନ୍ତୁ ତାଙ୍କଠାରୁ କୌଣସି ଉତ୍ତର ମିଳିଲା ନାହିଁ । ପରୋକ୍ଷରେ କମିଟି ଜାଣିବାକୁ ପାଇଲା ଯେ କମିଟିର ସଭ୍ୟମାନେ ଭକ୍ତ ହୋଇ ତାଙ୍କର କ୍ରିୟାକୁ ଦେଖିପାରିବେ । ଫଳରେ କମିଟିର ସଦସ୍ୟ ବିନୋଦା ଏନ.ମୁର୍ତ୍ତି, ବି.କୁପ୍ପା ସାମୀ ଓ ଅନୁପମା ନିରଞ୍ଜନା ନିଜ ପରିଚୟ ଗୋପନ ରଖି ୮.୭.୧୯୭୬ରେ ସାଇକୃଷ୍ଣଙ୍କର ଅଲୌକିକ କାର୍ଯ୍ୟ ଦେଖିବା ପାଇଁ ପାଣ୍ଡବପୁର ଗଲେ । ସେମାନେ ଅନ୍ୟ ଭକ୍ତମାନଙ୍କ ପରି ଲୋକମାନଙ୍କ ଭିତରେ ବସି ଭଜନ ଶୁଣିଲେ । ସାଇକୃଷ୍ଣ ସେଦିନ କୌଣସି ଅଲୌକିକ କ୍ରିୟା ପ୍ରଦର୍ଶନ କଲେ ନାହିଁ । ସେମାନେ ପୁନଶ୍ଚ ୧୫.୭.୧୯୭୬ରେ ଯାଇ ଭଜନରେ ଯୋଗଦେଲେ । ଭଜନ

ଶେଷରେ ସାଇକୃଷ୍ଣ ଉଠି ପଡିଲେ କିନ୍ତୁ କୌଣସି ଅଲୌକିକ କାର୍ଯ୍ୟ ଦେଖାଇଲେ ନାହିଁ । ସମବେତ ଲୋକମାନେ ଚାଲିଯିବାକୁ ବସିଲେ । ଡଃ ବିନୋଦା, ଏନ. ମୁର୍ତ୍ତି ଲକ୍ଷ୍ୟକଲେ ଯେ ସାଇକୃଷ୍ଣ ବାରମ୍ବାର ତାଙ୍କ ଅଣ୍ଟାରେ ହାତ ରଖୁଛନ୍ତି ଓ କିପରି ଅସୁସ୍ଥବୋଧ କଲାପରି ଜଣା ପଡୁଛନ୍ତି । ଅଣ୍ଟାପାଖରେ ଗୋଟିଏ ଫିତା ଝୁଲୁଥିବା ମଧ୍ୟ ସେ ଦେଖିଲେ । କୌତୂହଳ ହୋଇ ସନ୍ଦେହ କରି ସେ ସାଇକୃଷ୍ଣଙ୍କର ଫିତାଟିକୁ ଯେତେବେଳେ ଟାଣି ଦିଅନ୍ତି ତାଙ୍କ ଜାମା ତଳୁ ଗୁପ୍ତରେ ରଖା ଯାଇଥିବା ବିଭୂତି ତଳେ ଜମା ହୋଇଗଲା । ଏହାପରେ ସେଠାରେ ଆଲୋଡନ ସୃଷ୍ଟି ହୋଇଗଲା । କମିଟିର ସଭ୍ୟମାନଙ୍କୁ ଅନେକ ଗାଳି ଗୁଲଜ ଶୁଣିବାକୁ ପଡିଥିଲା । ସାଇକୃଷ୍ଣଙ୍କର ମା' କହିଲେ ଯେ ସେମାନେ ସମସ୍ତେ ସତ୍ୟସାଇ ବାବାଙ୍କର ପରମ ଭକ୍ତ । ସେମାନେ ତାଙ୍କ ପୁଅ ପଛରେ ନ ଲାଗି ସାଇବାବାଙ୍କ ପାଖକୁ ଯିବା ଦରକାର ।

ସାଇକୃଷ୍ଣଙ୍କର ଅଲୌକିକ କ୍ରିୟା ଜନିତ ଠକାମି ଜଣା ପଡିଗଲା ପରେ ଦେଶର ବିଭିନ୍ନ ସମ୍ବାଦପତ୍ର ମାନଙ୍କରେ ଏକଥା ପ୍ରକାଶ ପାଇଥିଲା । ଏହି ଘଟଣା ପରେ ବିଶ୍ୱବିଦ୍ୟାଳୟ କମିଟି ଜାତୀୟ ସ୍ତରରେ ଦୃଷ୍ଟି ଆକର୍ଷଣ କରିଥିଲା ।

**ସତ୍ୟସାଇ ବାବା:** ସାଇବାବାଙ୍କର ଅଲୌକିକ କାର୍ଯ୍ୟ ବେଶ୍ ଜଣାଶୁଣା । ତାଙ୍କର ଜୀବନୀ ଲେଖକ ଏନ.କସ୍ତୁରୀ 'ସତ୍ୟମ, ଶିବମ୍ ଓ ସୁନ୍ଦରମ' ନାମରେ ଯେଉଁ ପୁସ୍ତକ ଲେଖିଛନ୍ତି ସେଥିରେ ସାଇବାବାଙ୍କ ସମ୍ପର୍କରେ ଅସଂଖ୍ୟ ଅଲୌକିକ ଘଟଣାକୁ ଉଲ୍ଲେଖ କରିଛନ୍ତି । କୋଭୁର ସାଇବାବାଙ୍କର ଅଲୌକିକ ଘଟଣାକୁ ପରୀକ୍ଷା କରିବା ପାଇଁ ବହୁବାର ଉଦ୍ୟମ କରି ତାଙ୍କର (ସାଇବାବାଙ୍କର) ଅସହଯୋଗ ଯୋଗୁଁ ବିଫଳ ହୋଇଛନ୍ତି । କୋଭୁରଙ୍କ ଆହ୍ୱାନ ପରିପ୍ରେକ୍ଷୀରେ ତାଙ୍କ ତରଫରୁ କୁହାଯାଇଛି ଯେ ସାଇବାବା କୌଣସି ଅର୍ଥ ପାଇଁ ଅଲୌକିକ କାର୍ଯ୍ୟ ଦେଖାଉ ନାହାନ୍ତି । ଯେକୌଣସି ଅବିଶ୍ୱାସୀ ବ୍ୟକ୍ତି ତାଙ୍କ ପାଖକୁ ଆସିଲେ ତାଙ୍କ ଶକ୍ତିର ପ୍ରଭାବରେ ବିଶ୍ୱାସୀ ପାଲଟି ଯିବେ । ଏକଦା କୋଭୁର ତାଙ୍କର ଭାରତ ଗସ୍ତ ବେଳେ ସାଇବାବାଙ୍କୁ ଦେଖା କରିବାକୁ ପୁଟପାର୍ତ୍ତି ଠିକଣାରେ ପତ୍ର ଲେଖିଥିଲେ । ତାଙ୍କୁ ଯଦି ସେ କୌଣସି ଅଲୌକିକ କ୍ରିୟା ଦେଖାଇ ପାରିବେ ତେବେ ସେ ନିଜର ହେତୁବାଦୀ ଦୃଷ୍ଟିଭଙ୍ଗୀକୁ ପରିହାର କରିବାକୁ ପ୍ରସ୍ତୁତ ବୋଲି ଜଣାଇଥିଲେ । ନିର୍ଦ୍ଧାରିତ ଦିନ ସେ ଯେତେବେଳେ ସାଇବାବାଙ୍କୁ ପୁଟପାର୍ତ୍ତିରେ ସାକ୍ଷାତ କରିବାକୁ ଆସନ୍ତି ସେତେବେଳେ ଜାଣିବାକୁ ପାଇଲେ ଯେ

ସାଇବାବା ବାଙ୍ଗାଲୋର ଯାଇଛନ୍ତି । ଏହାପରେ ସେ ବାଙ୍ଗାଲୋରକୁ ଫେରି ତାଙ୍କୁ ଦେଖା କରିବାକୁ ଆସିଲାବେଳେ ତାଙ୍କୁ ସାଇବାବାଙ୍କ ନିଳୟ ଭିତରକୁ ଯିବାକୁ ଦିଆଗଲା ନାହିଁ । "ନାସ୍ତିକମାନେ ଏଠାକୁ ଆସିବା ମନା" କହି ତାଙ୍କୁ ବାରଣ କରାଗଲା । ବହୁବାର ଉଦ୍ୟମ କରି ସୁଦ୍ଧା ସେ ତାଙ୍କର ଅଲୌକିକ କ୍ରିୟା ଦେଖିବାର ସୁଯୋଗ ପାଇଲେ ନାହିଁ ।

୧୯୭୨ ମସିହାରେ ମାଡ୍ରାସ ଆଇ.ଆଇ.ଟିରେ ଏକ ଭାଷଣ ଦେବା ପାଇଁ ନିମନ୍ତ୍ରିତ ହୋଇ ଆସିଥିବା ଅବସରରେ ଭାରତରେ ପ୍ରକାଶ ପାଉଥିବା ଏକ ବିଶିଷ୍ଟ ଓ ବହୁଳ ପ୍ରସାରିତ ସାପ୍ତାହିକ ପତ୍ରିକାର ସଂପାଦକଙ୍କଠାରୁ ସେ ଏକ ପତ୍ର ପାଇଥିଲେ । 'ସତ୍ୟସାଇ ବାବା ଈଶ୍ୱରଙ୍କର ଅବତାର ନା ହାତ ସଫେଇ ଯାଦୁକର' ଏକ ଆଲୋଚନା ପ୍ରକାଶ କରିବା ପାଇଁ ସମ୍ପାଦକ ଚାହିଁଥିଲେ । ପ୍ରଥମେ କୋଭୁରଙ୍କର ଲେଖା ତିନୋଟି ସଂଖ୍ୟାରେ ଧାରାବାହିକ ଭାବରେ ପ୍ରକାଶ ପାଇବାପରେ ସାଇବାବାଙ୍କର ଅନୁଗତ ଓ ଭାରତ ସରକାରଙ୍କର ଏକଦା ବିଜ୍ଞାନ ପରାମର୍ଶଦାତା ଡଃ ଏସ ଭଗବନ୍ତମ୍‌ଙ୍କର ଲେଖା ଦୁଇଟି ସଂଖ୍ୟାରେ ଧାରାବାହିକ ଭାବରେ ପ୍ରକାଶ ପାଇଥିଲା । ଡଃ ଭଗବନ୍ତମ୍ ତାଙ୍କ ଲେଖାରେ ଲେଖିଥିଲେ ଯେ ତାଙ୍କ ଯୁବକ ଅବସ୍ଥାରେ ସେ ହେତୁବାଦୀ ଥିଲେ । କିନ୍ତୁ ଭଗବାନ ସତ୍ୟ ସାଇବାବାଙ୍କର ଅଲୌକିକ କାର୍ଯ୍ୟ ଦେଖିବା ପରେ ସେ ତାଙ୍କର ହେତୁବାଦୀ ଦୃଷ୍ଟିଭଙ୍ଗୀକୁ ପରିହାର କରିଛନ୍ତି । ସେ ତାଙ୍କ ଲେଖାରେ ସାଇବାବାଙ୍କ ବିଭିନ୍ନ ସମୟରେ ଓ ସ୍ଥାନରେ ପ୍ରଦର୍ଶନ କରିଥିବା ଅନେକ ଅଲୌକିକ ଘଟଣାର ଉଲ୍ଲେଖ କରିଥିଲେ । କିନ୍ତୁ କୌଣସି ଲେଖାରେ ସେଗୁଡିକ ପରୀକ୍ଷିତ ସତ୍ୟତା ଉପରେ ଆଧାରିତ ତାହା ଉଲ୍ଲେଖ ନଥିଲା । ସେହି ଘଟଣା ମଧ୍ୟରୁ ଗୋଟିଏ ଘଟଣାକୁ ପରୀକ୍ଷା କରାଯାଇ ପାରିବାର ସମ୍ଭାବନା ରହିଥିଲା । ସେ ଲେଖିଥିଲେ, "ଜାପାନର ସିକୋ ଘଣ୍ଟା ପ୍ରସ୍ତୁତକାରୀ କମ୍ପାନୀର ପରିଚାଳକ ଏକଦା ସାଇବାବାଙ୍କୁ ଦର୍ଶନ କରିବାକୁ ଆସିଥିଲେ । ସେ ଭାରତ ଆସିବା ପୂର୍ବରୁ ଏକ ନୂଆ ମଡେଲର ଘଣ୍ଟା ଯାହା କମ୍ପାନୀଦ୍ୱାରା ପ୍ରସ୍ତୁତ ହେବାକୁ ଯାଉଥିଲା ତାଙ୍କର ଆଲମିରାରେ ରଖିଦେଇ ଆସିଥିଲେ । ଭାରତ ଭ୍ରମଣ କାଳରେ କୌତୂହଳ ବଶତଃ ସେ ସାଇବାବାଙ୍କୁ ଦର୍ଶନ କରିବାକୁ ଆସିଲେ । ଭକ୍ତମାନଙ୍କ ଗହଣରେ ଜଣେ ଜାପାନୀ ଭଦ୍ର ଲୋକଙ୍କୁ ଦେଖି ସାଇବାବା ଶୂନ୍ୟରୁ ହାତ ହଲାଇ ଏକ ବସ୍ତୁ ତାଙ୍କୁ

ଉପହାର ଦେଲେ । ଜିନିଷଟିକୁ ଖୋଲି ସେ ଦେଖି ଆଶ୍ଚର୍ଯ୍ୟ ହେଲେ ଯେ ଯେଉଁ ନୂତନ ମଡେଲର ଘଣ୍ଟାଟି ସେ ଭାରତ ଆସିବା ପୂର୍ବରୁ ଆଲମିରାରେ ରଖିଦେଇ ଆସିଥିଲେ, ସାଇବାବା ତାଙ୍କୁ ସେହି ଘଣ୍ଟାଟି ହିଁ ଦେଇଛନ୍ତି । ବାବାଙ୍କର ଏହି ଅଲୌକିକ କାର୍ଯ୍ୟ ଦେଖି ସେ ତାଙ୍କର ପାଦତଳେ ପଡି ଯାଇଥିଲେ ଓ ପରେ ତାଙ୍କର ଅନୁଗତ ଭକ୍ତ ହୋଇଥିଲେ । ଜାପାନ ଫେରି ସେ ଦେଖିଲେ ଯେ ଆଲମିରାରେ ରଖିଥିବା ଘଣ୍ଟାଟି ନାହିଁ । ତାଙ୍କର ବ୍ୟକ୍ତିଗତ ସଚିବଙ୍କୁ ପଚାରି ଯାହା ବୁଝିଲେ ସେଥିରେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସଚିବ କହିଲେ ଯେ ଦିବ୍ୟ ପୁରୁଷ ଭଳି ଦେଖା ଯାଉଥିବା ଓ ଘଞ୍ଚ କେଶ ରଖିଥିବା ଜଣେ ବ୍ୟକ୍ତି ଆକସ୍ମିକ ଅଫିସ ଭିତରକୁ ଆସି ଆଲମାରି ଖୋଲି ଘଣ୍ଟାଟି ଧରି ଅନ୍ତର୍ଦ୍ଧାନ ହୋଇଗଲେ ।"

ଡଃ ଭଗବନ୍ତମ୍‌ଙ୍କର ଲେଖାରୁ ଏହି କାହାଣୀଟି ପଢି ଏହା କେତେଦୂର ସତ୍ୟ ତାହା ଜାଣିବାକୁ କୋଭୁର ଆଗ୍ରହୀ ହେଲେ । କାରଣ ଜଣେ ବୈଜ୍ଞାନିକ କୌଣସି ଘଟଣାକୁ ଉଲ୍ଲେଖ କରିବା ପୂର୍ବରୁ ତାର ସତ୍ୟାସତ୍ୟ ନେଇ ପରୀକ୍ଷା କରିବା ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିଚାୟକ । କୋଭୁର ଘଟଣାଟିର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ଡଃ ଭଗବନ୍ତମଙ୍କୁ ୧୧.୯.୭୩ରେ ଏହି ପତ୍ର ଲେଖିଥିଲେ-

ତିରୁଓ୍ୱାଲା
ପାମାନାକେଡ ଲେନ, କଲମ୍ବୋ-୬
୧୧.୯.୭୩

ପ୍ରିୟ ଡଃ ଭଗବନ୍ତମ୍,

ଏକ ଜାପାନୀ ଘଣ୍ଟା କମ୍ପାନୀର ପରିଚାଳକଙ୍କୁ ସତ୍ୟ ସାଇବାବା ଶୂନ୍ୟରୁ ତାଙ୍କ କମ୍ପାନୀର ଘଣ୍ଟାଟି ସୃଷ୍ଟି କରି ଦେବା, ଯାହା ଆପଣ ନିଜ ଲେଖାରେ ଉଲ୍ଲେଖ କରିଛନ୍ତି, ଘଟଣାଟି ପଢି ମୁଁ ଆଶ୍ଚର୍ଯ୍ୟ ହେଲି । ମୋର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରେ ଏଭଳି ଗୋଟିଏ ଘଟଣାକୁ ବିନା ପରୀକ୍ଷାରେ ମୁଁ ଗ୍ରହଣ କରିପାରୁ ନାହିଁ । ଏହାଛଡା ନିର୍ଦ୍ଦେଶକଙ୍କର ସଚିବଙ୍କର ବକ୍ତବ୍ୟ ମୋତେ ଆହୁରି ଆଶ୍ଚର୍ଯ୍ୟ କରିଛି । ଜଣେ ଅପରିଚିତ ବ୍ୟକ୍ତି ଆଲମିରା ଖୋଲି ଘଣ୍ଟାଟି ନେଇ ଚାଲିଯିବାବେଳେ ଜଣେ ଦାୟିତ୍ୱ ସମ୍ପନ୍ନ କର୍ମଚାରୀଙ୍କର କର୍ତ୍ତବ୍ୟ ହେଉଛି ତାଙ୍କୁ ପ୍ରତିରୋଧ କରିବା କିମ୍ବା ପୋଲିସର ସହାୟତା

ନେବା । ଯେହେତୁ ଘଟଣାଟିକୁ ବିନା ପରୀକ୍ଷାରେ ମୁଁ ଗ୍ରହଣ କରିପାରୁ ନାହିଁ, ସେ ଦୃଷ୍ଟିରୁ ଯେଉଁ ବ୍ୟକ୍ତିଙ୍କୁ ସାଇବାବା ଏ ଘଣ୍ଟାଟି ଦେଇଥିଲେ, ତାଙ୍କର ନାମ ଓ ଠିକଣା ମୋତେ ଜଣାଇଲେ ମୁଁ ଏହାର ସତ୍ୟାସତ୍ୟ ନେଇ ଅନୁସନ୍ଧାନ କରିପାରିବି । ଯଦି ଏହି ଅନୁସନ୍ଧାନ କାର୍ଯ୍ୟରେ ଆପଣ ସହଯୋଗ ନ କରନ୍ତି ତେବେ ଆପଣଙ୍କ ପରି ଜଣେ ବିଶିଷ୍ଟ ବ୍ୟକ୍ତିଙ୍କର ସାଧୁତାକୁ ସନ୍ଦେହ କରିବାକୁ ବାଧ୍ୟ ହେବି ।

ଆପଣଙ୍କର ସତ୍ୟାନୁସନ୍ଧାନୀ
ସ୍ୱା- ଆବ୍ରାହମ କୋଭୁର

ଡଃ ଭଗବନ୍ତମଙ୍କ ପାଖରୁ କୌଣସି ଉତ୍ତର ନ ପାଇ ଶ୍ରୀଲଙ୍କାରେ ଥିବା ଜାପାନୀ ଦୂତାବାସ ଜରିଆରେ ସିକୋ କମ୍ପାନୀର ପରିଚାଳକଙ୍କର ଠିକଣା କୋଭୁର ସଂଗ୍ରହ କରିଥିଲେ । ୩୦.୧୦.୭୩ରେ ସିକୋ କମ୍ପାନୀର ପରିଚାଳକ ସୋଜି ହାଟୋରୀଙ୍କୁ ଡଃ ଭଗବନ୍ତମ୍‌ଙ୍କର ଲେଖାଟି ପଠାଇ ସେହି ପ୍ରସଙ୍ଗରେ କେତୋଟି ପ୍ରଶ୍ନ ପଚାରି ଉତ୍ତର ପାଇଁ ଅନୁରୋଧ କରିଥିଲେ । କୋଭୁର ଯେଉଁ ପ୍ରଶ୍ନ ଗୁଡିକ ତାଙ୍କ ପତ୍ରରେ ଉଲ୍ଲେଖ କରିଥିଲେ ତାହା ଏହି ପ୍ରକାରର-

(୧) ଆପଣ କିମ୍ବା ଆପଣଙ୍କର କେହି ସହଯୋଗୀ ଭାରତ ବର୍ଷରେ ସତ୍ୟ ସାଇବାବାଙ୍କୁ କେବେ ସାକ୍ଷାତ କରିଥିଲେ କି ?

(୨) ସାଇବାବା ଶୂନ୍ୟରୁ ଏକ ଘଣ୍ଟା ସୃଷ୍ଟିକରି ଆପଣଙ୍କୁ ବା ଆପଣଙ୍କର ସହଯୋଗୀଙ୍କୁ ଉପହାର ଦେଇଥିଲେ କି ?

(୩) ଆପଣଙ୍କର ବ୍ୟକ୍ତିଗତ ସଚିବ କୌଣସି ଜଣେ ଅପରିଚିତ ବ୍ୟକ୍ତି ଆଲମିରା ଖୋଲି ଘଣ୍ଟାଟିଏ ନେଇ ଚାଲିଯିବା ଆପଣଙ୍କୁ କହିବା ସତ୍ୟ କି ?

(୪) ଆପଣ କିମ୍ବା ଆପଣଙ୍କର କେହି ଅଂଶୀଦାର ସାଇବାବାଙ୍କର ଭକ୍ତ କି ?

ଏହାପରେ ସିକୋ କମ୍ପାନୀର ମୁଖ୍ୟ ସୋଜୀ ହାଟୋରୀଙ୍କଠାରୁ କୋଭୁର ତଳ ଲିଖିତ ଉତ୍ତର ପାଇଥିଲେ-

ସିକୋ, ୮.୧୧.୭୩
କେ ହାଟୋରୀ ଏଣ୍ଡ କମ୍ପାନୀ ଲି.
୫,କୋୟାବାଶୀ, ୨ ଚୋମ୍, ଗଉ-କୁ
ଟୋକିଓ-୧୦୪

ପ୍ରିୟ ଡଃ କୋଭୁର,

ଆପଣଙ୍କର ୩୦.୧୦.୭୩ର ପତ୍ର ପାଇଁ ଧନ୍ୟବାଦ । ଆପଣଙ୍କର ଅଲୌକିକ ଘଟଣା ସମ୍ପର୍କରେ ଅନୁସନ୍ଧାନକୁ ମୁଁ ସ୍ୱାଗତ କରୁଛି । କିନ୍ତୁ ଏ କ୍ଷେତ୍ରରେ ଆପଣ ମି. ସାଇବାବାଙ୍କ ସମ୍ପର୍କରେ ଯାହା ଲେଖିଛନ୍ତି ସେ ସମ୍ପର୍କରେ ମୁଁ କୌଣସି ତଥ୍ୟ ଆପଣଙ୍କୁ ଜଣାଇବାକୁ ସମର୍ଥ ନୁହେଁ । ମୁଁ କିମ୍ବା ମୋର କୌଣସି ସହଯୋଗୀ ଏହି ବ୍ୟକ୍ତିଙ୍କ ସମ୍ପର୍କରେ କେବେ ଆସି ନାହୁଁ । ଡଃ ଭଗବନ୍ତମଙ୍କ ଲେଖାରେ ଯାହା ପ୍ରକାଶ ପାଇଛି ତାହା ସମ୍ପୂର୍ଣ୍ଣ କପୋଳକଳ୍ପିତ । ଆପଣ ଯେଉଁ ଚାରୋଟି ପ୍ରଶ୍ନ ପଚାରିଛନ୍ତି ତାର ଉତ୍ତର କେବଳ "ନା" ବୋଲି ଆପଣଙ୍କୁ ଜଣାଉଛି ।

ଆପଣଙ୍କର ସୌଜନ୍ୟମୁଗ୍ଧ
ସ୍ୱା- ସୋଜି ହାଟୋରୀ

ଏହି ପତ୍ର ସିକୋ କମ୍ପାନୀ ମୁଖ୍ୟଙ୍କଠାରୁ ପାଇବା ପରେ ଏହାର ଏକ ଫଟୋ କପି ସହ କୋଭୁର ଡଃ ଭଗବନ୍ତମଙ୍କୁ ତଳ ଚିଠିଟି ଲେଖିଥିଲେ-

ପ୍ରିୟ ଡଃ ଭଗବନ୍ତମ୍,

ମୁଁ ଆପଣଙ୍କୁ ସିକୋ କମ୍ପାନୀ ସମ୍ପର୍କରେ ଜଣାଇବାକୁ ଅନୁରୋଧ କରିଥିଲି । ଆପଣଙ୍କଠାରୁ କୌଣସି ଉତ୍ତର ନ ପାଇ ସାଇବାବା ଜାପାନୀ ଘଣ୍ଟା ପ୍ରସ୍ତୁତକାରୀ ମାଲିକଙ୍କୁ ଦେଇଥିବା ଘଣ୍ଟା ସମ୍ପର୍କରେ ଅଧିକ ଅନୁସନ୍ଧାନ କରିବା ପାଇଁ ଜାପାନ ଦୂତାବାସଠାରୁ କମ୍ପାନୀର ଠିକଣା ସଂଗ୍ରହ କରି ମୁଁ ପତ୍ର ଲେଖିଥିଲି । ମୋର ପତ୍ରର ଉତ୍ତରରେ ସିକୋ ଘଣ୍ଟା ପ୍ରସ୍ତୁତ କରୁଥିବା କେ.ହାଟୋରୀ ଏଣ୍ଡ କମ୍ପାନୀ ଲି. ର ମୁଖ୍ୟ ସୋଜି ହାଟୋରୀ ମୋତେ ଯେଉଁ ପତ୍ର ଲେଖିଥିଲେ ମୁଁ ତାହାର କପି ଆପଣଙ୍କୁ ପଠାଇଲି ।

ଯଦି ଆପଣଙ୍କ ଲେଖାରେ ଉଲ୍ଲେଖ ଥିବା ଘଟଣା ଏହି କମ୍ପାନୀ ସହ ସଂପୃକ୍ତ ନୁହେଁ ତେବେ ପ୍ରକୃତ ବ୍ୟକ୍ତି ଓ ତାଙ୍କର ଠିକଣା ମୋତେ ଜଣାଇବେ । ଯଦି ଏ ସମ୍ପର୍କରେ ମୁଁ ଆପଣଙ୍କଠାରୁ କୌଣସି ଉତ୍ତର ନ ପାଏ ତେବେ ଏହା ମୋର ବିଶ୍ୱାସକୁ ଦୃଢ଼ କରିବ ଯେ ଆପଣ ହେଉଛନ୍ତି ସତ୍ୟସାଇ ବାବାଙ୍କର ଦଲାଲ ଓ ଆପଣମାନେ ଉଦ୍ଦେଶ୍ୟମୂଳକ ଭାବରେ ମନଗଢା କାହାଣୀ ଛାପି ଜନମାନସକୁ ବିଭ୍ରାନ୍ତ କରୁଛନ୍ତି ।

ଆପଣଙ୍କର ସତ୍ୟାନୁସନ୍ଧାନୀ
ସ୍ୱା-ଆବ୍ରାହମ କୋଭୁର

କିନ୍ତୁ କୋଭୁର ଡଃ ଭଗବନ୍ତମଙ୍କଠାରୁ କୌଣସି ଉତ୍ତର ପାଇଲେ ନାହିଁ ।

ବାଙ୍ଗାଲୋର ବିଶ୍ୱବିଦ୍ୟାଳୟର 'ଅଲୌକିକ କାର୍ଯ୍ୟ ଅନୁସନ୍ଧାନ କମିଟି' ସାଇବାବାଙ୍କ ସମ୍ପର୍କରେ ମଧ୍ୟ ଅନୁସନ୍ଧାନ କରିବାକୁ ଆଗ୍ରହୀ ହେଲେ । କମିଟିର ଚେୟାରମ୍ୟାନ ପ୍ର.ନରସିମ୍ହାୟା ସାଇବାବାଙ୍କୁ ନିମ୍ନ ପତ୍ର ଲେଖିଥିଲେ ।

ଜନ ଭାରତୀ, ବାଙ୍ଗାଲୋର
୨.୬.୭୬

ମାନନୀୟ ସ୍ୱାମୀଜୀ,

ଆପଣ ଜାଣନ୍ତି ଆମ ଦେଶର କିଛି ବ୍ୟକ୍ତି ଅଲୌକିକ ଶକ୍ତିର ଅଧିକାରୀ ବୋଲି ଘୋଷଣା କରୁଛନ୍ତି । ଏକଥା ମଧ୍ୟ ବିଶ୍ୱାସ କରାଯାଉଛି ଯେ ସେମାନଙ୍କ ଭିତରୁ କେତେକ ଶୂନ୍ୟରୁ ବସ୍ତୁ ସୃଷ୍ଟିକରି ପାରୁଛନ୍ତି । ଆପଣ ମୋ ସହିତ ଏକମତ ହେବେ ଯେ ଶୂନ୍ୟରୁ ବସ୍ତୁ ସୃଷ୍ଟି କରିବା ଏକ ଆଧିଦୈବିକ କାର୍ଯ୍ୟ । ଏହା ପ୍ରତିଷ୍ଠିତ ବୈଜ୍ଞାନିକ ନିୟମର ପରିପନ୍ଥୀ । କେବଳ ସେତିକି ନୁହଁ, ଏହା ସତ୍ୟ ହୋଇଥିଲେ ବିଜ୍ଞାନର ନିୟମ ଗୁଡ଼ିକ ଅର୍ଥହୀନ । ଆମ ଭିତରୁ କେତେକ ବୈଜ୍ଞାନିକ ଏ ସମ୍ପର୍କରେ ଗଭୀର ଭାବରେ ଚିନ୍ତା କରୁଛନ୍ତି । ଏତଦବ୍ୟତୀତ ଆମ ସମାଜରେ କେତେକ କୁସଂସ୍କାର ରହିଛି ଯାହାର ଅନେକ କୁପ୍ରଭାବ ଲୋକମାନଙ୍କୁ ବିଭ୍ରାନ୍ତ କରୁଛି ।

ନିକଟରେ ବାଙ୍ଗାଲୋର ବିଶ୍ୱବିଦ୍ୟାଳୟ ଏ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ଏକ କମିଟି ସ୍ଥାପନ କରିଛି । ଏହି ଅନୁସନ୍ଧାନ ଈଶ୍ୱର ବା ଧର୍ମ ବିରୁଦ୍ଧରେ ଅଭିପ୍ରେତ ନୁହେଁ ।

କମିଟିରେ ରହିଥିବା ସଭ୍ୟମାନେ ସମାଜର ବିଭିନ୍ନ ସ୍ତରରୁ ଆସିଛନ୍ତି ଓ ସେମାନଙ୍କର ଏ ସମ୍ପର୍କରେ ଅନୁସନ୍ଧାନ କରିବା ସାମର୍ଥ୍ୟକୁ ସନ୍ଦେହ କରାଯାଇ ନ ପାରେ । ସତ୍ୟାସତ୍ୟ ଅନୁସନ୍ଧାନ କରି ଲୋକମାନଙ୍କୁ ଜଣାଇବା ଏହି କମିଟିର ଲକ୍ଷ୍ୟ ହୋଇଥିବାରୁ ଏହାକୁ 'ସତ୍ୟାନ୍ୱେଷଣ କମିଟି' ବୋଲି କୁହାଯାଇପାରେ ।

ଆପଣଙ୍କର ଅଲୌକିକ ଶକ୍ତି ସମ୍ପର୍କରେ ଆମେ ଅନେକ କିଛି ଶୁଣିଛୁ । ଆପଣ ଦୈବୀଶକ୍ତିର ଅଧିକାରୀ ଯାହା ଫଳରେ ଆପଣ ଅନେକ ଅଲୌକିକ କାର୍ଯ୍ୟ କରିପାରୁଛନ୍ତି ବୋଲି ଦେଶ ଓ ବିଦେଶରେ ଜଣାଶୁଣା । ବିଶେଷକରି ଶୂନ୍ୟରୁ ବସ୍ତୁ ସୃଷ୍ଟି କରିବା ପରି ଅଲୌକିକ କାର୍ଯ୍ୟ ଆପଣ କରୁଛନ୍ତି । ଆପଣ ମଧ୍ୟ ସତ୍ୟ ଓ ଧର୍ମ ସଂସ୍ଥାପନା କରିବା ପାଇଁ ଜନଗଣଙ୍କୁ ଉପଦେଶ ଦେଉଛନ୍ତି । ସୁତରାଂ ମୁଁ ଓ କମିଟିର ସଭ୍ୟମାନେ ଆପଣଙ୍କୁ ସାକ୍ଷାତକରି ଏହି ପ୍ରସଙ୍ଗରେ ଆଲୋଚନା କରିବାକୁ ତଥା ଆପଣଙ୍କର ଅଲୌକିକ କାର୍ଯ୍ୟ ସମ୍ପର୍କରେ ଅବଗତ ହେବାକୁ ଆଶା କରୁଛୁ । ଏଣୁ ଆପଣଙ୍କୁ ନିବେଦନ କରୁଛି ଯେ ଆପଣ ଏଥିପାଇଁ ଅନୁମତି ଦେବେ । ଆପଣଙ୍କ ପରି ଜଣେ ବିଶିଷ୍ଟ ବ୍ୟକ୍ତି ଏ କ୍ଷେତ୍ରରେ ଆମକୁ ସହଯୋଗ କରିବେ ବୋଲି ଆଶା କରୁଛି । ଏହି ସତ୍ୟାନୁସନ୍ଧାନ କାର୍ଯ୍ୟରେ ଆପଣଙ୍କ ସହଯୋଗ ଦ୍ୱାରା ଦେଶ ବିଦେଶରେ ଲୋକମାନେ ନିଶ୍ଚୟ ଉପକୃତ ହେବେ । 'ସତ୍ୟ ହିଁ ଭଗବାନ' କୁହାଯାଉଥିବାରୁ ସତ୍ୟ ପ୍ରତିଷ୍ଠା ପାଇଁ ଆପଣ ସହଯୋଗ କରିବେ ବୋଲି ମୋର ଦୃଢ଼ ଆଶା । କେଉଁ ଦିନ, ସ୍ଥାନ ଓ ସମୟରେ ଆପଣଙ୍କୁ ସାକ୍ଷାତ କରିବାର ସୌଭାଗ୍ୟ ପାଇବୁ ତାହା ଜଣାଇବା ପାଇଁ ବିନୀତ ଅନୁରୋଧ କରୁଛି । ଶ୍ରଦ୍ଧା ଓ ସମ୍ମାନର ସହ ରହୁଛି ।

ଆପଣଙ୍କର ବିଶ୍ୱସ୍ତ
ସ୍ୱା- ଏଚ. ନରସିମ୍ହାୟା

ଶ୍ରୀ ସତ୍ୟ ସାଇବାବା
ବ୍ରିନ୍ଦାବନ, କାଡୁଗୋଡି ପୋଷ୍ଟ
ହ୍ୱାଇଟ୍ ଫିଲ୍ଡ, ବାଙ୍ଗାଲୋର

ସତ୍ୟ ସାଇବାବାଙ୍କୁ ୨.୬.୭୬ରେ ଉପର ପତ୍ରଟି ପ୍ର.ନରସିମ୍ହାୟା ଲେଖିଥିଲେ । କିନ୍ତୁ ସାଇବାବାଙ୍କ ପାଖରୁ କୌଣସି ଉତ୍ତର ନ ଆସିବାରୁ ପୁନଶ୍ଚ ତାଙ୍କୁ ଦ୍ୱିତୀୟ ପତ୍ର ୧୬.୬.୭୬ରେ ଲେଖିଥିଲେ । ତାହା ତଳେ ଦିଆଗଲା ।

ମାନନୀୟ ସ୍ୱାମୀଜୀ,

୧୬.୬.୭୬

ମୋର ବିଶ୍ୱାସ ଆପଣ ମୋର ପୂର୍ବ ପତ୍ର ପାଇଛନ୍ତି । ମୁଁ କିନ୍ତୁ ଏ ସମ୍ପର୍କରେ ଏପର୍ଯ୍ୟନ୍ତ ଆପଣଙ୍କଠାରୁ କୌଣସି ଉତ୍ତର ପାଇ ନାହିଁ । ଅନୁରୋଧ କରୁଛି ଆପଣ ପତ୍ରର ଉତ୍ତର ଦେବେ ଏବଂ କେଉଁ ସମୟ, କେଉଁ ସ୍ଥାନ ଓ କେଉଁ ଦିନ ଆମେ ଆପଣଙ୍କୁ ସାକ୍ଷାତ କରିବୁ ତାହା ଜଣାଇବେ । ଆପଣଙ୍କର ଅବଗତି ନିମନ୍ତେ ମୋର ପୂର୍ବ ପତ୍ରର ନକଲ ଏହା ସହିତ ପଠାଇଲି ।

ଶ୍ରଦ୍ଧା ଓ ସମ୍ମାନର ସହ ।

ଆପଣଙ୍କର ବିଶ୍ୱସ୍ତ
ସ୍ୱା- ଏଚ. ନରସିମ୍ହାୟା

ଦ୍ୱିତୀୟ ପତ୍ରଟି ଲେଖିବା ପରେ ମଧ୍ୟ ସାଇବାବାଙ୍କଠାରୁ କୌଣସି ପତ୍ର ନ ପାଇବାରୁ ପ୍ର.ନରସିମ୍ହାୟା ତାଙ୍କୁ ତୃତୀୟ ପତ୍ରଟି ୫.୭.୭୬ରେ ଲେଖିଥିଲେ । ତାହା ତଳେ ପ୍ରଦତ୍ତ ହେଲା-

ମାନନୀୟ ସ୍ୱାମୀଜୀ,

୫.୭.୧୯୭୬

ମୁଁ ଦୁଃଖର ସହ ଜଣାଉଛି ଯେ ଆପଣ ମୋର ପ୍ରଥମ ପତ୍ର ବା ଦ୍ୱିତୀୟ ପତ୍ରର କୌଣସି ଉତ୍ତର ଦେଲେ ନାହିଁ ।

ଆପଣଙ୍କର ଅଲୌକିକତାକୁ ନେଇ ଜନମାନସରେ ଆପଣଙ୍କର କୀର୍ତ୍ତି ଗଢି ଉଠିଛି । ଆପଣ ଜାଣନ୍ତି ଯେଉଁ ମୁହୂର୍ତ୍ତରେ ଆପଣଙ୍କର ଅଲୌକିକ କାର୍ଯ୍ୟ ଭିତ୍ତିହୀନ ବୋଲି ଜଣାପଡିଯିବ ସେ ସମୟରେ ଆପଣ ସାଧାରଣ ସ୍ତରକୁ ଚାଲି ଆସିବେ ।

ଏଣୁ ଜାଣିଶୁଣି ସମସ୍ତ ଅନୁସନ୍ଧାନକୁ ଆପଣ ଏଡାଇ ଦେଇଛନ୍ତି । ଆପଣଙ୍କର ଏହି ଅସହଯୋଗ ପଶ୍ଚାତରେ ହୁଏତ ଆପଣ ଭାବିପାରନ୍ତି ଯେ ଜଣେ ଦେବପୁରୁଷ ଓ ଈଶ୍ୱରଙ୍କର ଅବତାରଙ୍କୁ ସାଧାରଣ ମଣିଷମାନେ କିପରି ପରୀକ୍ଷା କରିବେ ? କିନ୍ତୁ ଏହି ଯୁକ୍ତି ଯେ ସମ୍ପୂର୍ଣ୍ଣ ଅବାନ୍ତର ଏହା କହିବାକୁ ହେବ । ଜଣେ ବ୍ୟକ୍ତି ନିଜର କଥା ଓ କାର୍ଯ୍ୟରେ ସଂଗତି ରକ୍ଷା କରିବା ଆବଶ୍ୟକ । ଜଣେ ବ୍ୟକ୍ତିଙ୍କର ଚରିତ୍ରରୁ ଏତିକି ସର୍ବନିମ୍ନ ଗୁଣ ଆଶା କରାଯାଏ ।

ଅଗଣିତ ବ୍ୟକ୍ତିମାନଙ୍କୁ ବିଭ୍ରାନ୍ତ କରିବା କଷ୍ଟକର ନୁହେଁ, କିନ୍ତୁ କେହି ନିଜର ବିବେକକୁ ଠକିଦେଇ ପାରିବେ ନାହିଁ, ଏହା ଆପଣ ଭଲଭାବରେ ଜାଣନ୍ତି । ଆମେ ଯାହା କିଛି କରୁଛେ ତାର ସାକ୍ଷୀ ହେଉଛି ଆମ ଭିତରର ବିବେକ । ନିଜ ବିବେକ ପାଖରେ ସତ୍ୟବାଦୀ ହେବା ଆମ ସମସ୍ତଙ୍କର ଧେୟ ହେବା ଦରକାର । ଜଣେ ବ୍ୟକ୍ତି ଯେତିକି ଦେବଗୁଣ ସଂପନ୍ନ ହେବେ ସେ ନିଜର ବିବେକ ପାଖରେ ସତ୍ୟନିଷ୍ଠ ହେବା ଆବଶ୍ୟକ ।

ମହାନ ଓ ଦିବ୍ୟ ବ୍ୟକ୍ତିଗଣ ତାଙ୍କର ଜୀବନ କାହାଣୀକୁ ସମସ୍ତଙ୍କ ପାଖରେ ଖୋଲି ଦେବାକୁ ଚାହିଁଛନ୍ତି । ସେମାନେ ଯାହା କରନ୍ତି ବା କୁହନ୍ତି ତାହା ଅନ୍ୟପାଖରେ ସ୍ପଷ୍ଟ କରିଥାନ୍ତି । ଭଗବାନ ବୁଦ୍ଧ, ସ୍ୱାମୀ ବିବେକାନନ୍ଦ ଓ ମହାତ୍ମା ଗାନ୍ଧୀ ସେମାନଙ୍କର କାର୍ଯ୍ୟକୁ ଅନୁଧ୍ୟାନ କରିବା ପରେ ସେମାନଙ୍କ କଥାକୁ ଗ୍ରହଣ କରିବା ପାଇଁ ସେମାନଙ୍କର ସମର୍ଥକମାନଙ୍କୁ କହିଛନ୍ତି । ସେମାନଙ୍କର ଜୀବନ କାହାଣୀ ସମସ୍ତଙ୍କ ପାଖରେ ଖୋଲା ବହି ସଦୃଶ ଥିଲା । କୌଣସି ପ୍ରଶ୍ନକୁ ସେମାନେ ନ୍ୟୂନ କରିନାହାନ୍ତି । ସେମାନଙ୍କ ପାଖରେ ଉଠୁଥିବା ଯେକୌଣସି ସମସ୍ୟାର ଉତ୍ତର ଦେବାକୁ ସେମାନେ ଚେଷ୍ଟା କରିଛନ୍ତି । ସାଧାରଣ ମଣିଷ ପାଖରେ ଅତି ସରଳ ଓ ନିଷ୍ପାପର ଜୀବନ ବଞ୍ଚି ସେମାନେ ଅସାଧାରଣ ହୋଇଛନ୍ତି । ସାମାଜିକ ଗୁରୁତ୍ୱ ଥିବା ଏପରି କୌଣସି କଥାକୁ ସେମାନେ ଗୁପ୍ତରେ କରୁଥିଲେ କି ? ଏହି ମହାନ ବ୍ୟକ୍ତିଗଣ ତଥା ବିଭିନ୍ନ ଧର୍ମର ମହାପୁରୁଷମାନଙ୍କର ଜୀବନଯାତ୍ରାଠାରୁ ଆପଣଙ୍କ ଜୀବନଧାରା ଅଲଗା ବୋଧ ହୁଏ । ସତ୍ୟକୁ ବଳି ଦେଇ ଏକ ଅସତ୍ୟର ଦୁର୍ଗ ଭିତରେ ଗୁପ୍ତ କାର୍ଯ୍ୟ କରିବାକୁ ଆପଣ ପସନ୍ଦ କରୁଛନ୍ତି । କିନ୍ତୁ ସମସ୍ତ ମହାନ ଓ ଧର୍ମ ପ୍ରତି ଅନୁରକ୍ତ ଥିବା ବ୍ୟକ୍ତିମାନେ 'ସତ୍ୟ ହିଁ ଭଗବାନ ଓ ଗୁପ୍ତ ହିଁ ପାପ' ବୋଲି କହିଛନ୍ତି ।

ଦୁର୍ଭାଗ୍ୟର କଥା ଆମ ଦେଶରେ ସାଧାରଣ କୁସଂସ୍କାରଗ୍ରସ୍ତ ବ୍ୟକ୍ତିମାନେ ଜୀବନର ବାସ୍ତବ ସମସ୍ୟାକୁ ଧୈର୍ଯ୍ୟର ସହ ସମ୍ମୁଖୀନ ହୋଇନପାରି ଅନ୍ୟମାନଙ୍କଦ୍ୱାରା ଆଧ୍ୟାତ୍ମିକତା ଆଳରେ ଶୋଷିତ ହେଉଛନ୍ତି ।

ଆପଣଙ୍କୁ ନ୍ୟୂନ କରିବା ବା ଆଘାତ ଦେବା ଏ ପତ୍ରର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ମୁଁ ଏପରି ଲେଖିବାର କାରଣ ହେଉଛି ସତ୍ୟ ଅନୁସନ୍ଧାନ କରିବା ପଶ୍ଚାତରେ ବାଙ୍ଗାଲୋର ବିଶ୍ୱବିଦ୍ୟାଳୟଦ୍ୱାରା ଗଠିତ କମିଟିର ଉଦ୍ଦେଶ୍ୟକୁ ଆପଣଙ୍କ ପାଖରେ ସ୍ପଷ୍ଟ ଭାବରେ ବ୍ୟକ୍ତ କରିବା । ଏହା ହେଉଛି ମୋର ଆପଣଙ୍କୁ ଶେଷ ଚିଠି । ଯଦି ମୁଁ ଆପଣଙ୍କଠାରୁ ଦୁଇ ସପ୍ତାହ ମଧ୍ୟରେ କୌଣସି ଉତ୍ତର ନପାଏ ତେବେ ଏହି ପତ୍ର ଗୁଡିକୁ ବାହାରେ ପ୍ରକାଶ କରିବାକୁ ବାଧ୍ୟ ହେବି । ମୋର ବିଶ୍ୱାସ ଏବେବି ଆପଣ ନିଜର ନୈତିକ ପରାକାଷ୍ଠା ଦେଖାଇ ମୋର ଅନୁରୋଧ ରକ୍ଷା କରିବେ ।

ଆପଣଙ୍କର ବିଶ୍ୱସ୍ତ<br>
ସା- ଏଚ. ନରସିମ୍ହାୟା

ସାଇବାବାଙ୍କ ପାଖରୁ କୌଣସି ଉତ୍ତର ନପାଇ ଏହି ପତ୍ର ଗୁଡିକୁ ପ୍ରକାଶ କରିବା ଦ୍ୱାରା ବିଭିନ୍ନ ପତ୍ର ପତ୍ରିକା ଓ ସମ୍ବାଦପତ୍ରରେ ବେଶ୍ ଆଲୋଡନ ସୃଷ୍ଟି ହୋଇଥିଲା । ଜାତୀୟ ସ୍ତରର ଓ ପ୍ରଧାନ ପ୍ରଧାନ ସମ୍ବାଦପତ୍ରର ସମ୍ପାଦକମାନେ ନରସିମ୍ହାୟା ଓ ସାଇବାବାଙ୍କୁ ସାକ୍ଷାତ କରି ସେମାନଙ୍କର ମତାମତ ଲୋଡିଥିଲେ । ସାଇବାବା ତାଙ୍କ ବକ୍ତବ୍ୟ ଓ ଭାଷଣରେ ନରସିମ୍ହାୟା ଓ କମିଟିର ଅନ୍ୟ ସଦସ୍ୟମାନଙ୍କୁ କଟୁ ସମାଲୋଚନା କରିବା ସହ ନରସିମ୍ହାୟାଙ୍କୁ ଏକ କୀଟ ବୋଲି ଅଭିହିତ କରି ସେ କିପରି ଏକ ସୂର୍ଯ୍ୟର ଆଲୋକ ଶକ୍ତିକୁ ପରୀକ୍ଷା କରିବେ ବୋଲି ପ୍ରଶ୍ନ ଉଠାଇଥିଲେ । ପୁନଶ୍ଚ ବାଙ୍ଗାଲୋରସ୍ଥିତ ହ୍ୱାଇଟ ଫିଲ୍ଡର ସତ୍ୟସାଇ କଲେଜର ଏକ ଉତ୍ସବରେ ବିଶ୍ୱବିଦ୍ୟାଳୟର କାର୍ଯ୍ୟକୁ ସମାଲୋଚନା କରି ନରସିମ୍ହାୟା ଓ ଅନ୍ୟମାନଙ୍କୁ କୁକୁର ଓ ପିମ୍ପୁଡି ବୋଲି କହିଥିଲେ । ସାଇବାବା ନିଜକୁ ଏକ ଅଫୁରନ୍ତ ସୂର୍ଯ୍ୟ ଓ ସୀମାହୀନ ସାଗର ସହିତ ତୁଳନା କରିଥିଲେ । ପୃଥିବୀର କୌଣସି ଶକ୍ତି ତାଙ୍କୁ ପରୀକ୍ଷା କରିପାରିବ ନାହିଁ ବୋଲି ଦମ୍ଭୋକ୍ତି ପ୍ରକାଶ କରିଥିଲେ । ଏହାର କିଛି ଦିନ ପରେ ବାଙ୍ଗାଲୋର ବିଶ୍ୱବିଦ୍ୟାଳୟରେ ଅଲୌକିକ କାର୍ଯ୍ୟ ଦେଖାଇ ଏକ ଭାଷଣ

ଦେବାକୁ ତାଙ୍କୁ ନିମନ୍ତ୍ରଣ କରାଯାଇ ପତ୍ର ଲେଖା ଯାଇଥିଲେ ବି ସେ ନମନ୍ତ୍ରଣ ପତ୍ରର କୌଣସି ଉତ୍ତର ଦେଲେ ନାହିଁ ।

ଏହାପରେ ଅନୁସନ୍ଧାନ କମିଟି ନିଜ ତରଫରୁ ଏକ ନିର୍ଦ୍ଦିଷ୍ଟ ଦିନ ଓ ସମୟରେ ବାଙ୍ଗାଲୋରସ୍ଥିତ ତାଙ୍କ ହ୍ୱାଇଟ ଫିଲ୍ଡ ବାସ ଭବନରେ ଦେଖା କରିବାକୁ ଯିବେ ଜଣାଇ ପତ୍ର ଲେଖିଥିଲେ । ସାଇବାବାଙ୍କର ବିଶିଷ୍ଟ ଭକ୍ତମାନେ ଓ ଅନ୍ୟାନ୍ୟ ଦଲାଲମାନେ ଦେଖା କରିବାକୁ ଗଲେ ଭୟଙ୍କର ପରିଣାମ ହେବ ବୋଲି ଧମକ ଦେଇଥିଲେ । ଏହି ଧମକକୁ ଭ୍ରୂକ୍ଷେପ ନକରି ଯେତେବେଳେ କମିଟିର ସଭ୍ୟ ଓ କେତେକ ସାମ୍ବାଦିକ ସାଇବାବାଙ୍କ ହ୍ୱାଇଟଫିଲ୍ଡସ୍ଥିତ ବାସଭବନରେ ପହଞ୍ଚିଲେ ସେମାନଙ୍କୁ ଭିତରେ ପ୍ରବେଶ କରିବାକୁ ବାଧା ଦିଆଗଲା । ସେମାନଙ୍କୁ କୁହାଗଲା ଯେ ସାଇବାବାଙ୍କ ସହ ସେମାନଙ୍କର ସାକ୍ଷାତ ହୋଇପାରିବ ନାହିଁ । ଫଳରେ ସେମାନେ ନିରାଶ ହୋଇ ଫେରିଥିଲେ ।

ଆନ୍ତର୍ଜାତିକ ସଂଗଠନ 'ଆଧିଦୈବିକ ଘଟଣାର ବୈଜ୍ଞାନିକ ପରୀକ୍ଷା ପାଇଁ କମିଟି' ନାମରେ ଥିବା ଅନୁଷ୍ଠାନର ଭାରତୀୟ ଆବାହକ ବି.ପ୍ରେମାନନ୍ଦ ବିଭିନ୍ନ ସମୟରେ ସାଇବାବାଙ୍କୁ ବି ଆହ୍ୱାନ କରିଛନ୍ତି । କିନ୍ତୁ ସାଇବାବା କେବେବି ତାଙ୍କର ଆହ୍ୱାନ ଗ୍ରହଣ କରିନାହାନ୍ତି । ବି.ପ୍ରେମାନନ୍ଦ ନିଜ ତରଫରୁ ତାଙ୍କୁ ଦେଖା କରିବାକୁ ଯାଇ ନିରାଶ ହୋଇଛନ୍ତି । ଏହାପରେ ସାଇବାବାଙ୍କ ଦ୍ୱାରା ପ୍ରଦର୍ଶିତ ତଥାକଥିତ ଅଲୌକିକ କାର୍ଯ୍ୟକୁ ସେ ଭାରତ ସାରା ବୁଲି ଦେଖାଉଛନ୍ତି ଏବଂ ତା ପଛରେ ଥିବା କୌଶଳ ଲୋକମାନଙ୍କୁ ବୁଝାଉଛନ୍ତି । ଏସବୁ ଘଟଣା ପରିପ୍ରେକ୍ଷୀରେ ସାଇବାବା ନିଜର ଆଭିମୁଖ୍ୟରେ ପରିବର୍ତ୍ତନ କରିଥିବା ମନେହୁଏ ।

ସେ ଯଦିବି କୌଶଳର ସହ ସମସ୍ତ ଆହ୍ୱାନକୁ ସବୁ ସମୟରେ ଏଡାଇ ଯାଇଛନ୍ତି ତଥାପି ନିକଟରେ ଏକ ଘଟଣା ତାଙ୍କର ଯଥାର୍ଥ ସ୍ୱରୂପକୁ ପଦାରେ ପକାଇ ଦେଇଛି । ୧୯୯୨ ମସିହା ଅଗଷ୍ଟ ୨୯ ତାରିଖ ଦିନ ସାଇବାବାଙ୍କ ଅନୁଷ୍ଠାନଦ୍ୱାରା ଚାରିକୋଟି ଟଙ୍କା ବ୍ୟୟରେ ସ୍ଥାପିତ ହୋଇଥିବା ଏକ ଶୀତତାପ ନିୟନ୍ତ୍ରିତ କଲ୍ୟାଣ ମଣ୍ଡପର ଉଦଘାଟନ ହୋଇଥିଲା । ସାଇବାବାଙ୍କର ଉପସ୍ଥିତିରେ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ପି.ଭି.ନରସିଂହରାଓ ଏହାକୁ ଉଦ୍‌ଘାଟନ କରିଥିଲେ । ଏହି ଉଦ୍‌ଘାଟନ

ଉତ୍ସବରେ ଲୋକସଭାର ବାଚସ୍ପତି ଶିବରାଜ ପାଟିଲ, ସରାଷ୍ଟ୍ର ମନ୍ତ୍ରୀ ଏସ.ଭି.ଚୌହାନ, କୃଷି ମନ୍ତ୍ରୀ ବଳରାମ ଝାକଡ, କର୍ଣ୍ଣାଟକ ମୁଖ୍ୟମନ୍ତ୍ରୀ ବାଙ୍ଗରପା, ଆନ୍ଧ୍ର ପ୍ରଦେଶର ମୁଖ୍ୟମନ୍ତ୍ରୀ ବିଜୟ ଭାସ୍କର ରେଡି, ରାଜସ୍ଥାନର ରାଜ୍ୟପାଳ ଚେନ୍ନା ରେଡି, ଆନ୍ଧ୍ର ପ୍ରଦେଶର ରାଜ୍ୟପାଳ କୃଷ୍ଣକାନ୍ତଙ୍କ ପରି ବହୁ ବିଶିଷ୍ଟ ବ୍ୟକ୍ତି ସେଠାରେ ଉପସ୍ଥିତ ଥିଲେ । ଏତେବଡ ଉତ୍ସବର ଭିଡିଓ କ୍ୟାସେଟ କରିବା ପାଇଁ ସରକାରଙ୍କ ଦୂରଦର୍ଶନ ବିଭାଗ ତରଫରୁ ଚାରୋଟି ଦଳ ଯାଇଥିଲେ । ସରକାରୀ ଦୂରଦର୍ଶନ ବ୍ୟତୀତ ଅନେକ ସ୍ୱାଧୀନ ଭିଡିଓ ଗ୍ରାଫରମାନେ ମଧ୍ୟ ଉପସ୍ଥିତ ଥିଲେ । ସାଇବାବା ଉପସ୍ଥିତ ଥିବା ଅନ୍ୟ ଉତ୍ସବ ମାନଙ୍କରେ ଭିଡିଓ ଗ୍ରାଫରମାନଙ୍କୁ ଫଟୋ ଉଠାଇବାକୁ ଦିଆ ନଯିବା ବେଳେ ଏହି ଉତ୍ସବଟିରେ ପ୍ରଧାନମନ୍ତ୍ରୀଙ୍କ ଉପସ୍ଥିତି ଯୋଗୁଁ ଉତ୍ସବର ସମସ୍ତ ବିବରଣୀକୁ ଭିଡିଓ କରିବା ପାଇଁ ଆୟୋଜନ ହୋଇଥିଲା । ଏହି ମଣ୍ଡପର ମୁଖ୍ୟଯନ୍ତ୍ରୀ ଆର. ଚକ୍ରପାଣୀଙ୍କୁ ସାଇବାବା ଏକ ସ୍ମୃତିଫଳକ ପ୍ରଦାନ କରିଥିଲେ । ଏହା ଦେଇ ସାରିବା ପରେ ସାଇବାବା ତାଙ୍କ ହାତକୁ ଉପରକୁ ଟେକି ଶୂନ୍ୟରୁ ଏକ ସୁନ୍ଦର ହାର ଆଣି ତାଙ୍କ ବେକରେ ଝୁଲାଇ ଦେଇଥିଲେ । ଉପସ୍ଥିତ ଜନତାଙ୍କ ଭିତରେ ଏହା ବେଶ୍ କୌତୂହଳ ସୃଷ୍ଟି କରିଥିଲା । ସୁନାହାରଟି ସେ ଯେ ଶୂନ୍ୟରୁ ସୃଷ୍ଟି କରିପାରିଲେ ଏ ବିଶ୍ୱାସ ସେଠାରେ ଖେଳି ଯାଇଥିଲା । ସାଇବାବାଙ୍କର ବ୍ୟକ୍ତିଗତ ସହଯୋଗୀ ତାଙ୍କ ପଛରେ ଥାଇ ପ୍ରଥମେ ତାଙ୍କୁ ସ୍ମୃତିଫଳକ ବଢାଇଦେବା ଅବସରରେ ଲୁଚେଇକରି ସୁନାହାରଟିଏ ବଢାଇଦେବା ଭିଡିଓ କ୍ୟାସେଟ ଗୁଡିକର ସଂକଳନରୁ ଜଣାପଡିଲା । ସାଇବାବା ସୁନାହାରଟିକୁ ଆଣି ତାକୁ ହାତମୁଠା ଭିତରେ ବନ୍ଦ କରି ରଖିଲେ । ସେ ପ୍ରଥମେ ଫଳକଟିକୁ ଦେଇ ସାରିବା ପରେ ହାତର ସୁନାହାରଟିକୁ ଶୂନ୍ୟରୁ ସୃଷ୍ଟିକରି ଦେଉଥିବାର ଅଭିନୟ କଲେ । ଏ ସମସ୍ତ ଘଟଣା ଭିଡିଓ କ୍ୟାସେଟରୁ ଜଣା ପଡିବାପରେ ଭିଡିଓ କ୍ୟାସେଟକୁ ସମ୍ବାଦ ପରିବେଷଣରେ ଦର୍ଶକଙ୍କୁ ଦେଖିବାର ସୁଯୋଗ ଦିଆଗଲା ନାହିଁ । ସମ୍ବାଦପତ୍ର ବିବରଣୀ ଅନୁଯାୟୀ ଦୂରଦର୍ଶନ କର୍ତ୍ତୃପକ୍ଷ ଏସବୁକୁ ଜବତ କରିନେଲେ । କିନ୍ତୁ ଦୂରଦର୍ଶନ ଛଡା ଅନ୍ୟ କ୍ୟାମେରା ଦଳର ଭିଡିଓ କ୍ୟାସେଟରୁ ଏହି ଘଟଣା ପଦାକୁ ଆସିଲା । ସେ ସବୁକୁ ନଷ୍ଟ ବା ଜବତ କରାଯିବା ପୂର୍ବରୁ ତାହାର ଶହ ଶହ ନକଲ କରାଯାଇ ବିକ୍ରି ହେଲା । ସେହି ଭିଡିଓ କ୍ୟାମେରା ଦୃଶ୍ୟରୁ ସାଇବାବାଙ୍କର ତଥାକଥିତ ଅଲୌକିକ ଘଟଣା ଗୁଡିକ ଯେ କେବଳ ହାତ ସଫେଇ ଏସବୁ ଆଜି ସୁସ୍ପଷ୍ଟ ହୋଇଯାଇଛି ।

ଏତଦ୍‌ବ୍ୟତୀତ ସାଇବାବାଙ୍କ ସମ୍ପର୍କରେ ବାହାରିଥିବା କେତେକ ପୁସ୍ତକରୁ ତାଙ୍କର ଠକାମିର ଚିତ୍ର ନିଖୁଣ ଭାବରେ ଜଣାପଡିଛି । ଡଃ ଭଗବନ୍ତମ, ଟାଲବୁକ୍ ପଭୃତି ଏକଦା ତାଙ୍କର ବିଶ୍ୱସ୍ତ ଭକ୍ତମାନେ ତାଙ୍କୁ ଛାଡି ଚାଲିଯାଇଛନ୍ତି । ଟାଲବୁକଙ୍କର "ରାତ୍ରିର ଅବତାର" (Avatar of Night-The Hidden side of Sai Baba, ବିକାଶ ପବ୍ଲିଶିଂ ହାଉସ, ନୂଆଦିଲ୍ଲୀ), ବି.ପ୍ରେମାନନ୍ଦଙ୍କର ଅଲୌକିକତାର ଆକର୍ଷଣ (Lure of Miracles), ଦିବ୍ୟ ଅକ୍ଟୋପସ (Divine Octopus) , ସାଇବାବାଙ୍କ ଶୟନ କକ୍ଷରେ ହତ୍ୟା (Murders in Sai Baba's Bed Room) ସତ୍ୟ ସାଇ ଲୋଭ (Satya Sai Greed ତାଙ୍କ ଦ୍ୱାରା ପୋଡାନୁର, ତାମିଲନାଡୁରୁ ପ୍ରକାଶିତ) ଡାଲ ବେୟେରଷ୍ଟନଙ୍କ ସାଇବାବାଙ୍କ ଅଲୌକିକତା (Sai Baba's Miracles) ଇତ୍ୟାଦି ବହି ଗୁଡିକରେ ସାଇବାବାଙ୍କ ଦୁଷ୍କୃତିର ଅନେକ ବର୍ଣ୍ଣନା ରହିଛି । ଆମ ଦେଶର ସାମାଜିକ ମନସ୍ତତ୍ତ୍ୱରେ ତଥାକଥିତ ଦେବ ପୁରୁଷମାନେ ଏତେ ଉଚ୍ଚ ସ୍ଥାନ ଲାଭ କରିଛନ୍ତି ଯେ ସେମାନଙ୍କୁ ଆଇନ ସ୍ପର୍ଶ କରିପାରେ ନାହିଁ । ଆଧ୍ୟାତ୍ମିକତା ଓ ଧର୍ମର ଆଳରେ ନିଜର ପ୍ରଭାବ ସୃଷ୍ଟିକରି ସେମାନେ ଆଇନକୁ ବେଶ୍ ଫାଙ୍କି ଦେଇପାରନ୍ତି ।



# ଅଲୌକିକ ବୋଧ ହେଉଥିବା କେତେକ ଘଟଣା

ପ୍ରକୃତିରେ ଏପରି କେତେକ ଘଟଣା ଦେଖାଯାଏ ଯାହାକୁ ସାଂପ୍ରତିକ ଜ୍ଞାନର ପରିସର ଭିତରେ ବୁଝାଇ ହୁଏ ନାହିଁ । ସୁତରାଂ କେତେକ ସେଥିପାଇଁ ଘଟଣାମାନଙ୍କର ଅଲୌକିକ ବ୍ୟାଖ୍ୟା ଦେଇଥାନ୍ତି । କିନ୍ତୁ ବିଜ୍ଞାନର ଏକ ମୌଳିକ ନିଷ୍କର୍ଷ ହେଉଛି ଯେ ପ୍ରକୃତିରେ ସୃଷ୍ଟି ହେଉଥିବା ପ୍ରତ୍ୟେକଟି ଘଟଣାର କେବଳ ପ୍ରାକୃତିକ ବ୍ୟାଖ୍ୟା ଗ୍ରହଣୀୟ କାରଣ କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ ଆଧିଦୈବିକ କାରଣ ରହିବା ସମ୍ଭବପର ନୁହେଁ । ଏହାକୁ ବୈଜ୍ଞାନିକ ଚିନ୍ତନର ଏକ ସତଃସିଦ୍ଧ ନିୟମ ଭାବରେ ଗ୍ରହଣ କରାଯାଏ । ଯଦିବା ପ୍ରକୃତିରେ ରହିଥିବା କେତେକ ରହସ୍ୟ ସାଂପ୍ରତିକ ଅନ୍ୱେଷାରେ ବୁଝାଇବା ସମ୍ଭବପର ନୁହେଁ ତଥାପି ଜ୍ଞାନର ବିକାଶ ସହିତ ଅତୀତରେ ରହସ୍ୟଜନକ ମନେହେଉଥିବା ବହୁ ଘଟଣାକୁ ସାଂପ୍ରତିକ ବୈଜ୍ଞାନିକ ନିୟମ ମାନଦଣ୍ଡରେ ବୁଝିବା ସମ୍ଭବପର ହେଉଛି । ସେହିପରି ଆଜି ଯାହା ବ୍ୟାଖ୍ୟା ହୋଇପାରୁନାହିଁ ତାକୁ ଆଗାମୀ ଦିନ ଗୁଡିକରେ ବୁଝିବା ଅସମ୍ଭବ ନୁହେଁ । କିନ୍ତୁ ପ୍ରାକୃତିକ ଘଟଣାର ଆଧିଦୈବିକ ବିଶ୍ଳେଷଣ ବୈଜ୍ଞାନିକ ଜ୍ଞାନର ପରିପନ୍ଥୀ ।

ପ୍ରାକୃତିକ ଘଟଣା ପରି ଅନ୍ୟାନ୍ୟ କେତେକ ଘଟଣା ମଧ୍ୟ ସମୟରେ ମଣିଷକୁ ରହସ୍ୟବୋଧ ହୋଇଥାଏ । ବିଶେଷକରି ଧର୍ମୀୟ ଉପାସନା, ଐଶ୍ୱରୀୟ ବିଶ୍ୱାସ ଇତ୍ୟାଦିଦ୍ୱାରା କେତେକ ଘଟଣାର ଉତ୍ପତ୍ତିକୁ ରହସ୍ୟମୂଳକ ଭାବେ ବ୍ୟାଖ୍ୟା କରଯାଏ । ବିଭିନ୍ନ ଧର୍ମମାନଙ୍କରେ ଓ ଧର୍ମର ବହୁଳ ପ୍ରଭାବ ଥିବା ସମାଜରେ ଏହି ପ୍ରକାରର କେତେକ ବିଶ୍ୱାସ ପ୍ରଚଳିତ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ପୂର୍ବରୁ ବିଭିନ୍ନ ସମାଜରେ ଧର୍ମର ଯଥେଷ୍ଟ ପ୍ରଭାବ ରହିବା ଦୃଷ୍ଟିଗୋଚର ହୁଏ । ଆଧୁନିକ ଚିକିତ୍ସା ବିଜ୍ଞାନର ବିକାଶ ପୂର୍ବରୁ ରୋଗମାନଙ୍କର ଚିକିତ୍ସା କ୍ଷେତ୍ରରେ ନାନା ପୂଜା, ଅଲୌକିକ ବିଶ୍ୱାସ, ଉପାସନା, ବଳି ଇତ୍ୟାଦି ରହିବା ଦେଖାଯାଏ । ଏବେବି କେତେକ ଆଦିବାସୀ ସମାଜରେ ରୋଗର ନିରାକରଣ ପାଇଁ ଭୂତ, ପ୍ରେତ ବା ସେପରି କେତେକ କାଳ୍ପନିକ ଦେବାଦେବୀଙ୍କୁ ପୂଜା କରାଯାଏ । ରୋଗବ୍ୟାଧି ଦେବାଦେବୀଙ୍କର କ୍ରୋଧର

ଉତ୍ପନ୍ନ ହୁଏ ବୋଲି ବିଶ୍ୱାସ ବହୁଦିନ ଧରି ସମାଜରେ ରହିଥିବା ସମାଜଶାସ୍ତ୍ରିକ ଅଧ୍ୟୟନରୁ ଜଣାପଡେ । କିନ୍ତୁ ଆଧୁନିକ ଚିକିତ୍ସା ବିଜ୍ଞାନ ରୋଗମାନଙ୍କର କାରଣ, ପ୍ରତିଷେଧ ଓ ନିରାକରଣ କ୍ଷେତ୍ରରେ ସଂପୂର୍ଣ୍ଣଭାବରେ ବିଜ୍ଞାନ ସମ୍ମତ ଧାରାରେ ବିଶ୍ଳେଷଣ କରିବା ଦେଖାଯାଏ । ମଣିଷ ସମାଜରେ ଥିବା କେତେକ ରୋଗର ନିଦାନ ଅଦ୍ୟାବଧି ମଣିଷ ଜ୍ଞାନର ବହିର୍ଭୂତ ହେଲେ ବି ସେସବୁ ସମ୍ପର୍କରେ ଆଗାମୀ ଦିନ ଗୁଡିକରେ ଚିକିତ୍ସା ବିଜ୍ଞାନ ଜାଣିବାକୁ ସମର୍ଥ ହୋଇପାରିବ ବୋଲି ଆଶା କରାଯାଏ ।

ଏହି ପୃଷ୍ଠଭୂମିରେ କେତେଗୁଡିଏ ଘଟଣା ଯାହା ସ୍ଥଳ ବିଶେଷରେ ଅଲୌକିକ ମନେହୁଏ ତା'ର ବ୍ୟାଖ୍ୟା କରିବା ପାଇଁ କୋଭୁରଙ୍କର ଚେଷ୍ଟା ଉଲ୍ଲେଖନୀୟ । ବିଜ୍ଞାନ ସମ୍ମତ ବ୍ୟାଖ୍ୟା ଦ୍ୱାରା ସେ ତଥାକଥିତ ଦୈବୀ ବିଶ୍ୱାସ ଓ ଅଲୌକିକ ଦୃଷ୍ଟିଭଙ୍ଗୀକୁ ଦୂର କରିବାରେ ସମର୍ଥ ହୋଇଛନ୍ତି । ନିମ୍ନରେ ସେହି ପ୍ରକାରର କେତେକ ଘଟଣାର ବିଜ୍ଞାନ ସମ୍ମତ ବ୍ୟାଖ୍ୟା ଆଲୋଚନା କରାଯାଇଛି ।

## ଝୁଲା କବାଡି :

ଶ୍ରୀଲଙ୍କାରେ ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ କେତେକ ବ୍ୟକ୍ତି ପୂଜା ଆରାଧନା କରି ପିଠିକୁ ପାଶରେ ଫୋଡି ଶୂନ୍ୟରେ ଝୁଲନ୍ତି । ସେମାନଙ୍କର ଏହି କାର୍ଯ୍ୟକୁ ଏକ ଅଲୌକିକ କ୍ରିୟା ଭାବରେ ଗ୍ରହଣ କରାଯାଏ । ଓଡିଶାରେ ହେଉଥିବା ଝାମୁଯାତ୍ରା ଭଳି ଶ୍ରୀଲଙ୍କାରେ କେତେକ ଲୋକ ବର୍ଷର ନିର୍ଦ୍ଦିଷ୍ଟ ସମୟରେ ନିଆଁରେ ଚାଲିବା ଓ ପିଠିରେ ପାଶ ଫୋଡି ଶୂନ୍ୟରେ ଝୁଲିବା ଦେଖାଇଥାନ୍ତି । ଶେଷୋକ୍ତ ଘଟଣାଟିକୁ ଝୁଲା କବାଡି କୁହାଯାଏ । ଏହା ଦୈବୀ କରଣାରୁ ସମ୍ଭବ ହେଉଛି ବୋଲି ସାଧାରଣତଃ ବିଶ୍ୱାସ କରାଯାଏ । ଏପରିକି ଏ କାର୍ଯ୍ୟଟି ଯେ ସଂପୂର୍ଣ୍ଣ ଅଲୌକିକ ତାହା କେତେକ ଶିକ୍ଷିତ ଲୋକ ମଧ୍ୟ ବିଶ୍ୱାସ କରନ୍ତି । ଶ୍ରୀ ଇନ୍ଦ୍ରକୁମାର କଲମ୍ବୋ ମେଡିକାଲ କଲେଜରେ ଡାକ୍ତରୀ ପଢୁଥିବା ବେଳେ କଲମ୍ବୋରୁ ପ୍ରକାଶ ପାଉଥିବା "ଡେଲି ମିରର" ରେ ଝୁଲା କବାଡି ଉପରେ ଏକ ପ୍ରବନ୍ଧ ଲେଖି ତାହା ଚିକିତ୍ସା ବିଜ୍ଞାନର ଉର୍ଦ୍ଧ୍ୱରେ ବୋଲି ମତ ପ୍ରକାଶ କରିଥିଲେ । ସେ ଲେଖିଥିଲେ ଯେ ଏହି ଝୁଲା କବାଡି ଦୈବୀ ବିଶ୍ୱାସ ଉପରେ ଆଧାରିତ ଯାହା ଚିକିତ୍ସା ବିଜ୍ଞାନ ବା ପ୍ରାକୃତିକ ନିୟମଧାରାରେ ବୁଝାଇବା ସମ୍ଭବପର ନୁହଁ । ଧର୍ମ ବିଶ୍ୱାସୀ ଲୋକମାନେ ଏ ସମ୍ପର୍କରେ ଯେଉଁ ମତ ପୋଷଣ କରିଥାନ୍ତି ଡାକ୍ତର ଇନ୍ଦ୍ରକୁମାର ସେହି ଦୃଷ୍ଟିଭଙ୍ଗୀ ନିଜ ପ୍ରବନ୍ଧରେ ବ୍ୟକ୍ତ

କରିଥିଲେ । ସେ ପୁନଶ୍ଚ ଲେଖିଥିଲେ ଯେ ସାଧାରଣ ଅବସ୍ଥାରେ ଓ ଏପରିକି କୌଣସି ଭକ୍ତ ଏହି ପାଶରେ ପିଠି ଫୋଡିଲେ ଯନ୍ତ୍ରଣା ପାଇବା, ରକ୍ତସ୍ରାବ ହେବା, ସ୍ନାୟବିକ ଆଘାତ ପାଇବା, ଧନୁଷ୍ଟଙ୍କାର ବା ଜୀବାଣୁଦ୍ୱାରା ଆକ୍ରାନ୍ତ ହେବାର ସମ୍ଭାବନା ରହିଥାଏ । କିନ୍ତୁ ଜଣେ ଭକ୍ତ ନିର୍ଦ୍ଦିଷ୍ଟ ଉପାସନା ପରେ ଝୁଲା କବାଡିରେ ରହିବାଦ୍ୱାରା ତାର ରକ୍ତସ୍ରାବ ହୁଏ ନାହିଁ କି ସେ କଷ୍ଟ ଅନୁଭବ କରେ ନାହିଁ । ଏପରିକି ସେହି ବ୍ୟକ୍ତି ଝୁଲା କବାଡିରେ ଝୁଲିବାଦ୍ୱାରା ତାର ପିଠିର ସ୍ନାୟୁ ଶରୀର ଓଜନର ଚାପରେ ଚିରିହୋଇ ଯାଏ ନାହିଁ । ସୁତରାଂ ତାଙ୍କ ମତରେ ଝୁଲା କବାଡି ଏକ ରହସ୍ୟମୟ ବ୍ୟାପାର ଓ ବିନା ଦୈବୀ ଆଶୀର୍ବାଦରେ ଏହା ସମ୍ଭବ ନୁହେଁ ।

ଲୋକ ବିଶ୍ୱାସ ତଥା ଜଣେ ଚିକିତ୍ସା ବିଜ୍ଞାନ ଛାତ୍ରଙ୍କର ଏହି ମନ୍ତବ୍ୟଦ୍ୱାରା ଏହା ଯେ ବିଜ୍ଞାନର ବହିର୍ଭୂତ ଓ ଅଲୌକିକ ଏହି ଧାରଣା ଅନେକ ପୋଷଣ କରିବା ଅସମ୍ଭବ ନୁହେଁ । କିନ୍ତୁ ଶ୍ରୀଲଙ୍କା ହେତୁବାଦୀ ସମାଜର ଉପସଭାପତି ଡାକ୍ତର କାର୍ଲ ଫୋନେସ୍କା ନିଆଁ ଉପରେ ଚାଲିବା ଓ ଝୁଲା କବାଡିରେ ଝୁଲିବା ସାଧାରଣରେ ପ୍ରଦର୍ଶନ କରାଇ ତାହାର ରହସ୍ୟକୁ ବୁଝାଇବାରେ ସମର୍ଥ ହୋଇଛନ୍ତି । କୋଭୁର ଝୁଲା କବାଡି ପଶ୍ଚାତରେ ଥିବା ବୈଜ୍ଞାନିକ ବ୍ୟାଖ୍ୟା କରଛନ୍ତି ।

ପ୍ରଶ୍ନ ହେଉଛି ପିଠିକୁ ଫୋଡି ଶୂନ୍ୟରେ ଝୁଲିବାଦ୍ୱାରା ଜଣେ ବ୍ୟକ୍ତି କାହିଁକି ଯନ୍ତ୍ରଣା ପାଏ ନାହିଁ ବା ଅନ୍ୟ ଭାବରେ କହିଲେ ନିଜର ମାଂସ ଭିତରେ ଫୋଡା ହୋଇଥିବା ପାଶର ଯନ୍ତ୍ରଣାକୁ ଜଣେ ବ୍ୟକ୍ତି କିପରି ସହ୍ୟ କରେ ? ଶରୀର ବିଜ୍ଞାନ ଅନୁଯାୟୀ ଯନ୍ତ୍ରଣାର ଦୁଇଟି ଲକ୍ଷଣ ଥାଏ; ଯଥା- ଯନ୍ତ୍ରଣାର ଅନୁଭୂତି ଓ ଅନୁଭୂତି ପଶ୍ଚାତରେ ଥିବା ଭାବାତ୍ମକ ପ୍ରତିକ୍ରିୟା । ଜଣେ ବ୍ୟକ୍ତିର କୌଣସି ଯନ୍ତ୍ରଣାରେ ପ୍ରତିକ୍ରିୟା ଯନ୍ତ୍ରଣାର କାରଣ ନେଇ ପ୍ରଭାବିତ ହୋଇଥାଏ । ଯନ୍ତ୍ରଣାର ଅନୁଭୂତି ଅପେକ୍ଷା ଯନ୍ତ୍ରଣା ପ୍ରତି ଜଣକର ମାନସିକ ପ୍ରତିକ୍ରିୟା ତାର କଷ୍ଟକୁ ପ୍ରଭାବିତ କରିଥାଏ । ଜଣେ ବ୍ୟକ୍ତି ସ୍ୱତଃ ପ୍ରବୃତ୍ତ ହୋଇ ଏହି କାର୍ଯ୍ୟ କରୁଥିବାରୁ ତତ୍‌ସମ୍ପର୍କୀୟ କ୍ଳେଶକୁ ସେ ମାନସିକ ସ୍ତରରେ ଗ୍ରହଣ କରିନିଏ । ଫଳରେ ଏଥିରେ ହେଉଥିବା କଷ୍ଟ ପ୍ରତି ସେ ପ୍ରତିକ୍ରିୟାଶୀଳ ହୁଏନାହିଁ । ସୁତରାଂ ସେ ଅନୁଭବ କରୁଥିବା ଯନ୍ତ୍ରଣା ଜନିତ କଷ୍ଟକୁ ସହ୍ୟ କରିନିଏ । ଯୁଦ୍ଧଭୂମିରେ ଲହୁଲୁହାଣ ହୋଇଥିବା ଜଣେ ଆହତ ସୈନିକ ସେହି ସମୟରେ ଭୟଙ୍କର ଯନ୍ତ୍ରଣାର ଅନୁଭୂତିକୁ ସହି ନେଇଥାଏ ।

ସାମୟିକ ଭାବରେ ନିଜର ଯନ୍ତ୍ରଣା ଉପରେ ଗୁରୁତ୍ୱ ନଦେଇ ସେହି ସମୟର ଆହ୍ୱାନକୁ ସମ୍ମୁଖୀନ ହେବାକୁ ସେ ମାନସିକ ବଳ ରଖେ । ଏପରିକି ଏକ ଭୟଙ୍କର ଆବେଗ, ତାହା ଧର୍ମଗତ ହେଉ ବା ଧର୍ମଗତ ନ ହେଉ, ଦ୍ୱାରା ପରିଚାଳିତ ହୋଇଥିବା ବ୍ୟକ୍ତି କୌଣସି କଷ୍ଟକୁ ସହି ନେଇଥାଏ । ଝୁଲା କବାଡିରେ ଝୁଲୁଥିବା ବ୍ୟକ୍ତି ଏକ ଧର୍ମୀୟ ଆବେଗଦ୍ୱାରା ପରିଚାଳିତ ହୁଏ, ଫଳରେ ଯନ୍ତ୍ରଣାକୁ ସହି ନେଇଥାଏ । ଏନ୍.ସି.ଜୟସୂରିୟା ଜଣେ ହେତୁବାଦୀ ଓ କୌଣସି ଅଲୌକିକ ଶକ୍ତିରେ ବିଶ୍ୱାସ କରନ୍ତି ନାହିଁ । ସେ ତିନୋଟି ଜାଗାରେ ଝୁଲା କବାଡିରେ ଝୁଲି ସାଧାରଣରେ ଏହା ଦେଖାଇଥିଲେ । ଏଥିରେ ହେଉଥିବା କଷ୍ଟକୁ ସେ ସହି ନେଉଥିଲେ ।

ପିଠିକୁ ଫୋଡିଥିବା ବ୍ୟକ୍ତିର ପିଠିରୁ ରକ୍ତସ୍ରାବ ନ ହେବାକୁ ଏକ ଅଲୌକିକ କାର୍ଯ୍ୟ ବୋଲି ବିଶ୍ୱାସ କରାଯାଏ । କୌଣସି କ୍ଷତ ସମୟରେ ରକ୍ତସ୍ରାବ କେତେକ ପ୍ରାକୃତିକ ଲକ୍ଷଣ ଉପରେ ନିର୍ଭର କରେ । ଶରୀରରୁ ନିର୍ଗତ ହେଉଥିବା ହର୍ମୋନ ଆଡ୍ରିନାଲାଇନ ରକ୍ତ କ୍ଷରଣକୁ ବନ୍ଦ କରିବାରେ ସାହାଯ୍ୟ କରେ । ଯେଉଁ ଟିସୁ ମଧ୍ୟ ଦେଇ ପାଶ ଫୋଡାଯାଏ ତା ମଧ୍ୟରେ ଆଡ୍ରିନାଲାଇନ କ୍ଷରଣ ହେତୁ ରକ୍ତସ୍ରାବ ହୋଇନଥାଏ । ରକ୍ତକୁ ଜମାଟ ବାନ୍ଧିବାରେ ଥିବା ପ୍ରତିଷେଧକ ବ୍ୟବସ୍ଥାଦ୍ୱାରା ଝୁଲା କବାଡିରେ ରକ୍ତ କ୍ଷରଣ ବନ୍ଦ ହୋଇଥାଏ । ଏହାଛଡା ଯେଉଁ ଟିସୁ ମଧ୍ୟ ଦେଇ ପାଶ ଫୋଡାଯାଏ ପ୍ରଥମେ ସେ ସ୍ଥାନକୁ ବଧିର କରାଯାଏ । ପାଶ ଫୋଡିବା ପୂର୍ବରୁ ପ୍ରଥମେ ସ୍ଥାନଟିକୁ ବଧିରା କରାଯାଉଥିବାରୁ ଟିସୁ ଉପରେ ରକ୍ତ ଜମାଟ ବାନ୍ଧିବାର କ୍ରିୟା ଆରମ୍ଭ ହୋଇଥାଏ । ସୁତରାଂ ଏହି ସମସ୍ତ କାରଣ ଯୋଗୁଁ ରକ୍ତସ୍ରାବ ହୁଏ ନାହିଁ । ଯେଉଁମାନେ ଏହି ଅଲୌକିକ ଭାବନାକୁ ଦୂର କରିବାକୁ ଯାଇ ଏହା ପ୍ରଦର୍ଶନ କରନ୍ତି ସେମାନଙ୍କ କ୍ଷେତ୍ରରେ ମଧ୍ୟ ରକ୍ତସ୍ରାବ ହୋଇନଥାଏ । ଜୟସୁରିୟା କୌଣସି ପୂଜା ବା ପ୍ରାର୍ଥନା ନକରି ପିଠିରେ ପାଶ ଫୋଡି ବିନା ରକ୍ତସ୍ରାବରେ ଏହା ପ୍ରଦର୍ଶନ କରି ପାରୁଛନ୍ତି ।

ଝୁଲା କବାଡିରେ ପିଠିକୁ ଫୋଡୁଥିବା ବ୍ୟକ୍ତିମାନେ ଧନୁଷ୍ଟଙ୍କାର ବା ସେପରି କିଛି ମାରାତ୍ମକ ଜୀବାଣୁଦ୍ୱାରା କାହିଁକି ଆକ୍ରାନ୍ତ ହୁଅନ୍ତି ନାହିଁ ବୋଲି ପ୍ରଶ୍ନ ଉଠିପାରେ । ସେମାନେ କୌଣସି ଡାକ୍ତରୀ ପ୍ରତିଷେଧକ ବ୍ୟବସ୍ଥା କରୁନଥିଲେ ମଧ୍ୟ କୌଣସି ପ୍ରକାର ରୋଗ ଜୀବାଣୁରେ ଆକ୍ରାନ୍ତ ହେବାର ଦୃଷ୍ଟାନ୍ତ ଦେଖା ନଯିବାରୁ ଏହା ବିଶ୍ୱାସ

କରାଯାଏ ଯେ ସେମାନଙ୍କୁ ଦୈବୀ ଆଶୀର୍ବାଦ ମିଳିଥାଏ । ଝୁଲା କବାଡି ଜନିତ ପୂଜା ଆରାଧନା ଅନେକ ଭକ୍ତ ନିଷ୍ଠାର ସହ କରିଥାନ୍ତି ଓ ସେମାନଙ୍କ ମଧ୍ୟରୁ କେତେକ ପିଠିରେ ପାଶ ଫୋଡନ୍ତି । କୋଭୁର ଝୁଲାକବାଡିରେ ଝୁଲୁଥିବା ଭକ୍ତମାନଙ୍କ ଉପରେ ଅନୁସନ୍ଧାନ କରି ସେମାନେ ଧନୁଷ୍ଟଙ୍କାରରେ ଆକ୍ରାନ୍ତ ହୋଇନଥିବା ଦେଖିଛନ୍ତି । କିନ୍ତୁ ଅଧିକାଂଶଙ୍କ କ୍ଷେତ୍ରରେ କ୍ଷତ ପୂଜ ହୋଇ ପାଚିବା ସେ ଦେଖିଛନ୍ତି । ଏପରିକି ଜଣେ ଜଣେ ଭକ୍ତଙ୍କ ଉପରେ ଅନୁସନ୍ଧାନରୁ ଜଣାଯାଇଛି ଯେ ସେମାନଙ୍କ ଦେହର କେତେକ କ୍ଷତ ଶୁଖି ଯାଉଥିବା ବେଳେ ଅନ୍ୟ କେତେକ କ୍ଷତ ପାଚି ପୂଜ ହେଉଛି । ଏଥିରୁ କ'ଣ ଧରାଯିବ ଯେ କେତେକ କ୍ଷତ ଶୁଖିଯିବା ପାଇଁ ଦିବ୍ୟ ଆଶୀର୍ବାଦ ମିଳୁଛି କିନ୍ତୁ ଅନ୍ୟ କ୍ଷତ ପାଇଁ ନୁହେଁ ? ବରଂ ଏ କ୍ଷେତ୍ରରେ ଏକ ବିଜ୍ଞାନ ସମ୍ମତ ବ୍ୟାଖ୍ୟାର ଅନୁସନ୍ଧାନ କରାଯିବା ଆବଶ୍ୟକ ।

କୋଭୁରଙ୍କ ମତରେ ଆମ ପରିବେଶରେ ଥିବା ଅପର୍ଯ୍ୟାପ୍ତ ଜୀବାଣୁମାନଙ୍କ ମଧ୍ୟରେ ଅଳ୍ପ ସଂଖ୍ୟକ ଜୀବାଣୁ ଶରୀର ପାଇଁ କ୍ଷତିକାରକ । କ୍ଷତିକାରକ ଜୀବାଣୁ ଶରୀରରେ ପ୍ରବେଶ କରିଥିଲେ ସେମାନଙ୍କର ସଂଖ୍ୟା ଓ ତୀବ୍ରତା, ଜଣଙ୍କର ସ୍ୱାସ୍ଥ୍ୟ ଓ ଶରୀରର ପ୍ରତିଷେଧକ ବ୍ୟବସ୍ଥା ଇତ୍ୟାଦି ଉପରେ କ୍ଷତ ଶୁଖିବା ବା ପାଚିବା ନିର୍ଭର କରିଥାଏ । ଅର୍ଥାତ୍ ଯଦି ବ୍ୟକ୍ତିର ପ୍ରତିଷେଧକ ବ୍ୟବସ୍ଥା ଦୁର୍ବଳ ଥାଏ ବା ଶରୀରରେ ପ୍ରବେଶ କରିଥିବା ଜୀବାଣୁଙ୍କର ତୀବ୍ରତା ଅଧିକ ହୁଏ ତେବେ ବ୍ୟକ୍ତିର କ୍ଷତ ପୂଜ ହୋଇଥାଏ ବା ପାଚିଥାଏ । ଆମର ଦୈନନ୍ଦିନ ଜୀବନରେ ଅନେକ କ୍ଷତ ଛାଏଁ ଛାଏଁ ଶୁଖି ଯାଇଥାଏ ।

କ୍ଲୋଷ୍ଟ୍ରିଡିଆ ନାମକ ମାରାତ୍ମକ ରୋଗ ଜୀବାଣୁ ବିଷ୍ଠା ବା ସାରଯୁକ୍ତ ମାଟିରେ ରହିବାର ସମ୍ଭାବନା ଥାଏ ଯଦ୍ୱାରା ଧନୁଷ୍ଟଙ୍କାର ପରି ରୋଗ ସୃଷ୍ଟି ହୋଇଥାଏ । ହୃଷ୍ଟ ପୁଷ୍ଟ ଯୁବକ ଲୋକମାନେ ଝୁଲା କବାଡିରେ ଝୁଲିଥାନ୍ତି ଓ ସେମାନଙ୍କର କ୍ଷତ ଧନୁଷ୍ଟଙ୍କାରରେ ଆକ୍ରାନ୍ତ ହେବା ପରି ମଇଳା ସଂସର୍ଗରେ ଆସି ନଥାଏ । ଶରୀରରେ ସୃଷ୍ଟି ହେଉଥିବା ନାନା କ୍ଷତ ଭିତରୁ ଧନୁଷ୍ଟଙ୍କାର ପରି ରୋଗରେ ଆକ୍ରାନ୍ତ ହେଉଥିବା ଲୋକଙ୍କ ସଂଖ୍ୟା ଅତି ଅଳ୍ପ । କିନ୍ତୁ ଥରେ ଏହା ଶରୀରରେ ସଂକ୍ରମିତ ହେଲେ ଏହା ଅତି ମାରାତ୍ମକ ହେବାର ସମ୍ଭାବନା ଥିବାରୁ ଡାକ୍ତରମାନେ ଏହା ସମ୍ପର୍କରେ ଓ ଏହାର ଭୟାବହତା ନେଇ ଲୋକମାନଙ୍କୁ ସଚେତନ କରାଇଥାନ୍ତି । ଏହା ଏକ ସାଧାରଣ

ରୋଗ ନ ହୋଇ ଦୁର୍ଲଭ ରୋଗ ହୋଇଥିବାରୁ ଦୈବୀ ଆଶୀର୍ବାଦ ଯୋଗୁଁ ଝୁଲା କବାଡିରେ ଝୁଲୁଥିବା ଭକ୍ତମାନେ ରୋଗରେ ଆକ୍ରାନ୍ତ ନ ହେବା କୁହାଯାଇ ପାରିବ ନାହିଁ । ଅର୍ଥାତ୍ ଏହି ରୋଗ ଏକ ବିରଳ ରୋଗ ହେବା ଯୋଗୁଁ ଝୁଲା କବାଡିରେ ଝୁଲୁଥିବା ଭକ୍ତମାନେ ବା ହେତୁବାଦୀମାନେ ଏଥିରେ ଆକ୍ରାନ୍ତ ହୋଇ ନାହାନ୍ତି ।

ସବୁଠାରୁ କୌତୂହଳର ବିଷୟ ହେଉଛି ଜଣେ ବ୍ୟକ୍ତି ଛ'ଟି ପାଶରେ ଝୁଲିବା ବେଳେ ତା ପିଠିର ମାଂସ ବା ପେଶୀ ଶରୀରର ଓଜନ ଚାପରେ କାହିଁକି ଚିରିଯାଉ ନାହିଁ ? ପଦାର୍ଥ ବିଜ୍ଞାନର ନିୟମକୁ ଜାଣିଲେ ଏହାକୁ ବୁଝିହେବ । ଗୋଟିଏ ୨୦ କିଲୋ ଓଜନର ବସ୍ତୁକୁ ଗୋଟିଏ ସ୍ପ୍ରିଙ୍ଗରେ ଝୁଲାଇଲେ ତାର ଓଜନ ୨୦ କିଲୋ ରହିବା ବେଳେ ତାକୁ ଦୁଇଟି ସ୍ପ୍ରିଙ୍ଗରେ ଝୁଲାଇଲେ ତାର ଓଜନ ପ୍ରତ୍ୟେକଟିରେ ୨୦ ÷୨ = ୧୦ କିଲୋ ଲେଖାଏଁ ହେବ । ସୁତରାଂ ୬୦ କିଲୋ ଓଜନର ବ୍ୟକ୍ତି ଛ'ଟି ପାଶରେ ଝୁଲିବାଦ୍ୱାରା ପ୍ରତ୍ୟେକ ଥିରେ ଶରୀରର ଓଜନ ୬୦÷୬ =୧୦ କିଲୋଗ୍ରାମ ରହେ । ଜଣେ ଯେତେ ବଡଭକ୍ତ ହେଲେ ବି ଗୋଟିଏ ପାଶରେ ଝୁଲିବା ସମ୍ଭବ ହେବ ନାହିଁ ଓ ସେପରି ହେଲେ ତାର ପେଶୀ କ୍ଷତ ବିକ୍ଷତ ହେବାର ସମ୍ଭାବନା ରହିବ ।

ସୁତରାଂ ଝୁଲା୍ କବାଡି ପଶ୍ଚାତରେ ଥିବା ବିଶ୍ୱାସ ଓ ଉପାସନା ରହସ୍ୟାବୃତ ନୁହେଁ । ଏହା ଦୈବୀ କୃପାରୁ ହେବା ବିଶ୍ୱାସ ପଶ୍ଚାତରେ ସେପରି କିଛି ଯୁକ୍ତିନିଷ୍ଠ ଆଧାର ନାହିଁ ।

**ଜାଜ୍ୱଲ୍ୟମାନ ଜଙ୍ଗଲ :**

ଶ୍ରୀଲଙ୍କାର ମାଙ୍କୁଲାମ ମୁଲ୍ଲାଇତିରୁ ରାସ୍ତାରେ ଓଡୁଚୁଦନ ଜାଗାରେ ଏକ ଜଳ ପ୍ରପାତ ରହିଛି । ଜଳ-ପ୍ରପାତ ଯୋଗୁଁ ସେଠାରେ ଝରଣା ଓ ଘଞ୍ଚ ଜଙ୍ଗଲ ମଧ୍ୟ ଅଛି । ସେହି ଜଙ୍ଗଲ ବହୁ ଜୀବ ଜନ୍ତୁଙ୍କର ଆଶ୍ରୟସ୍ଥଳୀ । ସେଠିକାର ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟ ଅତି ମନୋହର । ସୁତରାଂ ପ୍ରକୃତିର ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ପାଇଁ ବା ଶିକାର ଉଦ୍ଦେଶ୍ୟରେ ବିଭିନ୍ନ ଭ୍ରମଣକାରୀ ଦଳ ସେଠାକୁ ଯାଇଥାନ୍ତି ।

ଜାଫନା କେନ୍ଦ୍ରୀୟ ମହାବିଦ୍ୟାଳୟର ଦୁଇ ଜଣ ସହକର୍ମୀ ସାମୁଏଲ ଜାକବ ଓ ଏସ.ଏ.ମାନଙ୍କ ଶିକାରୀ ଦଳ ସହିତ ସାଥୀ ହୋଇ ୧୯୩୦ ରେ କୋଭୁର ଜଳପ୍ରପାତ ସ୍ଥଳକୁ ଯାଇଥିଲେ । ମାଙ୍କୁଲାମର ବିଶିଷ୍ଟ ଶିକାରୀ ଚିନ୍ନା ଯେ କି ଓଡୁଚୁଦନ

ଜଙ୍ଗଲର ପ୍ରତ୍ୟେକଟି ସ୍ଥାନ ସହିତ ପରିଚିତ ତାଙ୍କର ଗାଇଡ୍ ଭାବରେ ଥିଲେ । ସ୍ଥାନଟିର ନକ୍ସା ଓ ମାନଚିତ୍ର ଦେଖାଇ ଚିନ୍ନା ବିଭିନ୍ନ ସ୍ଥଳର ସୂଚନା ଦେଲେ । ମାଙ୍କୁଲାମଠାରୁ ତିନି କିଲୋମିଟର ଦୂରରେ ଥିବା ଓଲମାତୁ ନାମକ ଏକ ସ୍ଥାନ ଶିକାର ଓ ମନୋରଞ୍ଜନ ପାଇଁ ସେମାନେ ବାଛିଲେ । ଫଳରେ ମାଙ୍କୁଲାମ ଅତିଥି ଭବନରୁ ରାତ୍ରିରେ ଜଳ ପ୍ରପାତକୁ ଦେଖି ସେହି ସ୍ଥାନକୁ ଯିବା ସ୍ଥିର କଲେ । କୋଭୁର ଓ ତାଙ୍କ ଦଳ ଯେଉଁ ସ୍ଥାନଟିକୁ ଯିବାକୁ ସ୍ଥିର କଲେ ସେହି ଜାଗାଟି ସମ୍ପର୍କରେ ଚିନ୍ନା କହିଲେ ଯେ ଯଦିବା ସେହି ସ୍ଥଳରେ ନାନା ଜୀବ ଜନ୍ତୁ ରହିଛନ୍ତି ହେଲେ ସେହି ସ୍ଥାନଟିକୁ ଯାଇ ଶିକାର କରିବା ସମ୍ଭବ ନୁହେଁ । ସେହି ସ୍ଥାନରେ କାଦେରୀ ଭୂତ ରହିଛି ଓ ଯେଉଁ ଲୋକ ସେହି ସ୍ଥାନକୁ ଯିବାକୁ ସାହସ କରିଛି ସେ ସେଠାରୁ ଫେରି ପାରି ନାହିଁ । ସେ ପୁନଶ୍ଚ କହିଲେ ଯେ ପ୍ରାୟ ଛ'ବର୍ଷ ତଳେ ସେହି ଜଳ ଗର୍ତ୍ତ ସ୍ଥଳକୁ ଏକ ଶିକାରୀ ଦଳରେ ଛ'ଜଣ ବ୍ୟକ୍ତି ଯାଇ ସମସ୍ତେ ବନ୍ଧୁକ ଧରି ମୃତ୍ୟୁବରଣ କରିଥିଲେ । ସେମାନେ ଯଦି ଜଣେ ସ୍ଥାନୀୟ ପଥ ପ୍ରଦର୍ଶକ ବା ଗାଇଡ୍‌କୁ ସାଥୀରେ ନେଇଥାନ୍ତେ ତେବେ ସେମାନଙ୍କର ସେହି ଦୁର୍ଦ୍ଦଶା ହୋଇ ନଥାନ୍ତା କାରଣ କୌଣସି ଗାଇଡ୍ ସେହି ବିପଦ ସଙ୍କୁଳ ସ୍ଥଳକୁ ସେମାନଙ୍କୁ ନେଇ ନଥାନ୍ତା ।

କାଦେରୀ ଭୂତ ଓ ତାର ସ୍ତ୍ରୀ ସେଠାରେ ଥିବା ଦୁଇଟି ପାଲୁ ଗଛରେ ଅବସ୍ଥାନ କରୁଛନ୍ତି । ସେମାନଙ୍କର ପିଲାମାନେ ପାଖର ଗଛମାନଙ୍କରେ ରହୁଛନ୍ତି । ଯେଉଁ ଲୋକମାନେ ମନ୍ତ୍ରପୂତ ତାବିଜ ସହ ସେଠାକୁ ରାତ୍ରିରେ ଯାଇଛନ୍ତି ସେମାନେ ସେଠାରେ ଜାଜ୍ୱଲ୍ୟମାନ ଗଛ ସବୁ ଦେଖିଛନ୍ତି । ଦିନ ସମୟରେ ସେହି ଭୂତମାନେ ବିଭିନ୍ନ ପଶୁ ରୂପରେ ଜଙ୍ଗଲରେ ଭ୍ରମଣ କରିଥାନ୍ତି ଅଥଚ ରାତ୍ରିରେ ଗଛରେ ରୁହନ୍ତି । ଯଦି କୌଣସି ବ୍ୟକ୍ତି ଭୁଲବଶତଃ ସେହି ସ୍ଥାନର କୌଣସି ଜୀବକୁ ଗୁଳି କରେ ତେବେ ପଶୁଟି ମରିବା ପରିବର୍ତ୍ତେ ଶିକାରୀ ବ୍ୟକ୍ତିଟି ମୃତ୍ୟୁବରଣ କରିଥାଏ । ଯେଉଁ ଶିକାରୀମାନେ ସେହି ସ୍ଥଳକୁ ଯିବାର ଦୁଃସାହସ କରିଛନ୍ତି ସେମାନେ ନିରାପଦରେ ଫେରି ନାହାନ୍ତି । କାଦେରୀ ଭୂତ ରହିଥିବା ଗଛ ସ୍ଥଳୀରେ ଦିନ ଓ ରାତିର ଫରକ ନାହିଁ, କାରଣ ରାତ୍ରି ସମୟରେ ସେଠିକାର ଗଛରୁ ଏପରି ଜାଜ୍ୱଲ୍ୟମାନ ଆଲୋକ ନିର୍ଗତ ହେଉଥାଏ ଯଦ୍ୱାରା ସ୍ଥାନଟି ଦିନ ପରି ଜଣାପଡେ ।

ଚିନ୍ନାଙ୍କଠାରୁ ଭୂତ ସ୍ଥଳଟି ସମ୍ପର୍କରେ ଶୁଣିବା ପରେ ଜାକବ ଓ ମାନ ସେଠାକୁ ନଯାଇ ଅନ୍ୟ ଏକ ସ୍ଥଳକୁ ଯିବାକୁ ଅନୁରୋଧ କଲେ । ବହୁ ଆଲୋଚନା ଓ କୋଭୁରଙ୍କର ବାଧ୍ୟବାଧକତା ପରେ ଅନ୍ତତଃ ଦୂରରୁ ଓଲ୍ଲମାଡୁ ଜଙ୍ଗଲର କାଦେରୀ ଭୂତ ରହୁଥିବା ଗଛମାନଙ୍କୁ ଦେଖାଇବାକୁ ଚିନ୍ନା ସମ୍ମତ ହେଲେ । କିନ୍ତୁ ଏଥିପାଇଁ ଚିନ୍ନା ସର୍ତ୍ତ ଦେଲେ ଯେ ସେହି ସ୍ଥାନକୁ ଯିବାକୁ ହେଲେ ବନ୍ଧୁକ ନ ନେଇ ଯିବାକୁ ହେବ ଓ ଭୂତ ମାନଙ୍କର ପ୍ରଭାବକୁ ପ୍ରତିହତ କରିବା ପାଇଁ ମନ୍ତ୍ରପୂତ ହରିଦ୍ରା ହାତରେ ବାନ୍ଧି ଯିବାକୁ ହେବ ।

ରାତ୍ରି ଭୋଜନ ପରେ ଚିନ୍ନାଙ୍କ ସହ ବନ୍ଧୁକ, ଟର୍ଚ୍ଚ, ଦଉଡି, ଛୁରୀ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ବସ୍ତୁ ସହ କୋଭୁର ଓ ତାଙ୍କର ସହକର୍ମୀ ବନ୍ଧୁମାନେ ଅତିଥିଶାଳାରୁ ସେମାନଙ୍କର ଯାତ୍ରା ଆରମ୍ଭ କଲେ । ଅଧଘଣ୍ଟାଏ ପରେ ସେମାନେ ଏକ ପୋଲିଆ ପାଖରେ ପହଞ୍ଚିଲେ । ସେଠାରୁ ବନ୍ଧୁକ ଇତ୍ୟାଦି ନେଇ ଯିବାକୁ ଚିନ୍ନା ବାରଣ କଲେ । ଜଙ୍ଗଲ ଭିତରେ ପ୍ରବେଶ କରିବା ପୂର୍ବରୁ ସେମାନଙ୍କ ହାତରେ ହରିଦ୍ରା ବନ୍ଧାକୁ ଚିନ୍ନା ପରୀକ୍ଷା କରିନେଲେ । ତାଙ୍କର ସ୍ପେଶାଲ ଟର୍ଚ୍ଚ ଲାଇଟ ଧରି ସେ ରାସ୍ତା କଢାଇଲେ । ପ୍ରାୟ ଏକ ମାଇଲ ଜଙ୍ଗଲ ରାସ୍ତାରେ ଯିବା ପରେ ସେମାନେ ଏକ ଖୋଲା ସ୍ଥାନରେ ପହଞ୍ଚିଲେ । ସେଠାରେ ରହି ପ୍ରାୟ ଏକ ଶହ ଗଜ ଦୂରରେ ଥିବା ସେହି ଜାଜ୍ୱଲ୍ୟମାନ ଗଛମାନଙ୍କୁ ଦେଖିବାକୁ ସେ କହିଲେ ।

କୋଭୁର ନିଜର ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଗଛମାନଙ୍କୁ ଦେଖିଲେ । ଏହି ଦୃଶ୍ୟ ଏତେ ଚମତ୍କାର ଥିଲା ତାହା ସେ ଜୀବନରେ କେବେ ବି ଭୁଲି ପାରିବେ ନାହିଁ । ପ୍ରାୟ ତିରିଶଟି ଡେଙ୍ଗା ଗଛ ଦେହରୁ ଜାଜ୍ୱଲ୍ୟମାନ ରଶ୍ମି ନିର୍ଗତ ହେଉଥିଲା । ଜଳନ୍ତା ଅଙ୍ଗାରରୁ ଯେପରି ଆଲୋକ ବାହାରେ ସେହିପରି ଗଛ ଗୁଡିକରୁ ଚମତ୍କାର ଆଲୋକ ବାହାରୁଥିଲା । ସେହି ଭିତରୁ ଦୁଇଟି ଗଛର ଆଲୋକ ରଶ୍ମି ଏତେ ଅଧିକ ଥିଲା ଯେ ସେମାନଙ୍କର ପତ୍ର ବିହୀନ ଡାଳ ଗୁଡିକ ସ୍ପଷ୍ଟ ଦେଖାଯାଉଥିଲା । ସେହି ଗଛ ଦୁଇଟିରେ ପ୍ରଥମେ କାଦେରୀ ଭୂତ ଓ ତାର ସ୍ତ୍ରୀ ରହୁଥିଲେ । ପରେ ସେମାନଙ୍କର ବଂଶ ବିସ୍ତାର ହୋଇ ତାଙ୍କର ପିଲାମାନେ ଅନ୍ୟ ଗଛରେ ରହୁଛନ୍ତି ବୋଲି ଚିନ୍ନା ସୂଚନା ଦେଲେ । ନିକଟକୁ ଯାଇ ଗଛମାନଙ୍କୁ ଦେଖିବାକୁ କୋଭୁର ଇଛା ପ୍ରକାଶ କଲେ ବି ଚିନ୍ନା ବା ତାଙ୍କର ସହକର୍ମୀ କେହି ତାଙ୍କୁ ଗୋଟିଏ ପାଦ ଆଗେଇବାକୁ ଦେଲେ ନାହିଁ ।

ସେହି ଦୃଶ୍ୟ ଦେଖି ସେମାନେ ଫେରି ଆସିଲେ ଓ ତାପରେ ଗାଡି ପାଖକୁ ଯାଇ ଅନ୍ୟ ସ୍ଥଳକୁ ଶିକାର ପାଇଁ ଗଲେ । ରାତି ତିନିଟା ପର୍ଯ୍ୟନ୍ତ ଏହି ଶିକାର ଅଭିଯାନ ଚାଲିଥିଲା ଓ ତାପରେ ସେମାନେ ଅତିଥିଶାଳାକୁ ଫେରି ଆସିଲେ । କୋଭୁରଙ୍କ ବନ୍ଧୁମାନେ ଶୀଘ୍ର ଫେରିଆସିବାକୁ ଚାହୁଁଥିଲେ ବି ସକାଳ ପ୍ରାତଃଭୋଜନ ଖାଇ ଫେରିବାକୁ କୋଭୁର ସେମାନଙ୍କୁ ବାଧ୍ୟ କରିଥିଲେ ।

ସକାଳେ କୋଭୁର ସହକର୍ମୀ ମାନ ଓ ଚିନ୍ନାଙ୍କ ସହ ପୁନଶ୍ଚ କାଦେରୀ ଭୂତ ରହିଥିବା ଓଲମାଡୁ ସ୍ଥାନକୁ ଗଲେ । କିନ୍ତୁ ରାତ୍ରିରେ ଦେଖିଥିବା ଜାଜ୍ୱଲ୍ୟମାନ ଗଛମାନଙ୍କୁ ଚିହ୍ନଟ କରାଯାଇ ପାରୁନଥିଲା, କାରଣ ଦିନରେ କୌଣସି ଗଛରୁ ରଶ୍ମି ନିର୍ଗତ ହେଉ ନଥିଲା । ଚିନ୍ନାଙ୍କର ପ୍ରବଳ ବିରୋଧ ସତ୍ତ୍ୱେ କୋଭୁର ଓ ମାନ ପାଲୁ ଗଛମାନଙ୍କ ପାଖକୁ ଯାଇ ସେ ସବୁ ପରୀକ୍ଷା କରିବାକୁ ଲାଗିଲେ ।

ସେଠାରେ ଦୁଇଟି ଗଛ ମଧ୍ୟରୁ ଗୋଟିଏ ଗଛ ପୁରା ମରିଯାଇଥିଲା ଓ ଅନ୍ୟ ଗୋଟିଏ ଗଛ ଅର୍ଦ୍ଧ ମୃତ ଅବସ୍ଥାରେ ଥିଲା । ପାଖ ପାଖର ଅନ୍ୟ ଗଛ ଗୁଡିକ ସାମାନ୍ୟ ହଳଦିଆ ଦେଖା ଯାଉଥିଲେ । କିନ୍ତୁ ମୃତ ଓ ଅର୍ଦ୍ଧ ମୃତ ଗଛରେ ଏହି ହଳଦିଆ ରଙ୍ଗ ସ୍ପଷ୍ଟ ଦେଖା ଯାଉଥିଲା । ଗୋଟିଏ ଛୁରୀ ସାହାଯ୍ୟରେ ମୃତ ଗଛର କିଛି ବକଳା ଓ କାଠ କୋଭୁର ସଂଗ୍ରହ କରି ଆଣିଲେ । ଏହାପରେ ସେମାନେ ଅତିଥିଶାଳାକୁ ଫେରି ସକାଳ ଜଳଖିଆ ଖାଇ ଜାଫନା ଫେରି ଆସିଲେ ।

କୋଭୁରଙ୍କ ପତ୍ନୀ ଓ ତିନି ବର୍ଷର ପୁଅ ସେଦିନ ରାତିରେ ଚମତ୍କାର ଦୃଶ୍ୟ ଦେଖିଥିଲେ । ସେ ଓଲମାଡୁରୁ ଆଣିଥିବା ଗଛର ବକଳା ଓ କାଠକୁ ନିଜର ପଢା ଟେବୁଲ ଉପରେ ରଖିଥିଲେ । ଯେତେବେଳେ ରୁମଟି ଅନ୍ଧାର ଥିଲା ସେତେବେଳେ ଟେବୁଲ ଉପରେ ଥିବା ବକଳା ଓ କାଠରୁ ସୁନ୍ଦର ରଶ୍ମି ନିର୍ଗତ ହେଉଥିଲା, ଯାହାକୁ କୋଭୁରଙ୍କ ପତ୍ନୀ ଥଟ୍ଟାରେ ନିଜ ପୁଅକୁ କାଦେରୀ ଭୂତର ନାତି ଅଣନାତି ବୋଲି କହିଥିଲେ ।

ପରେ କୋଭୁର ସେହି କାଠ ନେଇ ତାକୁ ଅଣୁବୀକ୍ଷଣ ଯନ୍ତ୍ରରେ ପରୀକ୍ଷା କରି ଜାଜ୍ୱଲ୍ୟମାନ ଏକ ପ୍ରକାର ଫିମ୍ପି (Fungus) ସେଥିରେ ଥିବା ଦେଖିଲେ । ସାପ୍ରୋଫାଇଟିକ ଜାତୀୟ ଏକ ଫିମ୍ପିର ତନ୍ତୁ ଗୁଡିକ ମୃତ ପାରୁଗଛର ବକଳା ଓ

କାଠ ଭିତରକୁ ଭେଦି କରି ରହିଥାଏ । ସେହି ଫିମ୍ପିକୁ କାଠ ବା ଛାଲିରୁ ପୃଥକ୍ କରି ବିଜ୍ଞାନଗାରରେ ପାଳନ ବା କଲଚର କରାଯାଇ ପାରିବ ।

ଏକଜାତୀୟ ଫିମ୍ପିଦ୍ୱାରା ଆଚ୍ଛାଦିତ ବୃକ୍ଷରୁ ସୁତରାଂ ଆଲୋକ ନିର୍ଗତ ହେବା ଏକ ରହସ୍ୟଜନକ ଘଟଣା ନୁହେଁ । ବଞ୍ଚୁଥିବା ଗଛ ଅପେକ୍ଷା ମରିଯାଉଥିବା ଗଛ ବା ବକଳାରେ ଏହି ଜାତୀୟ ଫିମ୍ପି ଶୀଘ୍ର ବୃଦ୍ଧିଲାଭ କରିଥାଏ । ସବୁ ପ୍ରକାର ଫିମ୍ପିରେ ଉଜ୍ଜ୍ୱଳ ଆଲୋକ ପ୍ରକାଶ ପାଏ ନାହିଁ । କିନ୍ତୁ କେତେକ ଜାତୀୟ ଫିମ୍ପି ଅଛନ୍ତି ଯେଉଁମାନେ ଆଲୋକ ବିକିରଣ କରିଥାନ୍ତି । ସେମାନଙ୍କୁ ବିଜ୍ଞାନାଗାରରେ କଲଚର କରଯାଉ ବା ସେମାନେ ଜଙ୍ଗଲରେ ମୃତ ଗଛର ଛାଲିରେ ଥାନ୍ତୁ ସେମାନେ ରାତ୍ରିରେ ଆଲୋକ ବିକିରଣ କରିଥାନ୍ତି । ଏହି ଫିମ୍ପି ପରି କେତେକ ଗଛ ଓ ଜୀବ ରାତ୍ରିରେ ଆଲୋକ ବିକିରଣ କରନ୍ତି । ଏହା ଭିତରୁ ଅଧିକାଂଶ ସମୁଦ୍ରରେ ଦେଖାଯାନ୍ତି । ଜୁଲୁଜୁଲିଆ ପୋକ ଦେହରୁ ରାତ୍ରିରେ ଆଲୋକ ବାହାରିବା ଆମେ ଦେଖିଛେ । ଘଞ୍ଚ ଜଙ୍ଗଲ ବା ଅନ୍ଧାରୁଆ ଗୁମ୍ଫା ଭିତରେ ଆଲୋକ ନିର୍ଗତ କରୁଥିବା କେତେକ ଜୀବ ଦେଖାଯାନ୍ତି । ବିଶେଷକରି ପରୁଷ ଜାତୀୟ ଜୀବ ବା ପୋକ ଏହି ଆଲୋକ ନିର୍ଗତ କରି ଭିନ୍ନ ଲିଙ୍ଗକୁ ଆକୃଷ୍ଟ କରିଥାନ୍ତି । ଆଲୋକ ବିକିରଣ କରୁଥିବା ଅନେକ ପ୍ରକାର ଜୀବାଣୁ ବି ଦେଖାଯାନ୍ତି । ମାଛ, ମାଂସ ଇତ୍ୟାଦି ସଢ଼ିଗଲେ ଓ ସେଥିରେ ସେହି ପ୍ରକାର ଜୀବାଣୁ ବୃଦ୍ଧି ହେଲେ ରାତିରେ ଆଲୋକ ନିର୍ଗତ ହେବାର ସମ୍ଭାବନା ଥାଏ । ଏପରିକି ମୋତି, ଶଂଖ, ଶାମୁକା, ଗେଣ୍ଡା, ବିଛା ଇତ୍ୟାଦି କେତେକ ସଜୀବ ବସ୍ତୁ ବିଚଳିତ ହେଲେ ସେମାନଙ୍କ ଦେହରେ ରାସାୟନିକ ପ୍ରକ୍ରିୟା ସୃଷ୍ଟି ହୋଇଥାଏ ଯେଉଁଥିରୁ ଫସ୍‌ଫରସ ଭଳି ଆଲୋକ ବାହାରିଥାଏ । ଆଲୋକ ବିକିରଣ କରୁଥିବା ସଜୀବମାନଙ୍କ ଉପରେ ଗବେଷଣା କରି ରାଫେଲ ଡୁବୋ ଦେଖାଇଛନ୍ତି ଯେ ଲୁସିଫେରିନ୍ ନାମକ ଏକ ବସ୍ତୁର ଉପସ୍ଥିତି ଯୋଗୁଁ ଫିମ୍ପି ଜାତୀୟ ଜୀବ ବା ପ୍ରାଣୀମାନେ ଆଲୋକ ବିକିରଣ କରିଥାନ୍ତି ।

ସୁତରାଂ ଓଲମାଡୁ ଜଙ୍ଗଲରେ ଗଛମାନଙ୍କରୁ ନିର୍ଗତ ହେଉଥିବା ଆଲୋକ ରଶ୍ମି କୌଣସି ଭୂତର କାର୍ଯ୍ୟ ବା ଅଲୌକିକ ଘଟଣା ନଥିଲା । କୌଣସି ଘଟଣାର ବୈଜ୍ଞାନିକ ବିଶ୍ଳେଷଣ ଅଭାବରେ ସାଧାରଣ ଲୋକମାନେ ନାନା ଅଲୌକିକ ବ୍ୟାଖ୍ୟା ଦେଇଥାନ୍ତି ଓ ତାହା କେତେ ରଙ୍ଗ ଯୁକ୍ତ ହୋଇ ବିଭିନ୍ନ କାହାଣୀ ମାଧ୍ୟମରେ ପ୍ରସାର

ହୋଇଥାଏ । ଅବଶ୍ୟ ଏହି ବୈଜ୍ଞାନିକ ବିଶ୍ଳେଷଣଦ୍ୱାରା କାଦେରୀ ଜଙ୍ଗଲ ପାଇଁ ଅନିଷ୍ଟ କରୁଛନ୍ତି ବୋଲି କୋଭୁର ମନେ କରିଛନ୍ତି । କାରଣ ଶିକାରୀ ଓ ଅନ୍ୟମାନଙ୍କ ପାଇଁ ରହସ୍ୟ ହୋଇ ରହିଥିବା ଏହି ଘଟଣା ଯୋଗୁଁ ଜଙ୍ଗଲ ଓ ସେଠାରେ ରହୁଥିବା ଜୀବମାନେ ସୁରକ୍ଷିତ ହୋଇ ରହିଥିଲେ । କିନ୍ତୁ ଏହି ବିଶ୍ଳେଷଣ ଲୋକମାନଙ୍କ ଭିତରେ ପ୍ରଚାର ହେବାଦ୍ୱାରା ଜଙ୍ଗଲର ପରିବେଶ ପ୍ରତି ବିପଦ ଦେଖା ଦେଇପାରେ ।

## ମାଣ୍ଡାଇତିଭୁ ଦ୍ୱୀପର ଅନୁଭୂତି:

ଜାଫନାର ଦକ୍ଷିଣକୁ ଗୋଟିଏ ଉପହ୍ରଦ ଦ୍ୱାରା ମୂଳ ଭୂଖଣ୍ଡରୁ ବିଚ୍ଛିନ୍ନ ହୋଇଥିବା ଏକ କ୍ଷୁଦ୍ର ଦ୍ୱୀପ ହେଉଛି ମାଣ୍ଡାଇତିଭୁ । ଏହାର ଲୋକ ସଂଖ୍ୟା ବହୁତ କମ୍ । ମାତ୍ର କେତେକ କେଉଟ ସଂପ୍ରଦାୟ ଓ କୃଷକ ପରିବାର ସେଠାରେ ବାସ କରନ୍ତି । ସହର ସଭ୍ୟତା ଓ ସଭ୍ୟ ଜୀବନ ଧାରାରୁ ବିଚ୍ଛିନ୍ନ ହୋଇ ରହିବାଦ୍ୱାରା ଦ୍ୱୀପର ପିଲା ଓ ମହିଳା ମାନେ ଜାଫନାର ନାଲୁର କଣ୍ଡସାମୀ ମନ୍ଦିରରେ ହେଉଥିବା ବାର୍ଷିକ ମେଳାକୁ ଉତ୍କଣ୍ଠାର ସହ ଅପେକ୍ଷା କରିଥାନ୍ତି । କାରଣ ବର୍ଷକୁ ଥରେ ସେହି ମେଳା ସମୟରେ ସେମାନେ ଚାରି ମାଇଲ ହ୍ରଦକୁ ଡଙ୍ଗାରେ ପାରିହୋଇ ଜାଫନାକୁ ଆସିଥାନ୍ତି ଓ ସହର ଜୀବନକୁ ଉପଭୋଗ କରିଥାନ୍ତି ।

କେତେକ ସାମୁଦ୍ରିକ ଉଦ୍ଭିଦ ଓ ଜୀବଙ୍କର ନମୁନା ସଂଗ୍ରହ କରିବା ପାଇଁ ୧୯୩୨ ଗ୍ରୀଷ୍ମାବକାଶରେ କୋଭୁର ନିଜର ପରିବାର ସହ ମାଣ୍ଡାଇତିଭୁ ଯାଇ ସେଠାରେ ଥିବା ଏକ ମାତ୍ର ପାନ୍ଥ ନିବାସରେ ରହିଥିଲେ । ସମୁଦ୍ର ବେଳାରେ ଅବସ୍ଥିତ ଏହି ନିବାସଟି ସମୁଦ୍ରକୁ ମୁହଁ କରି ଥିଲା ଓ ସମୁଦ୍ର ବେଳାରେ ଥିବା ଏକ ମୁହାଣରେ ଅନେକ ସାମୁଦ୍ରିକ ଜୀବ ଓ ପ୍ରବାଳ ଦେଖିବାକୁ ମିଳୁଥିଲା । ମଧ୍ୟାହ୍ନ ସମୟଟିରେ କୋଭୁର ସମୁଦ୍ରରୁ ବିଭିନ୍ନ ନମୁନା ସଂଗ୍ରହ କରୁଥିଲେ ଓ ଅପରାହ୍ନ ସମୟରେ ସେହି ଦ୍ୱୀପର ବିଭିନ୍ନ ଅଂଶକୁ ବୁଲିକରି ଦେଖୁଥିଲେ । ଥରେ ସନ୍ଧ୍ୟା ଭ୍ରମଣ ସମୟରେ ଜଣେ ଶିକ୍ଷକ ମାର୍କାଣ୍ଡୁଙ୍କ ସହିତ ତାଙ୍କର ପରିଚୟ ହେଲା । ସେହି ଦ୍ୱୀପରେ ମାର୍କାଣ୍ଡୁଙ୍କ ବ୍ୟତୀତ ଜାମା ପିନ୍ଧୁଥିବା ଦ୍ୱିତୀୟ ବ୍ୟକ୍ତିଙ୍କୁ କୋଭୁର ଦେଖିବାକୁ ପାଇନଥିଲେ । ଆସ୍ତେ ଆସ୍ତେ ଉଭୟଙ୍କ ଭିତରେ ବନ୍ଧୁତା ସୃଷ୍ଟି ହେଲା ଓ ସେମାନେ ପ୍ରତିଦିନ ଅପରାହ୍ନରେ ମିଳିତ ହୋଇ ନାନା ପ୍ରସଙ୍ଗ ବିଶେଷକରି ସେହି ଦ୍ୱୀପର ଅଧିବାସୀମାନଙ୍କର ସାମାଜିକ ଜୀବନ ଯାପନ ଇତ୍ୟାଦି ବିଷୟରେ ଆଲୋଚନା କରୁଥିଲେ ।

ଦିନେ ସନ୍ଧ୍ୟାରେ ମାର୍କାଣ୍ଡୁ ଏକ ତାଲିକା ସହ କୋଭୁରଙ୍କ ପାଖକୁ ଅସି କହିଲେ ଯେ ସ୍ଥାନୀୟ ଲୋକମାନେ ନାଲ୍ଲୁର ମନ୍ଦିରର ପୂଜକଙ୍କୁ ଡାକି ସେଠାରେ ଏକ ଯଜ୍ଞର ଆୟୋଜନ କରିବାକୁ ଚାହୁଁଛନ୍ତି । ଗତ କେତେ ସପ୍ତାହ ଧରି ଏକ ଦୁଷ୍ଟ ଆତ୍ମା ସେଠିକାର ଅଧିବାସୀମାନଙ୍କୁ ହଇରାଣ କରୁଥିବାରୁ ଏକ ଯଜ୍ଞଦ୍ୱାରା ତାକୁ ବିତାଡିତ କରିବାକୁ ସେମାନେ ସ୍ଥିର କରିଛନ୍ତି ।

ମାର୍କାଣ୍ଡୁ ପୁନଶ୍ଚ କେତେକ ଘଟଣାର ବିବରଣୀ ଦେଇ କହିଲେ, "ଦିନେ ରାତିରେ ଜଣେ ଭଦ୍ର ମହିଳା ନିଜ ରୋଷେଇ ଘର ପଛର ନଡିଆ ଗଛ ମୂଳରେ ଏକ ନାରୀ ମୂର୍ତ୍ତିକୁ ଦେଖି ତାର ଇଙ୍ଗିତରେ ନିଜର ସ୍ମୃତି ଶକ୍ତି ହରାଇ ତାକୁ ଅନୁଧାବନ କଲେ । ତାର ପଛରେ କିଛି ବାଟ ଯିବା ପରେ ସେହି ରହସ୍ୟମୟୀ ନାରୀ ମୂର୍ତ୍ତିଟି ଶୂନ୍ୟରେ ଅନ୍ତର୍ଦ୍ଧାନ ହୋଇଗଲା ।ଏହାପରେ ଭଦ୍ର ମହିଳା ଅଚେତ ହୋଇ ପ୍ରାୟ ତିନି ଘଣ୍ଟାପରେ ନିଜର ସ୍ମୃତି ଫେରି ପାଇଲେ । ତା ପରଠାରୁ ତାଙ୍କ ବ୍ୟବହାରରେ ପରିବର୍ତ୍ତନ ଦେଖାଦେଲା ଓ ସେ ଭୂତ ଲାଗିଲା ପରି ବ୍ୟବହାର କରିବାକୁ ଲାଗିଲେ । ଅନ୍ୟ ଗୋଟିଏ ଘଟଣାରେ ଜଣେ ଯୁବକ ଏକଦା ନିଜ ଜମିରୁ ରାତ୍ରିରେ ଫେରୁଥିବା ବେଳେ ଜଣେ ସୁନ୍ଦରୀ ଯୁବତୀଙ୍କୁ ରାସ୍ତାରେ ଭେଟିଲେ । ମହିଳା ଜଣଙ୍କ ବାଟ ଭୁଲିଗଲେ ବୋଲି କହି ତାଙ୍କ ଘର ପର୍ଯ୍ୟନ୍ତ ଯିବାକୁ ଯୁବକ ଜଣଙ୍କୁ ଅନୁରୋଧ କଲେ । ଉଭୟ କଥା ହୋଇ କିଛି ବାଟ ଆସିବା ପରେ ହଠାତ୍ ଯୁବତୀ ଜଣଙ୍କ ଅଦୃଶ୍ୟ ହୋଇଗଲେ, ଯଦିବା ଯୁବକ ଜଣଙ୍କ ତାଙ୍କର କଥା ତଥାପି ଶୁଣି ପାରୁଥିଲେ । ଏଥିରେ ଯୁବକ ଜଣଙ୍କ ଭୟଭୀତ ହୋଇ ନିଜର ଘର ପର୍ଯ୍ୟନ୍ତ ଦୌଡିକରି ଆସି ମୂର୍ଚ୍ଛା ହୋଇ ପଡିଲେ । ତା ପରଦିନ ସକାଳୁ ଯାଇ ତାଙ୍କ ଚେତା ଫେରିଲା । ଆଉଥରେ ଏକ ସାତ ବର୍ଷର ଝିଅ ଥରେ ନିଜ ଘରର ଅଗଣାରେ ଗୋଟିଏ କଳା କୁକୁର ରାତିରେ ଦେଖି ତାକୁ ତଡିଦେବା ପାଇଁ ଢେଲାଟିଏ ଫିଙ୍ଗିବାରୁ ହଠାତ୍ କୁକୁରଟି ଗୋଟିଏ ଦେବୀରେ ପରିଣତ ହୋଇଯାଇ ପିଲାଟିକୁ ଏପରି ଭୟଭୀତ କରିଦେଲା ଯଦ୍ଦ୍ୱାରା ସେହି ଦିନଠାରୁ ଝିଅଟି ନିଜର ବାକ୍‌ଶକ୍ତି ହରାଇଲା ।"

ମାର୍କାଣ୍ଡୁ ଏହି ସବୁ ବିବରଣୀ ଦେଇ ପୁନଶ୍ଚ କହିଲେ ଯେ ଗତ ରାତିରେ ସେହି କ୍ଷୁଦ୍ର ଦ୍ୱୀପର ବୟସ୍କ ବ୍ୟକ୍ତିମାନଙ୍କର ଏକ ବୈଠକ ହୋଇ ନାଲୁରରୁ ଏକ ଯୋଗୀଙ୍କୁ ଡାକି ଏକ ଯଜ୍ଞ କରି ଦୁଷ୍ଟ ଆତ୍ମାକୁ ଦ୍ୱୀପରୁ ବିତାଡିତ କରିବାକୁ ସ୍ଥିର ହୋଇଛି ।

ଯେଉଁ ଯୋଗୀ ଜଣଙ୍କୁ ଯୋଗାଯୋଗ କରାଯାଇଛି ସେ ନିଜର ଆଧିଦୈବିକ ଶକ୍ତି ପାଇଁ ବେଶ୍ ସୁପରିଚିତ । ନାଲୁରଠାରେ ସେ ବର୍ଷରେ ମାତ୍ର ଦୁଇ ମାସ ଅବସ୍ଥାନ କରି ଅବଶିଷ୍ଟ ସମୟ ତରୁକିଥୀ, କଟରଗାମା ଓ ଶିବାନଦୀ ପଦମରେ ରହି ପୂଜା ଓ ସାଧନା କରନ୍ତି ।

ମାର୍କଣ୍ଡୁ ପାଖରୁ ଏହି ସମସ୍ତ ଶୁଣିବା ପରେ କୋଭୁର ଏଥିରେ ନିଜର ମତାମତ ଦେଇ କହିଲେ ଯେ ସେ ବହୁ ବର୍ଷ ହେଲା ଅଲୌକିକ ଶକ୍ତି, ମୃତ ବ୍ୟକ୍ତିର ଆତ୍ମା ଓ ଭୂତ ଇତ୍ୟାଦି ଅଶରୀରମାନଙ୍କ ଉପରେ ଗବେଷଣା କରୁଥିଲେ ବି କେବେହେଲେ କୌଣସି ଅଲୌକିକ ଘଟଣା ଦେଖିନାହାନ୍ତି । ତଥାପି ଯୋଗୀଙ୍କର ପୂଜା ଦେଖିବାକୁ ସେ ଯିବେ । ସେ ଦ୍ୱୀପରେ ଥିବା ଭିତରେ ପୂଜା ଅନୁଷ୍ଠିତ ହେଲେ ସେ ସେଥିରେ ଯୋଗ ଦେବେ ।

ଏକ ସପ୍ତାହ ପରେ ପୂଜାର ଆୟୋଜନ ହେଲା । ଦ୍ୱୀପର ତିନି ଜଣ ଲୋକ ଜାଫନା ଯାଇ ଯୋଗୀଙ୍କୁ ଧରି କରି ଆସିଲେ । ଜଣେ କୃଷକଙ୍କର ଘରେ ଏହି ପୂଜା ଓ ଯଜ୍ଞର ଆୟୋଜନ ହେଲା । କୋଭୁର ସେଦିନ ଶୀଘ୍ର ନିଜର ରାତ୍ରି ଭୋଜନ ସମାପ୍ତ କରି ପୂଜା ଦେଖିବାକୁ ଯଥା ସ୍ଥାନରେ ଉପସ୍ଥିତ ହେଲେ । ସେଠାରେ ଦ୍ୱୀପର ଅଧିକାଂଶ ସ୍ତ୍ରୀ, ପୁରୁଷ ଓ ପିଲା ସମବେତ ହୋଇଥାନ୍ତି । ଗୋଟିଏ ଚାନ୍ଦୁଆ ତଳେ ଗୈରିକ ବସ୍ତ୍ର ପରିହିତ ଓ ଶ୍ମଶ୍ରୁ ଯୁକ୍ତ ଯୋଗୀ ଉପବେଶନ କରିଥାନ୍ତି । ତାଙ୍କ କପାଳରେ ପବିତ୍ର ଭସ୍ମର ବହଳ ଆବରଣ ସହିତ ବେକରେ ତିନୋଟି ରୁଦ୍ରାକ୍ଷମାଳ ଝୁଲୁଥାଏ । ତାଙ୍କ ସମ୍ମୁଖରେ ଦୁଇଟି ତମ୍ବା ପାତ୍ରର ପ୍ରଦୀପ, ଫୁଲଚାଙ୍ଗୁଡି, ଫଳ ଓ ବିଭିନ୍ନ ଶସ୍ୟ ପାତ୍ର ରଖା ଯାଇଥାଏ । ତାଙ୍କର ଡାହାଣ ପଟେ ଗୋଟିଏ ପିତଳ କଡେଇକୁ ତିନଟି ପଥରରେ କରାଯାଇଥିବା ଚୁଲା ଉପରେ ରଖାଯାଇ ତାହା ତଳେ ନଡିଆ-ସଢେଇ ଓ କତା ଥାଏ ।ଏହା ସହିତ ପାଞ୍ଚଟି ଶିଶିରେ ପାଞ୍ଚ ପ୍ରକାର ତେଲ ମଧ୍ୟ ଥାଏ ।

ପ୍ରଥମେ ଯୋଗୀ ସଂସ୍କୃତରେ ଓ ତାମିଲରେ ମନ୍ତ୍ର ପାଠ କରିବାକୁ ଲାଗିଲେ । ଏହାପରେ ଯୋଗୀ ଚକ୍ଷୁ ବନ୍ଦ କରି ଧ୍ୟାନରେ ବସିଲେ । କିନ୍ତୁ ତାଙ୍କର ପାଟିଟି ମେଲା ଥାଏ ଓ ଜିଭଟି ଆଗକୁ ବାହାରିଥାଏ । ଯୋଗୀଙ୍କର ସହଯୋଗୀ, ଯେ ତାଙ୍କ ସହିତ ନାରୁରରୁ ଆସିଥିଲେ, ଏକ କର୍ପୂର ଖଣ୍ଡରେ ନିଆଁ ଲଗାଇ ଯୋଗୀଙ୍କର ପଦାକୁ ବାହାରିଥିବା ଜିଭ ଉପରେ ରଖିଲେ । କେତୋଟି ସେକେଣ୍ଡ ପରେ ଯୋଗୀ ତାହା

ସମ୍ମୁଖସ୍ଥ ପାତ୍ରରେ ପକାଇଦେଲେ । ଏହିପରି ଜଳନ୍ତା କର୍ପୂର ତିନିଥର ଜିଭରେ ରଖି ସମବେତ ଜନଗଣଙ୍କୁ ଆଶ୍ଚର୍ଯ୍ୟ କରିଦେଲେ । ଉପସ୍ଥିତ ଲୋକମାନେ ହରିବୋଲ ଧ୍ୱନିରେ ସ୍ଥାନଟିକୁ ମୁଖରିତ କରୁଥାନ୍ତି ।

ଏହାପରେ ଯୋଗୀ ପଦ୍ମାସନରେ ବସି ନିଜର ଗୋଡର ବୁଢା ଆଙ୍ଗୁଠିକୁ ହାତରେ ଧରିଲେ । ସେ ମାର୍କାଣ୍ଡୁଙ୍କୁ ଡାକି ତାଙ୍କ ଡାହାଣ ହାତର ନାଡିକୁ ଦେଖିବାକୁ କହିଲେ । ମାର୍କାଣ୍ଡୁ ଯୋଗୀଙ୍କର ନାଡିକୁ ହାତରେ ଅନୁଭବ କରି କିଛି ସମୟ ପରେ କହିଲେ ଯେ ତାଙ୍କର ନାଡି ଆଉ ଚାଲୁନାହିଁ । ଏହାପରେ ଆଉ ଜଣେ ବ୍ୟକ୍ତି ମଧ୍ୟ ସ୍ୱାମୀଜୀଙ୍କର ନାଡିକୁ ଧରି ଏହା କିପରି ଆସ୍ତେ ଆସ୍ତେ ବନ୍ଦ ହୋଇଯାଉଛି ତାହା ଘୋଷଣା କଲେ ।

ଏହାପରେ ତାଙ୍କ ନିର୍ଦ୍ଦେଶରେ ସହକାରୀ ଜଣଙ୍କ କଡେଇରେ ପାଞ୍ଚ ପ୍ରକାର ତେଲ ଢାଳି ତାର ତଳେ ଥିବା କାଠ ଓ ଶୁଖିଲା ସଢେଇରେ ନିଆଁ ଧରାଇଲେ । ତେଲ ଯେତେବେଳେ ଗରମ ହୋଇଗଲା, ସେ ତିନୋଟି ଲେମ୍ବୁକୁ କାଟି ଦେଇ ତତଲା ତେଲ କଡେଇରେ ମନ୍ତ୍ର ଉଚ୍ଚାରଣ ସହ ପକାଇଲେ । ଯେତେବେଳେ ତେଲ ଗରମ ହୋଇ ଫୁଟିବାକୁ ଲାଗିଲା, ସେତେବେଳେ ଯେଉଁମାନେ ମନ୍ଦ ଆତ୍ମାର ପ୍ରଭାବରୁ ମୁକ୍ତ ରହିବାକୁ ଚାହାନ୍ତି ଜଣ ଜଣ କରି ଆସିବାକୁ ସ୍ୱାମୀ ନିର୍ଦ୍ଦେଶ ଦେଲେ । ସେହି ଫୁଟନ୍ତା ତେଲ କଡେଇରେ ବାଷ୍ପକୁ ଫୁଙ୍କି ଡାହାଣ ହାତର ଆଙ୍ଗୁଠି ପୁରାଇ ହାତକୁ ଶୀଘ୍ର ଉଠାଇ ଆଣି ତାକୁ ବାମ ହାତରେ ଜୋରରେ ଘଷିବାକୁ ଲାଗିଲେ ଓ ଜଣ ଜଣ କରି ସେହି ତେଲ ହାତ ପ୍ରତ୍ୟେକଙ୍କର କପାଳରେ ଲଗାଇଲେ । ଥରେ ଫୁଟନ୍ତା ତେଲ କଡେଇରେ ହାତ ବୁଡାଇ ଯେଉଁ ତେଲ ଆଣୁଥିଲେ ତାହାକୁ ପାଞ୍ଚ/ ଛ ଜଣଙ୍କ କପାଳରେ ଲଗାଇ ଦେଉଥିଲେ । ପ୍ରଥମେ ଯଦିବା ସେ ନିଜର ଆଙ୍ଗୁଠିକୁ କଡେଇରେ ବୁଡାଉଥିଲେ, ଶେଷ ଆଡକୁ ସେ ନିଜର ପୁରା ହାତ ପାପୁଲିଟି ତେଲ କଡେଇରେ ବୁଡାଇ ତେଲ ଆଣୁଥିଲେ । ତତଲା ତେଲ କଡେଇରେ ହାତ ବୁଡାଇ ତେଲ ଆଣି କପାଳରେ ଟିକିଏ ଟିକିଏ ଲଗାଇଦେବା ସମସ୍ତଙ୍କ ପାଇଁ ଏକ ଅଭିନବ ଅନୁଭୂତି ଥିଲା ଓ ଯୋଗୀଙ୍କର ଅଲୌକିକ କାର୍ଯ୍ୟରେ ଉପସ୍ଥିତ ଲୋକମାନେ ମୁଗ୍ଧ ହୋଇ ହରିବୋଲ ଧ୍ୱନିରେ ସ୍ଥାନଟିକୁ ମୁଖରିତ କରି ଦେଉଥିଲେ ।

ଏହାପରେ ଯୋଗୀ ତାଙ୍କ ଥଳିରୁ ଏକ ଚିକ୍କଣ ନଡିଆ ସଢେଇ ବାହାର କରି ତାକୁ ମୁହଁ ମାଡି ରଖିଦେଲେ । ଛୋଟ ଛୋଟ ସାତଟି କଉଡି ନେଇ ଗୋଟିକୁ ସଢେଇ ମଝିରେ ରଖି ଅନ୍ୟ ଛ'ଟିକୁ ତାର ଚାରିପାଖରେ ସଜାଇ ଦେଲେ । ଲୋକମାନଙ୍କୁ ସଂକ୍ଷିପ୍ତ ଭାଷଣ ଦେଇ କହିଲେ ଯେ ଗୋଟିଏ ନୁହଁ ସାତୋଟି ମନ୍ଦ ଆତ୍ମା ସେହି ଦ୍ୱୀପରେ ରହି ଲୋକମାନଙ୍କୁ ହଇରାଣ କରୁଛନ୍ତି । ସେ ଏବେ ମନ୍ତ୍ରପାଠ କରି ତୀର୍ଥ ଜଳ ସେମାନଙ୍କ ଉପରେ ପକାଇବେ ଓ ସେହି ମନ୍ଦ ଆତ୍ମା ଗୁଡିକ ସଢେଇ ତଳକୁ ଖସିପଡିବେ । ସଢେଇଟି ତାଙ୍କ ଦ୍ୱୀପର ଓ କଉଡି ଗୁଡିକ ମନ୍ଦ ଆତ୍ମାର ପ୍ରତୀକ ଅଟେ । ଯଦି କୌଣସି କଉଡି ତଳକୁ ନଖସେ, ତେବେ ବୁଝିବାକୁ ହେବ ଯେ ସେହି ମନ୍ଦ ଆତ୍ମା ଦ୍ୱୀପ ଛାଡି ଯିବାକୁ ଚାହୁଁ ନାହିଁ ଓ ସେପରି ସ୍ଥଳେ ଏକ ବଡ ଧରଣର ପୂଜା ଓ ଯଜ୍ଞର ଆୟୋଜନ କରିବାକୁ ହେବ । ଏହା କହି ମନ୍ତ୍ର ଉଚାରଣ କରି ସେ ତୀର୍ଥ ଜଳ କଉଡିମାନଙ୍କ ଉପରେ ପକାଇଲେ । ଆଶ୍ଚର୍ଯ୍ୟର କଥା କଉଡି ଗୁଡିକ ଜୀବନ୍ୟାସ ପାଇଲା ପରି ଗୋଟିଏ ପରେ ଗୋଟିଏ ସଢେଇ ତଳକୁ ଖସିପଡିଲେ । ଏବେ ମନ୍ଦ ଆତ୍ମାମାନଙ୍କର ପ୍ରଭାବରୁ ଦ୍ୱୀପଟି ଯେ ସମ୍ପୂର୍ଣ୍ଣ ମୁକ୍ତ ହୋଇଯାଇଛି ଏହା ଯୋଗୀ ଘୋଷଣା କଲେ । ସମସ୍ତଙ୍କ ତରଫରୁ ମାର୍କାଣ୍ଡୁ ଯୋଗୀଙ୍କୁ ଗୋଟିଏ ମନିପର୍ସରେ ଅର୍ଥ ଉପହାର ଦେବା ସହିତ ସମସ୍ତଙ୍କ ତରଫରୁ ଯୋଗୀଙ୍କର ପୂଜା ଓ ଅଲୌକିକ କ୍ରିୟା ପାଇଁ କୃତଜ୍ଞତା ଜ୍ଞାପନ କଲେ । ତାପରେ କେତେକଙ୍କୁ ବିଶେଷ ଦର୍ଶନ ଓ ଆଶୀର୍ବାଦ ଦେଇ ସେମାନଙ୍କର ଭକ୍ତିପୂତ ଉପହାରକୁ ଗ୍ରହଣ କରି ପରଦିନ ଯୋଗୀ ଜାଫନା ଫେରିଗଲେ ।

ଯୋଗୀ ଯିବାପରେ ମାର୍କାଣ୍ଡୁ କୋଭୁରଙ୍କ ପାଖକୁ ଆସି ଏକ ବିଜୟୋଲ୍ଲାସ ଭଙ୍ଗୀରେ କହିବାକୁ ଲାଗିଲେ ଯେ ସେ (କୋଭୁର) ଏବେ ଯୋଗୀ ଓ ସିଦ୍ଧ ବ୍ୟକ୍ତିଙ୍କର ଆଧ୍ୟାତ୍ମିକ ଶକ୍ତିକୁ ଅସ୍ୱୀକାର କରିପାରିବେ କି ? ଆଧ୍ୟାତ୍ମିକ ସ୍ତରରେ ଏପରି ଅନେକ ରହସ୍ୟ ରହିଛି ଯାହାକୁ ବିଜ୍ଞାନ ବୁଝାଇବାକୁ ଅକ୍ଷମ । ନିର୍ଜୀବ କଉଡି ଗୁଡିକ ଗତିଶୀଳ ହେବାଦ୍ୱାରା ଆତ୍ମାର ସ୍ଥିତି ପ୍ରମାଣିତ ହେଉନାହିଁ କି ? ସେହିପରି ଗରମ ତେଲ କଡେଇରେ ହାତ ବୁଡାଇବା କ୍ଷେତ୍ରରେ ବିଜ୍ଞାନର କୌଣସି ଉତ୍ତର ଅଛି କି ? ସେହିପରି ଜିଭ ଉପରେ ଜଳନ୍ତା କର୍ପୂର ଆଧ୍ୟାତ୍ମିକ ଶକ୍ତି ବ୍ୟତୀତ କେହି ରଖିବା ସମ୍ଭବ କି ? ଯୋଗୀମାନଙ୍କ ବ୍ୟତୀତ ଏପରି କେଉଁ ବୈଜ୍ଞାନିକ ଅଛନ୍ତି ଯେ କି

ଇଚ୍ଛାମତେ ନିଜର ନାଡିର ଗତିକୁ ବନ୍ଦ କରିପାରିବେ ? ଯୋଗୀଙ୍କର ଅଲୌକିକ କାର୍ଯ୍ୟ ଦେଖିବା ପରେ କୋଭୁର ତାଙ୍କର ହେତୁବାଦୀ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ କରି ଆଧ୍ୟାତ୍ମିକ ଓ ଆଧିଦୈବିକ ଶକ୍ତିରେ ବିଶ୍ୱାସ କରିବାକୁ ମାର୍କାଣ୍ଡୁ ତାଙ୍କୁ ପରାମର୍ଶ ଦେଲେ ।

କୋଭୁରଙ୍କ ପ୍ରଶ୍ନର ଉତ୍ତରରେ ମାର୍କାଣ୍ଡୁ କହିଲେ ଯେ ଯୋଗୀଙ୍କୁ ପାଞ୍ଚଶହ ଏକ ଟଙ୍କାର ଉପହାର ଦିଆ ଯାଇଥିଲା । ଏହାପରେ କୋଭୁର କହିଲେ ଯେ ଯେଉଁ କୌଶଳ ଗୁଡିକ ସେ ପ୍ରଦର୍ଶନ କଲେ ତାହା ଯୋଗ ଓ ଆଧ୍ୟାତ୍ମିକ ଶକ୍ତିର ଅଧିକାରୀ ହୋଇଥିବା ଯୋଗୁଁ ଭାବିବା ଠିକ୍ ନୁହେଁ । ଯୋଗ ଏକ ଶାରୀରିକ ଶୃଙ୍ଖଳା ଓ ସ୍ୱସମ୍ମୋହନ ପଦ୍ଧତି, କିନ୍ତୁ ଏହାଦ୍ୱାର କିଛି ଅଲୌକିକ କାର୍ଯ୍ୟ କରିବା ସମ୍ଭବ ନୁହେଁ । ତାଙ୍କ ଦ୍ୱୀପରେ ଯେଉଁ ବୟସ୍କ ବ୍ୟକ୍ତିମାନେ ସେହି ଯଜ୍ଞର ଆୟୋଜନ କରିଥିଲେ ସେମାନଙ୍କ ସହ ପରଦିନ ପାନ୍ଥନିବାସକୁ ଆସିବାକୁ କୋଭୁର ମାର୍କାଣ୍ଡୁଙ୍କୁ ଅନୁରୋଧ କଲେ ।

ପରଦିନ କୋଭୁର ତାଙ୍କ ସାଥିରେ ଥିବା ଚାକର ଲୋକଟିଦ୍ୱାରା ଗୋଟିଏ ନଡିଆର ଅଧା ଅଂଶର ସଢେଇଟିକୁ ବାଲି କାଗଜଦ୍ୱାରା ପୂରା ଚିକ୍କଣ କରାଇଲେ । ସମୁଦ୍ର ବେଳାରୁ ଛୋଟ ଛୋଟ କଉଡି ସଂଗ୍ରହ କରି ତାର ତଳକୁ ସମାନ ଓ ଚିକ୍କଣ କରିନେଲେ । କିଛି କର୍ପୂର ଓ ଲେମ୍ବୁ ମଧ୍ୟ ସଂଗ୍ରହ କଲେ । ଗୋଟିଏ ଷ୍ଟୋଭ, କଡେଇ, ନଡିଆ ତେଲ ଓ ଗୋଟିଏ ବୋତଲରେ ଏକ ତରଳ ପଦାର୍ଥ ନିଜ ପାଖରେ ରଖିଲେ ।

ମାର୍କାଣ୍ଡୁ ଓ ତାଙ୍କ ସାଥୀରେ ପାଞ୍ଚ ଜଣ ବୟସ୍କ ଲୋକ କୋଭୁରଙ୍କ ପାଖକୁ ସନ୍ଧ୍ୟାରେ ଆସିଲେ । କୋଭୁର ଜଳନ୍ତା କର୍ପୂରକୁ ନିଜ ଜିଭ ଉପରେ ରଖି ତାଙ୍କର ପୂଜା ଆରମ୍ଭ କଲେ । ଯୋଗୀଙ୍କ ପରି ତିନି ଥର ନିଜ ଜିଭ ଉପରେ ଜଳନ୍ତା କର୍ପୂର ରଖି ସେ ତାହା ତଳକୁ ଥୁ କରି ପକାଇଲେ । ଏହାପରେ ତାଙ୍କ ବାମହାତର ମଣିବନ୍ଧରେ ହାତ ରଖି ତାଙ୍କର ନାଡିର ସ୍ପନ୍ଦନକୁ ପରୀକ୍ଷା କରିବାକୁ ସେ ମାର୍କାଣ୍ଡୁ ଓ ଅନ୍ୟମାନଙ୍କୁ କହିଲେ । ମାର୍କାଣ୍ଡୁ ଓ ଅନ୍ୟମାନେ ଜଣଙ୍କ ପରେ ଜଣେ କୋଭୁରଙ୍କ ନାଡି ପାଞ୍ଚ ମିନିଟ୍ ଧରି ବନ୍ଦ ହେଉଥିବା ଅନୁଭବ କଲେ । ଯୋଗୀ ଯେପରି ନିଜର ନାଡିର ସ୍ପନ୍ଦନକୁ ବନ୍ଦ ରଖୁଥିଲେ, କୋଭୁର ସେହିପରି କରି ପାରୁଛନ୍ତି ବୋଲି ପରୀକ୍ଷାପରେ ସେମାନଙ୍କର ବିଶ୍ୱାସ ଦୃଢ ହେଲା । ଏହାପରେ ତାଙ୍କର ଚାକରଟି ଷ୍ଟୋଭକୁ ଜଳାଇ ତେଲ କଡେଇଟି ଗରମ କଲା । କଡେଇ ଭିତରେ ତେଲ ଗରମ

ହୋଇ ଫୁଟିବାରୁ ସେଥିରେ ଥିବା ଲେମ୍ବୁ ଗୁଡିକ ଯେତେବେଳେ ଘୂରୁଥାନ୍ତି କୋଭୁର ତେଲରୁ ଉଠୁଥିବା ବାଷ୍ପକୁ ଫୁଙ୍କି ଯୋଗୀଙ୍କ ଢଙ୍ଗରେ ଫୁଟନ୍ତା ତେଲ କଡେଇରେ ପାପୁଲି ପୁରାଇ ତେଲ ଆଣି ତାକୁ ବାମ ହାତରେ ଘଷିଲେ । ଏହାକୁ ସେ ବାରମ୍ବାର କରି ଦେଖାଇଲେ । ଶେଷରେ ଚିକ୍କଣ ନଡିଆ ସଢେଇଟିକୁ ଓଲଟାଇ ରଖି ତା ଉପରେ ସାତୋଟି କଉଡିକୁ ସଜାଇ ରଖିଦେଲେ । ଯେତେବେଳେ ବୋତଲ ମଧ୍ୟରୁ ତରଳ ପଦାର୍ଥଟି କଉଡିମାନଙ୍କ ଉପରେ ଛିଞ୍ଚିଲେ କଉଡି ଗୁିଡିକ ଗତିଶୀଳ ହୋଇ ଆସ୍ତେ ଆସ୍ତେ ସଢେଇ ତଳକୁ ଖସି ପଡିଲେ ।

ଯୋଗୀଙ୍କର ସମସ୍ତ କ୍ରିୟାକୁ ସେମାନଙ୍କ ସମ୍ମୁଖରେ କୋଭୁର ପ୍ରଦର୍ଶନ କରିବାବେଳେ ସେମାନେ ମନ୍ତ୍ରମୁଗ୍ଧ ହୋଇ ଏହିସବୁ ଦେଖୁଥିଲେ । ଏହାପରେ କୋଭୁର ସେମାନଙ୍କୁ ବୁଝାଇଦେଲେ ଯେ ସେ ଓ ଯୋଗୀ ଯେଉଁ ସବୁ କାର୍ଯ୍ୟ ଦେଖାଇଲେ ତାହା ପଶ୍ଚାତରେ କୌଣସି ଅଲୌକିକ ରହସ୍ୟ ବା ଆଧ୍ୟାତ୍ମିକ ଶକ୍ତି ନାହିଁ । କଉଡିମାନଙ୍କ ଉପରେ ସେ ଯେଉଁ ତରଳ ପଦାର୍ଥଟି ଢାଳିଲେ ତାହା ହେଉଛି ଲେମ୍ବୁ ରସ ଓ ଯୋଗୀ 'ତୀର୍ଥ ଜଳ' କହି ଯାହା ଢାଳିଥିଲେ ତାହା ଭିନେଗାର ବା ଲେମ୍ବୁରସ ହୋଇଥିବ । କଉଡି ହେଉଛି କାଲସିୟମ କାର୍ବୋନେଟ ଓ ଏହା ଲେମ୍ବୁ ରସରେ ଥିବା ସାଇଟ୍ରିକ ଏସିଡ୍ ସଂଯୋଗରେ ଆସିବାଦ୍ୱାରା ଏକ ରାସାୟନିକ ପ୍ରତିକ୍ରିୟା ସ୍ୱରୂପ ଏଥିରେ ଅଙ୍ଗାରକାମ୍ଳ ବାଷ୍ପର ଅନେକ ଫୋଟକା ସୃଷ୍ଟି ହୁଏ । ବାରମ୍ବାର ଏହି ଫୋଟକା ସୃଷ୍ଟି ହେବା ଓ ଫାଟିବାଦ୍ୱାରା କଉଡି ଗୁଡିକ ଗତିଶୀଳ ହୋଇ ମାଧ୍ୟାକର୍ଷଣର ପ୍ରଭାବ ଯୋଗୁଁ ନଡିଆ ସଢେଇର ତଳକୁ ଖସିଯା'ନ୍ତି ।

ସେହିପରି ଗରମ ତେଲର ଉତ୍ତାପ ଏତେ ଅଧିକ ଯେ ସେଥିରେ ବିନା ପୋଡାରେ କେହି ହାତ ରଖିପାରିବେ ନାହିଁ । ଏକ ପ୍ରକାର ତେଲ ହେଉ ବା ପାଞ୍ଚପ୍ରକାର ତେଲର ମିଶ୍ରଣ ହେଉ, ଏଥିରେ ଜଳୀୟ ଅଂଶ ରହିଥିଲେ ଓ ଏହାର ଉପରିଭାଗ ଖୋଲାଥିଲେ ଏହାର ଉତ୍ତାପ ଶହେ ଡିଗ୍ରୀ ସେଣ୍ଟିଗ୍ରେଡଠାରୁ ଅଧିକ ହୁଏ ନାହିଁ । କମଳା ଲେମ୍ବୁରେ ଜଳୀୟ ଅଂଶ ଅଧିକ ଥିବାରୁ ତେଲର ଉତ୍ତାପକୁ ତାହା ଶହେ ଡିଗ୍ରୀ ଭିତରେ ସୀମିତ ରଖିଥାଏ । ଏହାଛଡା ଉପରିଭାଗରେ ଯେଉଁଠି ଜଳ ବାଷ୍ପରେ ପରିଣତ ହେଉଥାଏ ସେଠାରେ ତାପର ପରିମାଣ ଆହୁରି କମ୍ ଥାଏ । ହାତ ବୁଡାଇବା ପୂର୍ବରୁ ବାଷ୍ପକୁ ଫୁଙ୍କିଦେବା ଦ୍ୱାରା ଉତ୍ତାପରେ ଆହୁରି ମଧ୍ୟ ହ୍ରାସ ହୋଇଥାଏ । ଏ ସତ୍ତ୍ୱେ

ତେଲ ତଥାପି ଗରମ ଥାଏ ଓ ହାତରେ ଛୁଇଁଲେ କଷ୍ଟ ହୁଏ, କିନ୍ତୁ ଏପରି ଗରମ ନଥାଏ ଯଦ୍ଵାରା ହାତ ପୋଡିଯିବ । ସେହି ଗରମ ତେଲକୁ ବାମ ହାତରେ ଘଷିବାଦ୍ଵାରା ଅନୁଭୂତ କଷ୍ଟ ଲାଘବ ହୋଇଥାଏ । ତେଲରେ ଲେମ୍ବୁର ରସ ନ ମିଶିଲେ କୋଭୁର ବା ଯୋଗୀ ଉତପ୍ତ ତେଲ କଡେଇରେ ବିନା ଫୋଟକାରେ ହାତ ପୁରାଇବା ସମ୍ଭବ ନୁହେଁ ।

କର୍ପୂର ଏକ ଅତି ଉଦ୍‌ବାୟୀ ବସ୍ତୁ ଯାହା ସଙ୍ଗେ ସଙ୍ଗେ ବାଷ୍ପ ହୋଇ ଜଳିଯାଏ, କିନ୍ତୁ କୌଣସି ତରଳ ଅବସ୍ଥାକୁ ଆସେ ନାହିଁ । ଜଳନ୍ତା କର୍ପୂରକୁ ଜିଭରେ ରଖିବା ପୂର୍ବରୁ ଓଠକୁ ଲାଳରେ ଭିଜାଇ ଗଭୀର ଶ୍ଵାସ ନେବାକୁ ହୁଏ । ଜିଭରେ ଜଳନ୍ତା କର୍ପୂର ଥିବା ପର୍ଯ୍ୟନ୍ତ ଶ୍ଵାସ ଛାଡିବାକୁ ହେଉଥାଏ ଓ ଶ୍ଵାସ ଶେଷରେ ତାହାକୁ ଜିଭରୁ ବାହାର କରିଦେବାକୁ ପଡେ । ଭୁଲବଶତଃ ଜଳିବା ଅବସ୍ଥାରେ ଏହାକୁ ଶ୍ଵାସରେ ନେଇଗଲେ ଗୁରୁତର ବିପଦର ସମ୍ଭାବନା ଥାଏ ।

ସୁତରାଂ ଯୋଗୀ ଯାହା କିଛି କଲେ ତାହା ଏହି କୌଶଳ ଅବଲମ୍ବନରେ କରିଥିଲେ । ଏହା ଅଲୌକିକ ବା ଆଧିଦୈବିକ କ୍ରିୟା ନଥିଲା ।

## ସାଧୁଙ୍କର ମନ୍ତ୍ର ଆରୋଗ୍ୟ :

କଲମ୍ବୋର ଏକ ସରକାରୀ ଅଫିସରେ ରାମନାଥନ ମୁଖ୍ୟ କିରାଣୀ ଭାବରେ ଚାକିରୀ କରନ୍ତି । ତାଙ୍କର ପୁଅ କନ୍ଦସାମୀ ଓ ଝିଅ ସରସ୍ଵତୀ । କନ୍ଦସାମୀ ଖୁବ୍ ମେଧାବୀ ଥିଲେ । ଅନର୍ସ ସହ ବିଜ୍ଞାନ ସ୍ନାତକ ଭାବରେ ବିଶ୍ଵବିଦ୍ୟାଳୟରୁ କୃତିତ୍ଵର ସହ ଉତ୍ତୀର୍ଣ୍ଣ ହେଲେ । ଏହାପରେ ସେ ଏକ ବିଦେଶୀ କମ୍ପାନୀରେ ଉଚ୍ଚ ବେତନଯୁକ୍ତ କର୍ମସଂସ୍ଥାନ ପାଇଲେ । ସରସ୍ଵତୀ ହାଇସ୍କୁଲ ପରେ ପାଠ ଛାଡି ଦେଇ ଘରେ ରହିଲେ ।

ସରସ୍ଵତୀ ଆସ୍ତେ ଆସ୍ତେ ନିଃସଙ୍ଗ ଅନୁଭବ କରି ସବୁ ଆଡୁ ଆଗ୍ରହ କମାଇଦେଲେ । ସେ କଥା ବାର୍ତ୍ତା କମାଇ ଦେଇ ସବୁବେଳେ ଚୁପ୍‌ଚାପ ରହିଲେ । ବେଳେବେଳେ ମନକୁ ମନ କଥା ହୁଅନ୍ତି ଓ ହସନ୍ତି । ଏହି ସବୁ ଥରେ ତାଙ୍କର ମୁଣ୍ଡ ବ୍ୟଥାରୁ ଆରମ୍ଭ ହେଲା । ସେ ସକାଳୁ ରାତ୍ରି ଯାଏ ଗୋଟିଏ ଖବର କାଗଜ ଧରି ବସି ପଢନ୍ତି, କିନ୍ତୁ କାଗଜର ପଢା ସରେ ନାହିଁ । ଗୋଟିଏ ପୃଷ୍ଠା ସେ ପଢୁଥାନ୍ତି; ସେ

ପ୍ରକୃତରେ କିଛି ପଢୁନଥାନ୍ତି । କିନ୍ତୁ ଖବର କାଗଜର ଗୋଟିଏ ପୃଷ୍ଠା ଉପରେ ତାଙ୍କର ଦୃଷ୍ଟି ନିବଦ୍ଧ ଥାଏ । କେବଳ ଖାଇବାକୁ ବାଧ୍ୟ କଲେ ଆସି ଖା'ନ୍ତି । ତାଙ୍କର ଭୋକ ମଧ୍ୟ କମିଗଲା । ଖାଇବାର ପରିମାଣ ବହୁତ କମାଇ ଦେବାରୁ ସେ ଆସ୍ତେ ଆସ୍ତେ ଦୁର୍ବଳ ହୋଇଗଲେ ଓ ଶେଷରେ ରକ୍ତ ଶୂନ୍ୟତାରେ ଆକ୍ରାନ୍ତ ହେଲେ ।

ଝିଅର ଏହି ମାନସିକ ଅବସ୍ଥା ପାଇଁ ରାମନାଥନ ବଡ ଚିନ୍ତିତ ହେଲେ । କିଛି ଦିନ ପରେ ତାଙ୍କ ଅଫିସର ଜଣେ କିରାଣୀ ରଗୁପଥୀ ଜଣେ ସାଧୁଙ୍କର ଅଲୌକିକ ଶକ୍ତି ବିଷୟରେ କହି ସରସ୍ୱତୀର ଚିକିତ୍ସା ପାଇଁ ତାଙ୍କୁ ପରାମର୍ଶ କରିବାକୁ କହିଲେ । ରଗୁପଥୀଙ୍କ ବକ୍ତବ୍ୟ ଅନୁଯାୟୀ ଡାକ୍ତରୀ ଚିକିତ୍ସାରେ ଭଲ ହୋଇନଥିବା କେତେକ ରୋଗୀ ସାଧୁଙ୍କର ଚିକିତ୍ସା ଭିତରେ ରହି ଆରୋଗ୍ୟ ହୋଇଥିଲେ । ରାମନାଥନ ଓ ତାଙ୍କର ସ୍ତ୍ରୀ ସେହି ସାଧୁଙ୍କୁ ପରାମର୍ଶ କରିବାକୁ ସ୍ଥିର କରିବାରୁ ରଗୁପଥୀ ସାଧୁଙ୍କୁ ନେଇ ତାଙ୍କ ଘରକୁ ଆସିଲେ ।

ଗୈରିକ ବସ୍ତ୍ର ପରିହିତ, ଶ୍ମଶ୍ରୁ ଯୁକ୍ତ ଓ ସିନ୍ଦୁର କଲି ସହିତ ଚନ୍ଦନରେ ନିଜର କପାଳକୁ ଚିତ୍ରିତ କରିଥିବା ସାଧୁ ଜଣଙ୍କୁ ସମ୍ମାନର ସହ ସ୍ୱାଗତ କରି ରାମନାଥନ ନିଜ ଝିଅର ସମସ୍ୟା ବିଷୟରେ ତାଙ୍କୁ ଅବଗତ କଲେ । ସରସ୍ୱତୀ ମଧ୍ୟ ସାଧୁଙ୍କ ସମ୍ମୁଖରେ ଆସି ଛିଡା ହେଲେ । ସାଧୁ ଚକ୍ଷୁ ବନ୍ଦ କରି କିଛି ସମୟ ପାଇଁ ଧ୍ୟାନସ୍ଥ ହେଲେ ଓ ଧ୍ୟାନରୁ ଉଠି କହିଲେ ଯେ ସରସ୍ୱତୀକୁ ଗୁଣି କରାଯିବା ଦ୍ୱାରା ତାର ଏପରି ସ୍ଥିତି ହୋଇଛି । ରାମନାଥନଙ୍କ ସ୍ତ୍ରୀଙ୍କର ଜନୈକ ସମ୍ପର୍କୀୟା ଈର୍ଷା ପରାୟଣ ହୋଇ ତରଳ ଖାଦ୍ୟ ସାହାଯ୍ୟରେ ଏକ ବିଷାକ୍ତ ଜିନିଷ ସରସ୍ୱତୀକୁ ଖୁଆଇ ଦେଇଛି । ଏଥିପାଇଁ ଏକ ସର୍ପ ପୂଜା କରାଗଲେ ସରସ୍ୱତୀ ଶରୀରରୁ ସେହି ବିଷକୁ ବାହାର କରାଯାଇ ପାରିବ । ଏଥିପାଇଁ ଏକ ଦିନ ସ୍ଥିର ହେଲା ଓ ସାଧୁ ପୂଜା ପାଇଁ ଆବଶ୍ୟକ ହେଉଥିବା ସାମଗ୍ରୀର ତାଲିକା ଦେଲେ ।

ରଗୁପଥୀ ଓ ସାଧୁଙ୍କର ବିଦାୟ ପରେ କନ୍ଦସ୍ୱାମୀ ଓ ତାଙ୍କ ବାପା, ମା'ଙ୍କ ଭିତରେ ଏହି ପୂଜାକୁ ନେଇ ମତ ପାର୍ଥକ୍ୟରୁ ଯୁକ୍ତି ତର୍କ ହେଲା । କନ୍ଦସ୍ୱାମୀ କୌଣସି ମାନସିକ ରୋଗ ବିଶେଷଜ୍ଞଙ୍କୁ ଦେଖାଇବାକୁ ଚାହୁଁଥିବା ବେଳେ ତାଙ୍କ ବାପା ମା' ଜଣେ ବିଶିଷ୍ଟ ସାଧୁଙ୍କର ଉପଦେଶକୁ ଅସମ୍ମାନ କରିବାକୁ ଚାହୁଁ ନଥିଲେ । ଅପରିପକ୍ୱ ପୁଅର ପରାମର୍ଶ ଅପେକ୍ଷା ସାଧୁଙ୍କର ଉପଦେଶ ସେମାନଙ୍କ ପାଇଁ ନିଶ୍ଚୟ ଗ୍ରହଣଯୋଗ୍ୟ ଥିଲା ।

ରାମନାଥନ ଓ ତାଙ୍କର ପତ୍ନୀ ବହୁ ଘଣ୍ଟା ଧରି ଭାବିବା ପରେ ସରସ୍ୱତୀକୁ ଗୁଣି କରି ବିଷ ଖୁଆଇ ଥିବା ସମ୍ପର୍କୀୟାଙ୍କୁ ଅନୁମାନ କଲେ । ଶ୍ରୀମତୀ ରାମନାଥନଙ୍କର ଜଣେ ସମ୍ପର୍କୀୟା ଭଉଣୀଙ୍କ ପରିବାରରେ କିଛି ମାସ ତଳେ ଏକ ଭୋଜିରେ ସେମାନେ ଯୋଗ ଦେଇଥିଲେ ।

ସାଧୁ ନିର୍ଦ୍ଧାରିତ ଦିନ ଆସି ପହଞ୍ଚିଲେ ଓ ପୂଜା ଆରମ୍ଭ କଲେ । ପ୍ରଥମେ ମନ୍ତ୍ର ପଢି ଏକ କଳସ ସ୍ଥାପନ କଲେ ଓ ଦୁଇଟି ବଡ କଦଳୀ ପତ୍ରରେ ପୂଜା ସାମଗ୍ରୀକୁ ସଜାଇ ରଖିଲେ । ଫୁଲ, ନଡିଆ, ଉସୁନା ଓ ଅରୁଆ ଚାଉଳ, ଫଳ ଓ ଗୋଟିଏ ମାଟି ପାତ୍ରରେ କ୍ଷୀର ରଖାଗଲା । ସର୍ପପରି ବଙ୍କିଳ ଏକ ବାଡି ବାହାର କରି ତାହାକୁ କ୍ଷୀର ପାତ୍ରରେ ଲଗାଇକରି ରଖିଲେ । ସାଧୁଙ୍କର ସମ୍ମୁଖରେ ଏକ ପିଢା ଉପରେ ସରସ୍ୱତୀ ବସିଲେ । ପ୍ରଥମେ ସାଧୁ ମନ୍ତ୍ର ପଢି ତାଙ୍କର ପୂଜା ଆରମ୍ଭ କଲେ । ପୂଜାର ଦ୍ୱିତୀୟ ଭାଗରେ ନିଜର ଆରାଧ୍ୟ ଦେବତାଙ୍କୁ ସ୍ମରଣ କରି ତାଙ୍କଠାରୁ ପାଉଥିବା ନିର୍ଦ୍ଦେଶକୁ ଗୋଟିଏ କାଗଜରେ ଲେଖୁଥିଲେ । ଝୁଣା ଓ ଧୂପ ଦେଇ ସମଗ୍ର କୋଠରୀଟିକୁ ସେ ଧୂମାୟିତ କରିଦେଲେ । ଏବେ ତାଙ୍କର ପ୍ରକୃତ ବିଷ ନିଷ୍କାସନ ପୂଜା ଆରମ୍ଭ ହେଲା । ସେ ନିଜ ଥଳିରୁ କିଛି ମଲ୍ଲୀ ଫୁଲ ବାହାର କରି ତାହାକୁ ବାମ ହାତରେ ଧରିଲେ । ଡାହାଣ ହାତରେ ବାମ ହାତରୁ ଫୁଲ ଆଣି ସରସ୍ୱତୀ ମୁଣ୍ଡରେ ଓ ପୂଜା ସାମଗ୍ରୀରେ ରଖିଲେ । ଗୋଟିଏ ଫୁଲ ମାଟି ପାତ୍ରରେ ଥିବା କ୍ଷୀର ଭିତରେ ରଖିଲେ । ଏହାପରେ ମନ୍ତ୍ର ପଢି ସର୍ପ ସଦୃଶ ବାଡିଟିରେ ସରସ୍ୱତୀର କପାଳ ଓ କ୍ଷୀର ପାତ୍ର ଭିତରେ ସ୍ପର୍ଶ କରିବାକୁ ଲାଗିଲେ । ମାଟି ପାତ୍ରରେ ଥିବା କ୍ଷୀର ଆସ୍ତେ ଆସ୍ତେ ପରିବର୍ତ୍ତନ ହେବାକୁ ଲାଗିଲା । ପ୍ରଥମେ ସାମାନ୍ୟ ନୀଳ ବର୍ଣ୍ଣରୁ ଏହା ଧୀରେ ଧୀରେ ଗାଢ ନୀଳବର୍ଣ୍ଣ ଧାରଣ କଲା । ପାଞ୍ଚ ମିନିଟ ପରେ ସାଧୁ ଘୋଷଣା କଲେ ଯେ ସରସ୍ୱତୀର ଦେହରେ ଥିବା ସମସ୍ତ ବିଷକୁ କ୍ଷୀର ମଧ୍ୟକୁ ନିଷ୍କାସନ କରାଯାଇ ପାରିଛି । ଏହି ଅଲୌକିକ ଘଟଣା ଦେଖି କନ୍ଦସ୍ୱାମୀ ସହ ତାଙ୍କର ବାପା, ମା ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ଏହାପରେ ସାଧୁ ସରସ୍ୱତୀ ମୁଣ୍ଡରେ ଦୁଇ ହାତ ରଖି ତାକୁ ଆଶୀର୍ବାଦ ଦେଇ ସେ ଏବେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯିବ ବୋଲି କହିଥିଲେ ।

ଶ୍ରୀମତୀ ରାମନାଥନ ସାଧୁଙ୍କର ଏହି ପୂଜା ଓ ଅଲୌକିକ କ୍ରିୟାରେ ଆନନ୍ଦିତ ହୋଇ ଯେତେବେଳେ ତାଙ୍କ ସ୍ୱାମୀଙ୍କ ସହ କଥା ହେଉଥିଲେ, ସେତେବେଳେ ସାଧୁ

ପରିବାରର ଚାକରଟିକୁ ଡାକି ନୀଳ ବର୍ଣ୍ଣ ହୋଇଥିବା କ୍ଷୀର ଓ ସେହି ପାତ୍ରଟି ଦେଇ କହିଲେ ଯେ ସେ ବାଡିକୁ ଯାଇ ଡାହାଣ ହାତର ତିନୋଟି ଆଙ୍ଗୁଠିରେ ଯେତେ ଗୋବର ଆସିବ ଆଣି କ୍ଷୀର ପାତ୍ରରେ ମିଶାଇବ । ଏହା ସହିତ ବାଡିରେ ଗୋଟିଏ ଗାତ କରି ସୂର୍ଯ୍ୟଙ୍କ ଆଡକୁ ମୁହଁ କରି ପାତ୍ର ସହ କ୍ଷୀର ଗାତରେ ଢାଳି ପାତ୍ରଟିକୁ ଭାଙ୍ଗି ଗାତଟିକୁ ବୁଜିଦେବ । ଚାକରଟି ପୂଜା କୋଠରୀରୁ କ୍ଷୀର ପାତ୍ରଟି ନେଇ ବାଡିକୁ ଯିବାରୁ କନ୍ଦସ୍ୱାମୀ ତା ସହିତ ବାଡିକୁ ଯାଇ ଚାକରଟି ହାତରୁ ସେହି କ୍ଷୀର ପାତ୍ରଟି ନେଇ ଆସି ତାକୁ ନିଜର ଆଲମାରି ଭିତରେ ରଖିଦେଇ ଚାବି ଦେଇଦେଲେ । ଚାକରଟିକୁ ମଧ୍ୟ ସତର୍କ କରାଇ ଦେଲେ ଯେ ସେ ଏ ବିଷୟ କିଛି ପ୍ରକାଶ କରିବ ନାହିଁ ।

ଏହାପରେ ରାମନାଥନ ଓ ତାଙ୍କ ପତ୍ନୀ ସଭକ୍ତିରେ ସାଧୁଙ୍କୁ ଉପହାର ଦେଇ ବିଦାୟ ଦେଲେ । କନ୍ଦସ୍ୱାମୀ ସାଧୁଙ୍କୁ ନେଇ ବସରେ ବସାଇ ଦେଇ କୋଭୁରଙ୍କ ପାଖକୁ ଆସିଲେ । ସେ କଲେଜରେ କୋଭୁରଙ୍କ ଛାତ୍ର ଥିବାବେଳେ ତାଙ୍କ ସହିତ ବେଶ ପରିଚିତ ଥିଲେ । ଚାକିରୀ ପରେ ସମୟେ ସମୟେ ତାଙ୍କ ପାଖକୁ ଆସୁଥିଲେ । ଗୁରୁ ଓ ଛାତ୍ରଙ୍କ ଭିତରେ ସୁସମ୍ପର୍କ ରହିଥିଲା । କନ୍ଦସ୍ୱାମୀ କୋଭୁରଙ୍କୁ ସମସ୍ତ ଘଟଣା ବର୍ଣ୍ଣନା କରି ତାଙ୍କୁ ସାଥୀରେ ନେଇ ନିଜ ଘରକୁ ଆସିଲେ । କନ୍ଦସ୍ୱାମୀ ରଖିଥିବା ନୀଳବର୍ଣ୍ଣ କ୍ଷୀରର ପାତ୍ରଟି କୋଭୁରଙ୍କୁ ଦେବାରୁ ସେ କ୍ଷୀରକୁ ପରୀକ୍ଷା କରି ଅନ୍ୟ ଏକ ପାତ୍ରରେ ଧୀରେ ଧୀରେ ଢାଳିବାରୁ ଅଧା ମିଳାଇ ଥିବା ଗୋଟିଏ ସ୍ୟାହିର ବଟିକା କ୍ଷୀର ପାତ୍ରରେ ତଳେ ଦେଖିବାକୁ ପାଇଲେ । ସେହି ସ୍ୟାହିର ବଟିକାଟିକୁ ନେଇ କନ୍ଦସ୍ୱାମୀଙ୍କୁ ଦେଲେ । ସେ ଏହା ନେଇ ନିଜର ବାପା, ମା'ଙ୍କୁ ଦେଖାଇଲେ । ପରିବାରରେ ଏକ ଆଲୋଡନ ସୃଷ୍ଟି ହୋଇଗଲା । ରାମନାଥନ ଓ କନ୍ଦସ୍ୱାମୀଙ୍କର ମା' ଯେତେବେଳେ ସାଧୁଙ୍କର ଠକାମି ବିଷୟରେ ଅବଗତ ହେଲେ ସେମାନେ ଏପରି କ୍ରୋଧାନ୍ୱିତ ହେଲେ ଯେ ସେମାନଙ୍କ ପାଖରେ ସାଧୁ ଥିଲେ ସେମାନେ ତାଙ୍କୁ ମାରିବାକୁ ମଧ୍ୟ ପଶ୍ଚାତପଦ ହୋଇନଥାନ୍ତେ । ସାଧୁ ମଲ୍ଲୀଫୁଲ କ୍ଷୀରରେ ରଖିବା ଅବସରରେ ସ୍ୟାହି ଟାବଲେଟ୍‌ଟି ରଖିଥିବାର ଅନୁମାନ କରାଗଲା । ଏହାପରେ କନ୍ଦସ୍ୱାମୀଙ୍କ ପରିବାରର ଲୋକମାନଙ୍କୁ କୋଭୁର ଏକ ସଂକ୍ଷିପ୍ତ ଭାଷଣ ଦେଇ ବୁଝାଇଲେ ଯେ ଯାଦୁକରଙ୍କର ହାତ ସଫେଇ କଳାପରି ଏହି ଠକ ସାଧୁମାନେ କେତେକ ହାତ ସଫେଇ ଦ୍ୱାରା ଲୋକମାନଙ୍କୁ ଅଲୌକିକ ଶକ୍ତିର ଅଧିକାରୀ ବୋଲି ଧାରଣା ଦେଇ

ଠକିଥାନ୍ତି । ସେହି ସାଧୁଯେ ନିଶ୍ଚୟ ଧୂର୍ତ୍ତ ଏହା ସ୍ପଷ୍ଟ । କାରଣ ତାଙ୍କର ଠକାମି ଧରା ନ ପଡିବା ପାଇଁ ସତର୍କତା ସ୍ୱରୂପ ସେ କ୍ଷୀର ପାତ୍ରରେ ଗୋବର ମିଶାଇ, ସୂର୍ଯ୍ୟଙ୍କୁ ଅନାଇ, ଗାତ ଭିତରେ କ୍ଷୀରକୁ ଢାଳି, ପାତ୍ରଟିକୁ ଭାଙ୍ଗିଦେଇ, ଗାତଟି ବୁଜି ଦେବାର ନିର୍ଦ୍ଦେଶ ଚାକରକୁ ଦେଇଥିଲେ । ତାନ୍ତ୍ରିକମାନେ ସାଧାରଣ ଲୋକଙ୍କୁ ଠକିବା ପାଇଁ କାଳ୍ପନିକ କାହାଣୀମାନ ସୃଷ୍ଟି କରି ବିଶ୍ୱାସ ଜନ୍ମାଇଥାନ୍ତି । କୌଣସି ମନ୍ତ୍ରଦ୍ୱାରା ପ୍ରୟୋଗ ବିଷ ଶରୀର ଭିତରେ ମାସ ମାସ ଧରି ରହି ମାନସିକ ବିକୃତି ଘଟାଇବା ଓ ପୁନଶ୍ଚ ପୂଜା ମନ୍ତ୍ରଦ୍ୱାରା ସେହି ବିଷକୁ ଶରୀରରୁ ନିଷ୍କାସନ କରିପାରିବା ପଶ୍ଚାତରେ କୌଣସି ଭିତ୍ତି ନାହିଁ । କାରଣ କୌଣସି ଭୋଜ୍ୟ ବସ୍ତୁ ଖାଦ୍ୟ ନଳୀରେ ପ୍ରବେଶ କରି ପାକସ୍ଥଳୀକୁ ଯାଇ ହଜମ ହେଉ ବା ନ ହେଉ ତାହାର ଖଦଡା ଅଂଶ ମଳ ମୂତ୍ରରେ ଶରୀରରୁ ବାହାରି ଯାଇଥାଏ ।



# ଭୌତିକ କାଣ୍ଡ କିପରି ହୁଏ ?

ସମୟେ ସମୟେ ଏହା ଶୁଣାଯାଏ ଯେ କେତେକ ଜାଗାରେ କୌଣସି ଅଜ୍ଞାତ କାରଣରୁ ଭୌତିକ କାଣ୍ଡ ସୃଷ୍ଟି ହେଉଛି । ଘରେ ଟେକା ପଡିବା, ଖାଦ୍ୟ ପଦାର୍ଥରୁ ମଇଳା ବାହାରିବା, ଘରେ ନିଆଁ ଲାଗିଯିବା ଇତ୍ୟାଦି ଘଟଣା ଶୂନ୍ୟରୁ ସୃଷ୍ଟି ହେଲେ ଏସବୁକୁ "ଭୌତିକ କାର୍ଯ୍ୟ" ବୋଲି ଆଖ୍ୟା ଦିଆଯାଏ । ଯେଉଁ ପରିବାରରେ ଏସବୁ ଘଟଣା ଘଟେ ସେଠାରେ ପରିବାରର ଲୋକମାନେ ଏଥିପାଇଁ କୌଣସି କର୍ତ୍ତାକୁ ସନ୍ଧାନ କରିପାରନ୍ତି ନାହିଁ । ସେମାନେ ଏଥିପାଇଁ ବିଚଳିତ ହୁଅନ୍ତି ଓ ଏହି ଭୌତିକ କାଣ୍ଡରୁ ନିଷ୍କୃତି ପାଇଁ ତାନ୍ତ୍ରିକ ବା ଗୁଣିଆଁମାନଙ୍କର ସାହାଯ୍ୟ ଲୋଡିଥାନ୍ତି । ତାନ୍ତ୍ରିକମାନେ ମଧ୍ୟ ଏହିପରି କାର୍ଯ୍ୟକୁ ପ୍ରେତ କାର୍ଯ୍ୟ, ଦୁଷ୍ଟ ଆତ୍ମାର ପ୍ରକୋପରୁ ସୃଷ୍ଟ ବା ଅନ୍ୟ କୌଣସି ଗୁଣିଆଁର ମନ୍ତ୍ର ଯୋଗୁଁ ଉଦ୍ଭବ ବୋଲି ଲୋକମାନଙ୍କୁ ବିଶ୍ୱାସ ଦେଇ ପୂଜା, ଯଜ୍ଞ, ଗ୍ରହ ଶାନ୍ତି ବା ପ୍ରେତ ବିତାଡନ ପାଇଁ ଆୟୋଜନ କରିବାକୁ ପରାମର୍ଶ ଦେଇଥାନ୍ତି । ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବ ଯୋଗୁଁ କେତେକ ପ୍ରାକୃତିକ ଘଟଣାକୁ ଅଲୌକିକ ବା ଭୌତିକ କାଣ୍ଡ ବୋଲି ବିବେଚନା କରାଯାଏ । କୋଭୁର ନାନା ଭୌତିକ କାଣ୍ଡକୁ ଅନୁସନ୍ଧାନ କରି ସେଗୁଡିକ କୌଣସି ଭୂତ, ପ୍ରେତ ବା ଦୈବୀ କାର୍ଯ୍ୟ ନୁହେଁ ବରଂ ମାନସିକ ବିକାରଗ୍ରସ୍ତ ଲୋକଙ୍କର ଉଦ୍ଦେଶ୍ୟ ମୂଳକ କାର୍ଯ୍ୟ ବୋଲି ପରୀକ୍ଷାମୂଳକ ଭାବରେ ଦର୍ଶାଇଛନ୍ତି । କହିବା ନିଷ୍ପ୍ରୟୋଜନ ଯେ ପ୍ରତ୍ୟେକ ଘଟଣା ପଶ୍ଚାତରେ ମଣିଷର ହାତ ରହିଛି କିନ୍ତୁ ଦୈବୀ କାରଣ ନାହିଁ । ଏହି ପରିପ୍ରେକ୍ଷୀରେ ସେ ପରୀକ୍ଷା କରିଥିବା ନାନା ଭୌତିକ ଘଟଣା ମଧ୍ୟରୁ ମାତ୍ର ତିନୋଟିର ବର୍ଣ୍ଣନା ଏଠାରେ ଦିଆଯାଇଛି ।

(କ) ଜାଭିଏର କଲମ୍ବୋର ଏକ ସମ୍ବାଦପତ୍ର କାର୍ଯ୍ୟାଳୟରେ ଚାକିରୀ କରନ୍ତି । ଘରେ ତାଙ୍କର ସ୍ତ୍ରୀ, ଦୁଇ ଝିଅ, ଗୋଟିଏ ପୁଅ ଓ ବଡ ଝିଅର ସ୍ୱାମୀ ରୁହନ୍ତି । ବଡ ଝିଅର ବୟସ ୨୩, ତାଙ୍କର ସ୍ୱାମୀ ଉଇଲସନ ଏକ ବାଣିଜ୍ୟିକ ପ୍ରତିଷ୍ଠାନରେ କିରାଣୀ

କାମ କରନ୍ତି । ବଡ ଝିଅର ବିଭାଘର ପ୍ରାୟ ସାତ ମାସ ତଳେ ହୋଇଥାଏ ଓ ସେ ଅନ୍ତଃସତ୍ତ୍ୱା ଥାନ୍ତି । ସାନ ଝିଅ ରୋଜ୍ ବୟସ ୧୭ । ସେ ଏକ କନଭେଣ୍ଟ ସ୍କୁଲର ଛାତ୍ରୀ, ପୁଅଟି ସାନ ଓ ତାର ବୟସ ମାତ୍ର ୫ ବର୍ଷ । ସେମାନେ ଖ୍ରୀଷ୍ଟିଆନ ଓ ରୋମାନ କାଥୋଲିକ ସମ୍ପ୍ରଦାୟର ।

ଗତ ପାଞ୍ଚମାସ ଧରି ତାଙ୍କ ପରିବାରରେ କେତେକ ଭୌତିକ କାଣ୍ଡ ସୃଷ୍ଟି ହେବା ଫଳରେ ପରିବାରଟି ଭୟ ଓ ଉତ୍ତେଜନାରେ ରହିଥାନ୍ତି । ସେଥିପାଇଁ କେତେ ତାନ୍ତ୍ରିକ, ଜ୍ୟୋତିଷ, ଚର୍ଚ୍ଚର ବିଶପ୍ ଆସି ପ୍ରତିକାର କରିଗଲେ ମଧ୍ୟ ଏହା ବନ୍ଦ ହେଉନଥାଏ । ଏହି ପରିସ୍ଥିତିରେ କୋଭୁର ଘଟଣାଟି ସମ୍ପର୍କରେ ଜାଣିବା ପାଇଁ ଅନୁସନ୍ଧାନ କରିବାକୁ ୨୮.୯.୫୬ ଦିନ ଯାଇ ସେଠାରେ ପହଞ୍ଚିଲେ ।

ସେ ଅନୁସନ୍ଧାନ ଦ୍ୱାରା ଜାଭିଏର ଓ ତାଙ୍କ ପତ୍ନୀଙ୍କଠାରୁ ଜାଣିବାକୁ ପାଇଲେ ଯେ ତାଙ୍କ ବଡ ଝିଅ ବିଭାଘରର ଦୁଇମାସ ପରେ ଏହି ସମସ୍ୟା ଆରମ୍ଭ ହେଲା । ଉଇଲସନ ଓ ତାଙ୍କ ସ୍ତ୍ରୀ ଯେଉଁ କୋଠରୀଟିରେ ଶୁହନ୍ତି ସେହି କୋଠରୀ ଭିତରେ ଢେକା ପଡେ । ଢେକା ରାତିରେ ପଡେ ଓ ମଧ୍ୟ ରାତ୍ରି ପର୍ଯ୍ୟନ୍ତ ପଡୁଥାଏ । ଶନିବାର ଅପରାହ୍ଣରେ ଓ ରବିବାର ଦିନ ସମୟରେ ମଧ୍ୟ କେତେ ଥର ଢେକା ପଡିଛି । ପରିବାରର ସମସ୍ତେ କେଉଁଠାରୁ ଢେକା ପଡୁଛି ସତର୍କ ଦୃଷ୍ଟି ରଖିଥାନ୍ତି ତଥାପି ଏ ସମ୍ପର୍କରେ କିଛି ସୂତ୍ର ପାଇନାହାନ୍ତି । ପ୍ରଥମେ ଏଥିପାଇଁ ଆଗତ ଭବିଷ୍ୟ ବିଷୟରେ କହିପାରୁଥିବା ଜଣେ ଜ୍ୟୋତିଷୀଙ୍କୁ ପରାମର୍ଶ କଲେ । ସେ ତାଙ୍କର ଗଣନା କରି କହିଲେ ଯେ କୌଣସି ମନ୍ଦ ଆତ୍ମା ଏହି କାର୍ଯ୍ୟ କରୁଛି । ସୁତରାଂ ସେ ଏହା ବନ୍ଦ କରିବାକୁ କେତେକ ପୂଜା କଲେ । ହେଲେ ଏଥିରେ କିଛି ଫଳ ହେଲା ନାହିଁ । ଏହାପରେ ଶ୍ରୀମତୀ ଜାଭିଏର ମତୁ ଓ ବୋରେଲ୍ଲୀ ଚର୍ଚ୍ଚରେ କେତେକ ଉପହାର ଦେବାକୁ ମାନସିକ କଲେ, କିନ୍ତୁ ସେଥିରେ କିଛି ସୁଫଳ ମିଳିଲା ନାହିଁ । ଏହି ପରିସ୍ଥିତିରେ ଚର୍ଚ୍ଚର ବିଶପଙ୍କୁ ଏକ ରବିବାର ଦିନ ସେମାନେ ଆମନ୍ତ୍ରିତ କରି ଆଣିଲେ ଓ ସେ ପ୍ରାର୍ଥନା କରି ପ୍ରତ୍ୟେକ କୋଠରୀରେ ପବିତ୍ର ଜଳ ସିଞ୍ଚନ କଲେ । ସେଣ୍ଟ ଆଣ୍ଟୋନିଙ୍କର ଏକ ପବିତ୍ର ଫଟୋଚିତ୍ରକୁ ଟାଙ୍ଗିବାକୁ ଦେଲେ କିନ୍ତୁ ଏ ସତ୍ତ୍ୱେ ଢେକା ପଡିବା ବନ୍ଦ ହେଲା ନାହିଁ । ସୁତରାଂ ଜାଭିଏର ପୁନଶ୍ଚ ବିଶପଙ୍କୁ ସାକ୍ଷାତ କରିବାର

ସେ 'କ୍ରସ୍‌ର' ଏକା ମାଳା ଦେଇ ତାହାକୁ ବଡ ଝିଅ ତକିଆତଳେ ରଖିବାକୁ ଓ ଝିଅ ଜ୍ୱାଇଁ ପ୍ରତିଦିନ ଶୋଇବା ପୂର୍ବରୁ ପ୍ରାର୍ଥନା କରିବାକୁ ପରାମର୍ଶ ଦେଲେ । ଏ ସବୁକୁ ନିଷ୍ଠାର ସହ ପାଳନ କଲେ ମଧ୍ୟ ପରିସ୍ଥିତିରେ ପରିବର୍ତ୍ତନ ହେଲା ନାହିଁ ।

ଏହାପରେ ଜାଭିଏରଙ୍କର କେତେକ ବନ୍ଧୁଙ୍କର ପରାମର୍ଶ କ୍ରମେ ବାଲାପିତିଆର ବିଶିଷ୍ଟ ତାନ୍ତ୍ରିକଙ୍କୁ ଡକାଗଲା । ତାନ୍ତ୍ରିକ ସମସ୍ତ ଘଟଣା ଶୁଣିବା ପରେ ତାନ୍ତ୍ରିକ ପଦ୍ଧତିରେ ପୂଜା କର୍ମ (Devil dance) କରିବାକୁ ଚାହିଁଲେ । ଏକ ଅଣ ଖ୍ରୀଷ୍ଟିଆନ ପୂଜା ତାଙ୍କ ପରିବାରରେ ହେବାକୁ ସେମାନେ ଅନିଚ୍ଛା ପ୍ରକାଶ କରିବାରୁ ତାନ୍ତ୍ରିକ ତାହା ନିଜ ଘରେ କରିପାରିବେ ବୋଲି କହିଲେ । ସେଥିପାଇଁ ଚାରି ଶହ ଟଙ୍କା ଆବଶ୍ୟକ ହେବ ବୋଲି କହିବାରୁ ଜାଭିଏର ଏହି ଅର୍ଥ ମଧ୍ୟ ଦେଲେ । ପୂଜାକର୍ମ ପରେ ତାନ୍ତ୍ରିକ ଆସି କହିଲେ ଯେ ସେହି ପୂଜା ସମୟରେ ଯେଉଁ ପ୍ରେତଟି ଏହି ସବୁ ମନ୍ଦ କାର୍ଯ୍ୟ କରୁଥିଲା ତାହାକୁ ସେ ବହୁ କଷ୍ଟରେ ତାଙ୍କ ଘରୁ କାଲାପାତିଆକୁ ନେଲେ । ସେହି ପ୍ରେତଟି ଗୋଟିଏ ମୁସଲିମ ସ୍ତ୍ରୀଲୋକର ଆତ୍ମା, ଯାହାକୁ ତାର ତରୁଣ ସ୍ୱାମୀ ଅନ୍ତଃସତ୍ତ୍ୱା ଅବସ୍ଥାରେ ବହୁତ ଦିନ ତଳେ ହତ୍ୟା କରିଥିଲା । ସେମାନେ ଅନେକ ବର୍ଷ ତଳେ ଜାଭିଏର ରହୁଥିବା ଘରେ ରହୁଥିଲେ । ଜାଭିଏରଙ୍କର ଝିଅ ଅନ୍ତଃସତ୍ତ୍ୱା ଥିବାରୁ ପ୍ରେତଟି ସେଠାକୁ ଆସି ତାଙ୍କ ଝିଅକୁ ହଇରାଣ କରି ମାରିଦେବାକୁ ଚାହୁଁଥିଲା । ତାନ୍ତ୍ରିକ ଜଣଙ୍କ ପୁନଶ୍ଚ କହିଲେ ଯେ ସେ ବହୁ କଷ୍ଟରେ ସେହି ପ୍ରେତଟିକୁ ତାଙ୍କ ଘର ଛାଡିବାକୁ ଅନୁରୋଧ କରିବାରୁ ସେ ଗୋଟିଏ ସର୍ତ୍ତରେ ଛାଡିବାକୁ କହିଲା । ଯଦି ଗୋଟିଏ ଗର୍ଭିଣୀ ଛେଳିକୁ ପ୍ରେତ ଉଦ୍ଦେଶ୍ୟରେ ବଳି ଦିଆଯାଏ ତେବେ ସେ ଯିବ ବୋଲି ସୂଚନା ଦେବାରୁ ସେ ବହୁ କଷ୍ଟରେ ସେହି ପ୍ରକାର ଏକ ଛେଳିକୁ ସଂଗ୍ରହ କରି ପୁନଶ୍ଚ ପୂଜା କର୍ମ କରି ଛେଳିଟିକୁ ବଳି ଦେଲେ । ପ୍ରେତଟି ଛାଡି ଚାଲିଯିବାର ସୂଚନା ସ୍ୱରୂପ ତାନ୍ତ୍ରିକଙ୍କ ବାଡିରେ ଥିବା ପଣସ ଗଛର ଶୀର୍ଷଭାଗ ଜୋରରେ କମ୍ପିତ ହୋଇଥିଲା । ଛେଳିଟି ସଂଗ୍ରହ କରି ଦ୍ୱିତୀୟ ପୂଜା କରିବାର ଖର୍ଚ୍ଚ ବାବଦରେ ତାନ୍ତ୍ରିକ ଜଣଙ୍କ ଆଉ ଦୁଇ ଶହ ଟଙ୍କା ସଂଗ୍ରହ କରି ଜାଭିଏରଙ୍କ ଘରୁ ବିଦାୟ ନେଲେ ।

ତାନ୍ତ୍ରିକ ଜଣଙ୍କ ଯେଉଁଦିନ ବିଦାୟ ନେଲେ ସେହି ଦିନ ରାତିରେ ଅନ୍ୟ ଏକ ଅଘଟଣ ଘଟିଲା । ରାତି ପ୍ରାୟ ଦୁଇଟା ବେଳେ ଜାଭିଏରଙ୍କର ଛୋଟ ପୁଅଟିର କାନ୍ଦରେ ପରିବାରର ସମସ୍ତେ ଉଠି ପଡିଲେ । ଆଲୁଅ ଲଗାଇବା ପରେ ପୁଅଟି

ଶ୍ରୀମତୀ ଜାଭିଏରଙ୍କ ସହିତ ଖଟରେ ଶୋଇଥିଲେ ବି ଭୂମି ଉପରେ ଶୋଇବାର ଦେଖାଗଲା । ତାକୁ ପଚାରିବାରୁ ସେ କହିଲା ଯେ ଗୋଟିଏ ମୁସଲିମ ସ୍ତ୍ରୀଲୋକ ତା ପାଖକୁ ଆସି ତାକୁ ମାରି ଦେବାକୁ ଧମକ ଦେଲା । ତାପରେ ତାର ହାତକୁ ଧରି ଖଟ ତଳକୁ ଟାଣି ଦେଲା । ଏହି ଘଟଣା ବ୍ୟତୀତ ସେହି ରାତିରେ କୌଣସି ଟେକା ପଡିନଥିଲା ।

ତାର ଦୁଇଦିନ ପରେ ଉଇଲସନ ଓ ତାଙ୍କ ସ୍ତ୍ରୀ ଶୋଇଥିବା ଘରେ ଏକ ବଡ ଟେକା ପଡିଲା । ଶ୍ରୀମତୀ ଉଇଲସନ ଉଠି ପଡିବାବେଳେ ମୁସଲିମ ସ୍ତ୍ରୀ ଲୋକଟିକୁ ନିଜ ରୁମର ଗୋଟିଏ କୋଣରେ ଛିଡା ହୋଇଥିବାର ଦେଖିଲେ କିନ୍ତୁ ଆଲୁଅ ଲଗାଇବା ବେଳକୁ ସେ ଅନ୍ତର୍ଦ୍ଧାନ ହୋଇଯାଇଥିଲା । ଏହାଛଡା ଏହି ସମୟରେ ଜାଭିଏରଙ୍କର ମୁହଁରେ ଓ କାନ ତଳେ କୁଣ୍ଡେଇ ହୋଇ କିଛି ଦାଗ ଦେଖାଗଲା । ସେ କେତେକ ଔଷଧ ଲଗାଇଲେ ମଧ୍ୟ ପ୍ରତିଦିନ ସକାଳୁ ଦେହରେ ଆଞ୍ଚୁଡା ଦାଗ ଦେଖାଯାଉଥିଲା ଓ ନଖର ଚିହ୍ନ ବାରି ହୋଇ ପଡୁଥିଲା । ଏହାବି ସେହି ପ୍ରେତର କାର୍ଯ୍ୟ ବୋଲି ଧାରଣା ସୃଷ୍ଟି ହେଲା ।

କୋଭୁର ଏହି ସମସ୍ତ ଘଟଣା ଶୁଣିବାପରେ ଘରଟିକୁ ପରୀକ୍ଷା କରିବାକୁ ସମସ୍ତ କୋଠରୀକୁ ଗଲେ । ଘରଟିରେ ଦୁଇଟି ଶୋଇବା ଘର ଓ ଗୋଟିଏ ବୈଠକ ଘର ଥିଲା । କୋଠରୀ ଗୁଡିକ କାନ୍ଥ ଦ୍ୱାରା ପୃଥକ ଥିଲେ । ପୃଥକ କରୁଥିବା କାନ୍ଥ ଗୁଡିକ ଛାତକୁ ସ୍ପର୍ଶ କରିନଥିଲା ଓ କୋଠରୀ ଗୁଡିକର ଉପର ଅଂଶଟି ମେଲା ଥିଲା । ଉଇଲସନ ଓ ତାଙ୍କ ସ୍ତ୍ରୀ ଗୋଟିଏ କୋଠରୀରେ ରହୁଥିଲେ ଓ ଅନ୍ୟ ଗୋଟିଏ କୋଠରୀରେ ଶ୍ରୀମତୀ ଜାଭିଏର, ଅବିବାହିତ ଝିଅ ଓ ଛୋଟ ପୁଅଟି ଏବଂ ବୈଠକ ଘରଟିରେ ଜାଭିଏର ଶୋଉଥିଲେ । ଏହାପରେ କୋଭୁର ପରିବାରର ଲୋକମାନଙ୍କୁ ଜଣ ଜଣ କରି ନିରୋଳାରେ କଥା ହୋଇ ଆଉ କେତେକ ତଥ୍ୟ ସଂଗ୍ରହ କଲେ ।

ଜାଭିଏର, ତାଙ୍କ ପତ୍ନୀ ଓ ସାନ ଝିଅ ରୋଜ୍ ଟେକା ପଡିବାର ଶବ୍ଦ ଶୁଣିଛନ୍ତି ଓ ବଡ ଝିଅର ପାଟି ଶୁଣି ତାଙ୍କ ରୁମକୁ କେତେଥର ଯାଇଛନ୍ତି । ହେଲେ ଶ୍ରୀମତୀ ଜାଭିଏର ଓ ରୋଜ ଟେକା ପଡିବା ସମୟରେ ଦେଖିନାହାନ୍ତି । କିନ୍ତୁ ଜାଭିଏର ଥରେ ଟେକା ପଡିବାର ଦେଖିଛନ୍ତି । ଉଇଲସନଙ୍କ କୋଠରୀର ଗୋଟିଏ କାନ୍ଥରେ ଟେକା

ବାଜିଥାଏ ଓ ବେଳେବେଳେ ସେହି କାନ୍ଥକୁ ଲାଗିକରି ଥିବା ଖଟର ମଶାରୀ ଉପରେ ପଡିଥାଏ । ଶ୍ରୀମତୀ ଉଇଲସନ କହିଲେ ଯେ ଘରର ଜିନିଷ ପତ୍ର ଅନେକ ସମୟରେ ଇତସ୍ତତଃ ହେବାର ସେ ଦେଖିଛନ୍ତି । ଥରେ କାନ୍ଥରେ ଝୁଲୁଥିବା ତାଙ୍କ ସ୍ୱାମୀଙ୍କର ଫଟୋଟି ମିଳିଲା ନାହିଁ, ପୁଣି ଦୁଇଦିନ ପରେ ତାହା ଟଙ୍ଗା ହେବା ଜାଗାରେ ଦେଖାଗଲା । ମଧ୍ୟରାତ୍ରିରୁ ସକାଳ ପର୍ଯ୍ୟନ୍ତ ଟେକା ପଡୁନଥିଲା, ଅଥଚ ରାତିରେ ଶୋଇବା ସମୟରେ ଏହା ପଡୁଥିଲା । ଭୟ ଓ ଉତ୍କଣ୍ଠା ଯୋଗୁଁ ଅଧିକାଂଶ ରାତିରେ ସେ ଶୋଇପାରୁନଥିଲେ, ତେଣୁ ସେ ଦିନରେ ଶୋଉଥିଲେ । ଉଇଲସନ କହିଲେ ଯେ ଯଦିବା ପ୍ରଥମେ ପ୍ରଥମେ ସେ ବହୁତ ଭୟ କରୁଥିଲେ ପ୍ରତିଦିନ ଏହି ଘଟଣା ଦେଖି ଦେଖି ଆସ୍ତେ ଆସ୍ତେ ସେ ଏହାକୁ ଦେହ ସୁହା କରିନେଲେ ।

ଏ ସମସ୍ତଙ୍କ ସହ କଥାବାର୍ତ୍ତା ଶେଷରେ କୋଭୁର ରୋଜ୍ ସହିତ କଥାହେଲେ । ସେ ବେଶ୍ ସ୍ୱାସ୍ଥ୍ୟବତୀ ଓ ସୁନ୍ଦରୀ ଥିଲା । ସେ ଦଶମ ଶ୍ରେଣୀରେ ପଢୁଥିଲା । ସେ ପଢାପଢିରେ ପଛୁଆ ଯଦିବା ସେ ନିୟମିତ ସ୍କୁଲକୁ ଯାଉଥିଲା । ତାର ଭୟଭିତ ମୁଖମଣ୍ଡଳ, ଶଙ୍କିତ ଚାହାଣି ଓ କଥା ବାର୍ତ୍ତାରୁ କୋଭୁର ତା ସମ୍ପର୍କରେ ବେଶ୍ ଅନୁମାନ କରି ନେଇ ପ୍ରଶ୍ନର ଶୈଳୀରେ ପରିବର୍ତ୍ତନ କଲେ । ତାକୁ କୋଭୁର ବସିଥିବା ଚଉକିରେ ହାତ ରଖିବାକୁ କହି ତାର ହାତ ଉପରେ ନିଜ ହାତ ରଖି କିଛି ପ୍ରଶ୍ନ ଭିତରେ ତାକୁ ଏକ ସମ୍ମୋହିତ ଅବସ୍ଥାକୁ ନେଲେ । ସେ ଗତ ଛ' ମାସ ଧରି କଣ ସବୁ କରୁଥିଲା ପଚାରିବାରୁ ସେ କହିବାକୁ ଲାଗିଲା ଯେ ସେ ପଢୁଥିବା କନ୍‌ଭେଣ୍ଟ ସ୍କୁଲର ବଗିଚାରୁ କେତୋଟି ଛୋଟ ଛୋଟ ଟେକା ତାର ସ୍କୁଲ ବ୍ୟାଗରେ ଆଣୁଥିଲା । ରାତିରେ ସେ ଶୋଉଥିବା କୋଠରି ଉପର ବାଟ ଦେଇ (ଯେହେତୁ ଦୁଇ କୋଠରି ମଝି କାନ୍ଥଟି ଛାତକୁ ଛୁଇଁ ନଥିଲା) ନାନୀ ଭିଣୋଇଙ୍କ ଶୋଇବା ଘରକୁ ଫିଙ୍ଗୁଥିଲା । ସେ ତାର ନାନୀ ଭିଣୋଇଙ୍କ ଉପରେ ରାଗୁ ନଥିଲା, କିନ୍ତୁ ସେ କାହିଁକି ଟେକା ଫିଙ୍ଗୁଥିଲା ତାର କାରଣ କିଛି ଦେଇପାରିଲା ନାହିଁ । ସେ ଏହା ମଧ୍ୟ କହିଲା ଯେ ତାର ଭିଣୋଇ ତାକୁ ବହୁତ ସ୍ନେହ କରନ୍ତି । ଗତ ଖ୍ରୀଷ୍ଟମାସ ପର୍ବ ସମୟରେ ଓ ତାର ଜନ୍ମଦିନକୁ ସେ ତାକୁ କେତେକ ଜିନିଷ ଉପହାର ଦେଇଥିଲେ । ସେ ଥରେ ତାର ଭିଣୋଇ ଫଟୋଟି ନେଇ ତାର ସାଙ୍ଗକୁ ଦେଖାଇ ପରେ ଆଣି ରଖିଦେଲା । ପଢାପଢିରେ ଭଲ କରୁ ନଥିବା ଯୋଗୁଁ ସ୍କୁଲରେ ଶିକ୍ଷକମାନଙ୍କ ଦ୍ୱାରା ଓ ପରିବାରରେ

ବେଳେବେଳେ ଗାଳି ଶୁଣୁଥିଲା । ଏହାପରେ କୋଭୁର ରୋଜ୍‌କୁ ପ୍ରତିଶ୍ରୁତି ଦେଲେ ଯେ ସେ ତାର ଟେକା ଫିଙ୍ଗିବା ଘଟଣା ତାର ବାପା, ମା'ଙ୍କୁ କେବେବି ପ୍ରକାଶ କରିବେ ନାହିଁ । କିନ୍ତୁ ରୋଜ ଏହା ଆଉ ଫିଙ୍ଗିବ ନାହିଁ ବୋଲି ଶପଥ କରିବା ଦରକାର । ଏଥିରେ ରୋଜ ମଧ୍ୟ ସମ୍ମତ ହେଲା ।

ଏହାପରେ କୋଭୁର ପରିବାରର ସମସ୍ତଙ୍କୁ ଏକତ୍ର କରି ଆଉ ଟେକା ପଡିବ ନାହିଁ ବୋଲି କହିଲେ । ଯଦିବା ଘଟଣାର ବ୍ୟାଖ୍ୟା କରିଦେବା ଉଚିତ, ତଥାପି ରୋଜ୍‌ର ମନରେ ଆଘାତ ଲାଗିବା ବା ସେ ପରିବାରରେ ଅନ୍ୟମାନଙ୍କ ଦ୍ୱାରା ଭର୍ତ୍ସିତ ହେବାର ସମ୍ଭାବନା ଥିବାରୁ ସେ ଏ ବିଷୟରେ କିଛି ପ୍ରକାଶ କଲେ ନାହିଁ । କିନ୍ତୁ ଭୂତ, ପ୍ରେତ ଶାନ୍ତି ନାମରେ ଗୁଣିଆଁ ମାନଙ୍କ ଦ୍ୱାରା ଶୋଷିତ ନ ହେବାକୁ ସେ ସେମାନଙ୍କୁ ପରାମର୍ଶ ଦେଲେ । ଏହି ଘଟଣା ପରଠୁ ଜାଭିଏରଙ୍କ ପରିବାରରେ ଟେକା ପଡିବା ବନ୍ଦ ହେଲା ।

ରାତିରେ ଓ କେବଳ ରବିବାର ଦିନରେ ଟେକା ପଡିବା ଘଟଣାରୁ ଜଣା ପଡୁଛି ଯେ ରୋଜ୍ ଦିନରେ ସ୍କୁଲରେ ଥିବାରୁ ସେ ଏହା କରିପାରେ ନାହିଁ । ସେହିପରି ମଧ୍ୟ ରାତ୍ରି ପରେ ଟେକା ନ ପଡିବାର କାରଣ ହେଉଛି ସେ ରାତିରେ ଶୋଇପଡେ । ସେ ଏକ ରକ୍ଷଣଶୀଳ ପରିବାରରେ ବଢିଥିବାରୁ ତାର କେହି ପୁଅ ସାଙ୍ଗ ନଥିଲେ ବା ପୁଅ ସାଙ୍ଗ କରିବାର ସ୍ୱାଧୀନତା ତାର ନଥିଲା । ତାର ନାନୀ ତାର ଭିଣୋଇ ସହିତ ଏକାଠି ରହିବା ଓ ଯୌନ ସଂଭୋଗ କରିବାର ଭାବନାରୁ ତାର ଅବଚେତନ ମନରେ ନାନୀ ପ୍ରତି ଈର୍ଷା ଭାବ ସୃଷ୍ଟି ହୋଇଥିଲା । ତାର ଅବଚେତନ ମନରେ ସେ ତାର ଭିଣୋଇ ପ୍ରତି ଆକୃଷ୍ଟ ହେଉଥିଲା ଓ ନାନୀ ପ୍ରତି ଈର୍ଷା ଯୋଗୁଁ ନାନୀକୁ ଟେକା ଫିଙ୍ଗୁଥିଲା । ସେ ତାର ଭିଣୋଇର ଫଟୋକୁ ନେଇ ତାର ସାଙ୍ଗକୁ ଦେଖାଇବା ଘଟଣାରୁ ଭିଣୋଇ ପ୍ରତି ତା'ର ମାନସିକ ଆକର୍ଷଣର ସୂଚନା ମିଳେ । ପାଠ ପାଇଁ ସେ ଘରେ ଓ ସ୍କୁଲରେ ଗାଳି ଶୁଣୁଥିବା ହେତୁ ତା ମନରେ ନ୍ୟୂନ ଭାବନା ସୃଷ୍ଟି ହେଉଥିଲା । ସୁତରାଂ ତାର ସାମର୍ଥ୍ୟ ଦେଖାଇ ଓ ଅନ୍ୟମାନଙ୍କର ସନ୍ଦେହର ପାତ୍ର ନ ହୋଇ ସେ ପରିବାରରେ ଅନ୍ୟମାନଙ୍କୁ ହଇରାଣ କରିବା ଆନନ୍ଦକୁ ଅବଚେତନ ମନରେ ଉପଭୋଗ କରୁଥିଲା ।

ଟେକା ଗୁଡିକ ସନ୍ନିହିତ ଘରର ବିପରୀତ କାନ୍ଥରେ ବାଜୁଥିବାରୁ ବା ମଶାରୀ ଉପରେ ପଡୁଥିବାରୁ ଏହା ସୂଚନା ଦେଉଛି ଯେ ସେ ଅନ୍ୟ କୋଠରିରୁ ହିଁ ଦୁଇ ବଖରାକୁ ଭାଗ କରୁଥିବା କାନ୍ଥର ଉପରି ଭାଗ ଦେଇ ଫିଙ୍ଗୁଥିଲା ।

ପିଲାଟି ଖଟରୁ ଖସି ତଳେ ଶୋଇବା ଘଟଣା ସହିତ ମୁସଲିମ ସ୍ତ୍ରୀ ପ୍ରେତର କିଛି ସମ୍ପର୍କ ନାହିଁ । ସମ୍ଭବତଃ ସେ ସେହିଦିନ ସକାଳେ ମୁସଲିମ୍ ସ୍ତ୍ରୀ ପ୍ରେତ କଥା ଶୁଣିଥିବାରୁ ରାତିରେ ସେ ସମ୍ପର୍କରେ ସ୍ୱପ୍ନ ଦେଖିଥିଲା ଓ ଭୟଭୀତ ହୋଇ ନିଦରେ ତଳକୁ ଖସି ପଡିଥିଲା । ଶ୍ରୀମତୀ ଉଇଲସନ ନିଜ କୋଠରିରେ ଦେଖିଥିବା ଭୂତ ଏକ ଭ୍ରମ ପ୍ରତ୍ୟକ୍ଷ ଛଡା ଅନ୍ୟ କିଛି ନୁହେଁ । ଜାଭିଏରଙ୍କ ଦେହର ନଖ ଦାଗ ତାଙ୍କ ନିଜର କୁଣ୍ଡେଇ ହେବା ଯୋଗୁଁ ସୃଷ୍ଟି ହେଉଥିବା ସମ୍ଭବ । ସେ ଚର୍ମରୋଗରେ ଆକ୍ରାନ୍ତ ହେତୁ ତାଙ୍କ ମୁହଁରେ ଓ ଦେହରେ କୁଣ୍ଡେଇ ହେବା ଚିହ୍ନ ଦେଖାଦେବା ଜଣାପଡେ । ଏହା କୌଣସି ଭୌତିକ କାଣ୍ଡର ପରିଣାମ ନ ଥିଲା ।

(ଖ) ଅରୋନ ସିଂହୋଙ୍କର ପରିବାରଟି ଛୋଟ । ତାଙ୍କର ବୟସ ବାଷଠି ଓ ତାଙ୍କ ପତ୍ନୀ ପୋଡି ହେମୀଙ୍କର ବୟସ ଚଉବନ । ସେମାନେ ୧୯୪୮ରେ ବିବାହ କରିଥିଲେ । ତାଙ୍କର ଗୋଟିଏ ଝିଅ, ପ୍ରେମବତୀ । ପ୍ରେମବତୀର ବୟସ ୧୨ ବର୍ଷ । ପରିବାରଟିର ଏପରି କେତେକ ଘଟଣା ଘଟିଲା ଯଦ୍ୱାରା ପରିବାରର ଶାନ୍ତି ବ୍ୟାହାତ ହେଲା ।

ଘରେ ବାଲି ଓ ଟେକା ପଡିବାକୁ ଲାଗିଲା । କାଚ ଗ୍ଲାସ, ମାଟି ପାତ୍ର, କପ, ପ୍ଲେଟ ଇତ୍ୟାଦି ଆଶ୍ଚର୍ଯ୍ୟଜନକ ଭାବରେ ଭାଙ୍ଗି ଯାଉଥିଲା । ପାଖରେ କେହି ନଥିଲେ ମଧ୍ୟ ଜଳୁଥିବା ଡିବିରି ଓ ଦୀପ ଲିଭି ଯାଉଥିଲା । ପ୍ରେମବତୀର ମୁଣ୍ଡର କେଶକୁ କୌଣସି ଅଜଣା ହାତ କାଟି ଦେଉଥିଲା । ଅଜଣା ହାତର ଲେଖା ଘରେ ପଡୁଥିଲା । କପ୍‌ବୋର୍ଡରେ ଥିବା ଲୁଗା ପଟା କତୁରୀରେ କେହି କାଟି ଦେଉଥିଲା । ଘରର କାନ୍ଥ ମାନଙ୍କରେ ଅସ୍ପଷ୍ଟ ଭାବରେ କେତେକ ଲେଖା ବେଳେବେଳେ ଦେଖାଯାଉଥିଲା । ଭାତ ବସିଥିବା ବେଳେ ବାଲି ମିଶାଇ ଦେଉଥିଲା । ଏହିପରି ଭୌତିକ କାଣ୍ଡ ସୃଷ୍ଟି ହେବାରୁ ଅରୋନ ସିଂହୋ କେତେକ ଗୁଣିଆଁ ଓ ତାନ୍ତ୍ରିକ ମାନଙ୍କୁ ପରାମର୍ଶ କରି ପାଞ୍ଚଥର ଭିନ୍ନ ଭିନ୍ନ ଦଳ ଦ୍ୱାରା ପୂଜା, ଯଜ୍ଞ ଇତ୍ୟାଦି କରିଥିଲେ ବି କୌଣସିଥିରେ

କିଛି ସୁଫଳ ମିଳିଲା ନାହିଁ । ବରଂ ପ୍ରତ୍ୟେକ ଥର ତାଙ୍କୁ ଅନେକ ଅର୍ଥ ବ୍ୟୟ କରିବାକୁ ପଡୁଥିଲା । ଅରୋନ ସିଂହୋଙ୍କର ପରିବାରରେ ଘଟୁଥିବା ଏହି ଘଟଣା ପାଖ ଆଖ ଗାଁମାନଙ୍କରେ ବେଶ୍ ବ୍ୟାପି ଯାଇଥିଲା ।

କୌଣସିଥିରେ କିଛି ସୁଫଳ ନ ହେବାରୁ କେଶଗାମାର ଡି.ଆଇ.ରଣସିଂହେ ସମ୍ବାଦ ପତ୍ର ମାଧ୍ୟମରେ କୋଭୁରଙ୍କର ସାହାଯ୍ୟ ପାଇଁ ନିବେଦନ କଲେ । ଫଳରେ କେତେକ ସାମ୍ବାଦିକ କୋଭୁରଙ୍କୁ ସାକ୍ଷାତ କରି ଏ ଘଟଣାକୁ ଅନୁସନ୍ଧାନ କରିବାକୁ ଅନୁରୋଧ ଜଣାଇଲେ । ଫଳରେ ୨୫.୧୧.୬୩ ଦିନ କେତେକ ସାମ୍ବାଦିକଙ୍କ ସହିତ କୋଭୁର ସସ୍ତ୍ରୀକ ଅରୋନ ସିଂହୋଙ୍କର ଗ୍ରାମକୁ ଯାତ୍ରା କଲେ । ମୁଖ୍ୟ ରାସ୍ତାର ମିଗୋଡା ଜଙ୍କସନଠାରୁ ତିନି କିଲୋମିଟର ଯାଇ ସେଟାରୁ ବିଲ ରାସ୍ତାରେ ରବର କ୍ଷେତ ମଧ୍ୟ ଦେଇ ଏକ କିଲୋମିଟର ଚାଲିକରି ଗଲେ ଅରୋନ ସିଂହୋଙ୍କର ଗ୍ରାମ ପଡିବ । ତାଙ୍କ ପରିବାରର ଘଟଣା ଆଖ ପାଖ ଗ୍ରାମମାନଙ୍କରେ ଏପରି ବ୍ୟାପି ଯାଇଥାଏ ଯେ ଅଧିକାଂଶ ଦିନ ତାଙ୍କ ଘରକୁ ଏସବୁ ବୁଝିବାକୁ ଲୋକ ଯାଉଥିଲେ ।

ଗୋଟିଏ ରବର ବଗିଚା ଭିତରେ ଅରୋନ ସିଂହୋଙ୍କର ଘର । ଘର ଆଗରେ ଗୋଟିଏ କାନ୍ଥରେ ଅଙ୍ଗାରରେ ଲେଖା ଯାଇଥିଲା "ଭୂତ ରହୁଥିବା ଘର" । ଏହାକୁ ବି କୁଆଡେ ଭୂତ ଲେଖିଥିଲା । ସେହିପରି ଘର ଭିତରେ ଆଉ କେତେକ ଜାଗାରେ ସିଂହଳୀ ଭାଷାରେ ଏହା ଲେଖା ଯାଇଥିଲା ଓ ଏହି ଲେଖାରେ ଗୁଡାଏ ବନାନ ଅଶୁଦ୍ଧି ରହିଥିଲା ।

ଅରୋନ ଓ ତାଙ୍କ ପତ୍ନୀ ପୋଡି ହେମୀ କହିଲେ ଯେ ପ୍ରାୟ ଆଠ ମାସ ତଳେ ଏହି ଘଟଣା ସବୁ ଘଟିବାକୁ ଆରମ୍ଭ କଲା । ପ୍ରଥମେ ବାଲି ପଡିଲା, ପରେ ଟେକା ପଡିଲା, କପ ପ୍ଲେଟ କପ ବୋର୍ଡରେ ଥିଲେ ବି ସେଗୁଡିକ ପଦାରେ ପଡି ଭାଙ୍ଗି ଯାଉଥିଲା, ଜଳୁଥିବା ଦୀପ ଝରକା କବାଟ ବନ୍ଦ ରହିଥିଲେ ମଧ୍ୟ ହଠାତ୍ ଲିଭି ଯାଉଥିଲା ଓ ଝିଅ ପ୍ରେମବତୀର କେଶ ପାଞ୍ଚଥର  ଭୂତ କାଟି ଦେଇଥିଲା । ଭୂତ ରୋଷେଇ ଘର ଛୁରୀରେ ତାର କେଶକୁ କାଟୁଥିଲା । ଯେତେବେଳେ ସେହି ଛୁରୀତଳେ ପଡି ଶବ୍ଦ ହେଉଥିଲା, ସେତେବେଳେ ସେଠାରେ ପ୍ରେମବତୀର କେଶ ମଧ୍ୟ ପଡିଥିବା ଦେଖି ତାକୁ ଭୂତ କାଟିଥିବା ସେ ଜାଣୁଥିଲା । ଝିଅର କାନ୍ଦ ଶୁଣି ବାପା, ମା ଯାଇ

ତାର ବାଳ କଟିଥିବା ଦେଖୁଥିଲେ । କପ ବୋର୍ଡରେ ଥିବା ତାଙ୍କର ଶାଢି ଓ ପ୍ରେମବତୀର ଫ୍ରକ୍ ପ୍ରେତ କାଟି ଦେଉଥିଲା ଓ ଛୋଟ ଛୋଟ କଟାଖଣ୍ଡକୁ ନେଇ କପଡାର ଖେଳଣା ମଧ୍ୟ କରୁଥିଲା । ଏହିସବୁ ସମସ୍ୟା ପରେ ପ୍ରେମବତୀକୁ ତାର ମାମୁଁଙ୍କ ପାଖକୁ ପଠାଇ ଦିଆଗଲା, ହେଲେ ପ୍ରେତ ତା ସହିତ ମଧ୍ୟ ସେଠାକୁ ଗଲା । ଦିନେ ତାର ମାମୁଁଙ୍କ ଟେବୁଲରୁ ଗୋଟିଏ ଲେଖା ମିଳିଲା ଓ ସେଥିରେ ଉଲ୍ଲେଖ ଥିଲା ଯେ ଯଦି ପ୍ରେମବତୀକୁ ତାର ବାପା, ମା'ଙ୍କ ପାଖକୁ ପଠାଇ ଦିଆ ନ ଯାଏ ତେବେ ତାଙ୍କର ଘଣ୍ଟାକୁ ଭାଙ୍ଗି ଦିଆଯିବ । ମାମୁଁଙ୍କର ଛୋଟ ପୁଅର କ୍ଷୀର ବୋତଲକୁ ମଧ୍ୟ ପ୍ରେତ ଭାଙ୍ଗି ଦେଇଥିଲା । ଅରୋନଙ୍କ ଘରକୁ ବହୁଲୋକ ଏ ବିଷୟ ଜାଣିବାକୁ ଆସୁଥିବାରୁ ଲୋକ ସମାଗମ ହେଉଥିଲା । କେତେଥର ସମବେତ ଲୋକମାନଙ୍କ ଉପରେ ଟେକା ମଧ୍ୟ ପଡିଥିଲା ।

ଏହାସବୁ ଶୁଣିବା ପରେ କୋଭୁର ଘରର ପରିବେଶକୁ ଦେଖିନେଲେ ଓ ପରିବାରର ତିନି ଜଣଙ୍କ ସହିତ ପୃଥକ ପୃଥକ ଭାବରେ କଥା ହେଲେ । ପ୍ରଥମେ ଅରୋନ ସିଂହୋ, ତାପରେ ପୋଡି ହେମୀ ଓ ଶେଷରେ ପ୍ରେମବତୀ ସହିତ ଜଣ ଜଣ କରି ଆଲୋଚନା କଲେ । ଅରୋନ ଓ ପୋଡି ହେମୀଙ୍କ ସହ କଥା ହେବାବେଳେ ପ୍ରକୃତରେ ସେମାନେ ଯାହା ଦେଖିଛନ୍ତି ତାହା କହିବାକୁ କୋଭୁର ଅନୁରୋଧ କଲେ । ଜଣେ ସାମ୍ବାଦିକ ସେମାନଙ୍କର କଥାବାର୍ତ୍ତାକୁ ମଧ୍ୟ ଲେଖୁଥିଲେ । ଜଣ ଜଣ କରି ଆଲୋଚନରୁ ସେ ଯାହା ତଥ୍ୟ ସଂଗ୍ରହ କଲେ ସେଥିରେ ଜଣା ପଡିଲା ଯେ ପୋଡି ହେମୀ ବନ୍ଧ୍ୟା ଥିଲେ । ପ୍ରେମବତୀକୁ ପନ୍ଦର ଦିନ ହୋଇଥିବା ବେଳେ ସେମାନେ ତାକୁ ଝିଅ ଭାବରେ ଗ୍ରହଣ କଲେ । ପ୍ରେମବତୀର ପ୍ରକୃତ ବାପା କିଏ ତାହା ତାଙ୍କୁ ଜଣାନାହିଁ । ପ୍ରେମବତୀର ମା' ଶିଶୁ କନ୍ୟାଟିର ବଞ୍ଚିବା ଚାହିଁ ନଥିଲେ । ପ୍ରେମବତୀର ବୟସ ୧୨ ବର୍ଷ ହୋଇଥିଲେ ବି ବୟସ ଅନୁଯାୟୀ ତାର ଶାରୀରିକ ବିକାଶ ହୋଇନଥିଲା । ସେ ପାଠପଢାରେ ବହୁତ ଦୁର୍ବଳ ଓ ମାତ୍ର ତୃତୀୟ ଶ୍ରେଣୀରେ ପଢୁଥିଲା, ସ୍କୁଲରେ ବା ପଡିଶାରେ ତାର କେହି ସାଙ୍ଗ ସାଥୀ ନଥିଲେ । ସେ ପିଲାମାନଙ୍କଠାରୁ ଦୂରେଇ ରୁହେ ଓ ତା'ର ମା ଅନ୍ୟ ପିଲାଙ୍କ ସହିତ ମିଶିଲେ ସେ ଖରାପ ହୋଇଯିବ ଭାବି ତାକୁ ଅନ୍ୟ ପିଲାଙ୍କ ସହିତ ମିଶିବାକୁ ଦେଉନଥିଲେ । ପ୍ରେମବତୀ ଯେ ଏକ ପାଳିତ କନ୍ୟା ତାକୁ କେବେବି କୁହାଯାଇ ନାହିଁ । ଆଠ ମାସ

ତଳେ ଥରେ ସେ ସ୍କୁଲରୁ କାନ୍ଦି କାନ୍ଦି ଫେରିଲା । ସେ କହିଲା ଯେ ତା ଶ୍ରେଣୀର ପିଲାମାନେ ସେ ଏକ "ପାଳିତ କନ୍ୟା" ବୋଲି କହି ତାକୁ ଚିଡାଉଛନ୍ତି । କିନ୍ତୁ ଅରୋନ ସିଂହୋ ଓ ପୋତି ହେମୀ ତାକୁ ସାନ୍ତ୍ୱନା ଦେଇ କହିଲେ ଯେ ସେହି ଝିଅମାନେ ମିଛ କଥା କହିଛନ୍ତି. ସ୍କୁଲର ପିଲାମାନେ ତାକୁ ଚିଡାଇବାରୁ ସେ ସ୍କୁଲକୁ ଯିବାକୁ ଘୃଣା କଲା ଓ ଶେଷରେ ଯିବା ବନ୍ଦ କରିଦେଲା ।

ସେମାନଙ୍କ ପାଖରୁ ଏ ସମସ୍ତ ତଥ୍ୟ ସଂଗ୍ରହ କଲାପରେ ଅତ୍ୟନ୍ତ ସ୍ନେହପୂର୍ଣ୍ଣ ଓ ହସ ମୁହଁରେ କୋଭୁର ପ୍ରେମବତୀ ସହିତ କଥା ହେଲେ । ଘରେ ଯାହା ସବୁ ହେଉଛି ତାହା ନ କରିବାକୁ ତାକୁ ପ୍ରବର୍ତ୍ତାଇଲେ । ତିରିଶ ମିନିଟ୍ କଥା ହେବା ପରେ ତାର ବାପା ମାଙ୍କ ସହିତ ଆଲୋଚନା କଲେ । ଯଦି ତାଙ୍କ ଘରେ ପୁନଶ୍ଚ ପୂର୍ବ ପରି ଘଟେ ତେବେ କୌଣସି ଗୁଣିଆଁକୁ ନଡାକି ମାନସିକ ରୋଗ ଚିକିତ୍ସକଙ୍କର ସାହାଯ୍ୟ ନେବାକୁ ପରାମର୍ଶ ଦେଲେ ।

ଫେରିବା ବାଟରେ ସାମ୍ବାଦିକମାନଙ୍କୁ ଘଟଣାଟିର ବିଶ୍ଳେଷଣ କରି କୋଭୁର କହିଲେ ଯେ ପ୍ରେମବତୀର ମାନସିକ ଆଘାତ ଓ ଅସନ୍ତୁଳିତ ଅବସ୍ଥା ଯୋଗୁଁ ସେ ଏସବୁ କାର୍ଯ୍ୟ କରୁଥିଲା । ଯେଉଁ ବାପା, ମା'ଙ୍କୁ ସେ ଏତେ ଭଲ ପାଏ ସେମାନେ ଯେ ତାର ପ୍ରକୃତ ବାପା, ମା' ନୁହଁନ୍ତି ଏହି ଘଟଣା ତା ପାଇଁ ଅତ୍ୟନ୍ତ ଆଘାତ ପ୍ରଦ ଥିଲା । କୈଶୋରରେ ନିଜର ଅତି ପ୍ରିୟଜନଙ୍କର ବ୍ୟବଧାନ ମନରେ ଗଭୀର ରେଖାପାତ କରିଥାଏ । ଏହି ମାନସିକ ଆଘାତ ଜନିତ ନୈରାଶ୍ୟ ଯୋଗୁଁ ସେ ସ୍କିଜୋଫ୍ରେନିକ ହୋଇଗଲା । ସମ୍ଭବତଃ ଅରୋନ ସିଂହୋ ଓ ତାଙ୍କ ପତ୍ନୀ କାଳେ ପ୍ରେମବତୀକୁ ତା'ର ଜନ୍ମ ବିଷୟରେ କେହି କହିଦେବ ଏହି ଆଶଙ୍କାରେ ତାକୁ ଅନ୍ୟମାନଙ୍କ ସହିତ ମିଶିବାର ସୁଯୋଗ ଦେଉନଥିଲେ । ଏଥିପାଇଁ ସେ ପ୍ରଥମରୁ ଅନ୍ତର୍ମୁଖୀ (Introvert) ହୋଇଯାଇଥିଲା । ଯଦିବା ତାର ବୟସ ୧୨ ବର୍ଷ, ତଥାପି ତାର ମାନସିକ ବିକାଶ ବିଶେଷ ହୋଇନଥିଲା, ଓ ସେ ୬/୭ ବର୍ଷର ପିଲାଙ୍କ ପରି କଥାବାର୍ତ୍ତା କରୁଥିଲା । ଛ/ସାତ ବର୍ଷର ପିଲାମାନେ ଖେଳିବାକୁ ଯେପରି ଆଗ୍ରହ କରନ୍ତି ସେ ସେହି ସୁଯୋଗ ପାଉନଥିଲା । ସୁତରାଂ ସେ ନିଜ ମା'ର ଶାଢିକୁ କାଟି ସେଥିରେ ଖେଳନା କରୁଥିଲା । ତାର ଶାରୀରିକ ବିକାଶ ଠିକ୍ ଭାବେ ହୋଇନଥିବା ଯୋଗୁଁ ସେ ଅନ୍ୟ ପିଲାଙ୍କ ପରି ଦେଖାଯିବାକୁ ନିଜର ବାଳକୁ କାଟି ଦେଉଥିଲା ।

ପଢାପଢିରେ ସେ ଅତି ପଛୁଆ ହେବାର କାରଣ ତାର ବୁଦ୍ଧିହୀନତା ଥିଲା । ତାର ନିଜର ମା ଗର୍ଭ ଅବସ୍ଥାରେ ସନ୍ତାନ ଚାହୁଁ ନଥିବାରୁ ତାର ଜନ୍ମ ପରେ ହୁଏତ ତାକୁ ଏକ ଅବାଂଛିତ ସନ୍ତାନ ଭାବି ତାର ପ୍ରକୃତ ଯତ୍ନ ନେଇ ନଥିବେ । ତାର ଜନ୍ମ ପରେ ପରେ ତାର ଅଯତ୍ନ ଓ ପୁଷ୍ଟିହୀନତା ଯୋଗୁଁ ପରବର୍ତ୍ତୀ ସମୟରେ ତାର ଶାରୀରିକ ଓ ମାନସିକ ବିକାଶ ଠିକ୍ ହେଉନଥିବା ମନେହୁଏ । ତାର ସୁସ୍ଥ ବିକାଶ ତାର ବାପା, ମା ତାକୁ କେତେ ଦୂର ଉପଯୁକ୍ତ ଚିକିତ୍ସା ଓ ଯତ୍ନ ଭିତରେ ରଖି ପାରିବେ ତା ଉପରେ ନିର୍ଭର କରେ ।

ତଥାକଥିତ ଭୌତିକ କାଣ୍ଡ ସୃଷ୍ଟି ହେଉଥିବା ପରିବାରର ଲୋକମାନେ କୁସଂସ୍କାର ବଶତଃ ଏସବୁକୁ ମାନବିକ କାର୍ଯ୍ୟ ନ ଭାବି କୌଣସି ଭୂତ ବା ଐଶ୍ୱରିକ କ୍ରିୟା ବୋଲି ଭାବିବାରୁ ବହୁ ସମୟରେ ମାନସିକ ଭୟ ଓ ଉତ୍ତେଜନା ଭିତରେ ରହିଥାନ୍ତି । ସୁତରାଂ ସେ ସମୟରେ ଯେ କୌଣସି ସାଧାରଣ ଘଟଣାକୁ ବି ସେମାନେ ଏକ ଅଲୌକିକ ମାନଦଣ୍ଡରେ ବୁଝିବାକୁ ପ୍ରଯତ୍ନ କରନ୍ତି । ଏଣୁ ଶୂନ୍ୟରେ ବସ୍ତୁ ଭାସିବା, ଅଦୃଶ୍ୟ ହାତ, ଅଦୃଶ୍ୟ ଅନୁଧାବନ ଇତ୍ୟାଦି ବିଷୟ ଗୁଡିକୁ ସମ୍ପୂର୍ଣ୍ଣ କପୋଳ କଳ୍ପିତ ଭାବରେ ସୃଷ୍ଟି କରାଯାଇଥାଏ ।

(ଗ) ଟିକିରି ସେନା ହେଉଛନ୍ତି ନିନ୍ଦଗାମା ତାଲୁକର ଜମିଦାର । ଦୁଇ ଶହ ଏକର ନଡିଆ ବଗିଚା ଓ ସେହିପରି ଅପର୍ଯ୍ୟାପ୍ତ ଚାଷ ଜମିର ସେ ମାଲିକ । ତାଙ୍କର ଜାଗିର ଥିବା ଜମିରେ ପ୍ରାୟ ପଚାଶଟି ପରିବାର ରହି ତାଙ୍କ ଚାଷ ଜମିରେ କାର୍ଯ୍ୟ କରନ୍ତି । ଟିକିରି ସେନା ଓ ତାଙ୍କ ପତ୍ନୀ ଗ୍ରାମର ଲୋକମାନଙ୍କ ପାଇଁ ବେଶ୍ ଦୟାଶୀଳ । କିନ୍ତୁ ସେ ଲକ୍ଷ୍ୟହୀନ ଭାବରେ ବିଳାସ ଓ ଆଳସ୍ୟ ଭିତରେ ନିଜର ବିରାଟ ଅଟାଳିକା ମଧ୍ୟରେ ରହିଥାନ୍ତି । ଜାମିସ ଓ ପିଟର ଏବଂ ସେମାନଙ୍କର ପତ୍ନୀମାନେ ଟିକିରି ସେନାଙ୍କ ଘରେ ଚାକର ଭାବରେ କାମ କରନ୍ତି । ପ୍ରତିଦିନ ସେମାନେ ସକାଳୁ କାମ କରିବାକୁ ଆସନ୍ତି । ସନ୍ଧ୍ୟା ପୂର୍ବରୁ ସ୍ତ୍ରୀ ଲୋକମାନେ କାମ ସାରି ଚାଲି ଯାଉଥିଲେ ବି ସେମାନଙ୍କର ସ୍ୱାମୀମାନେ ରାତି ଦଶଟା ପରେ ହିଁ ଟିକିରି ସେନାଙ୍କ ପରିବାର ବିଛଣାକୁ ଯିବା ପରେ ନିଜ ନିଜ ଘରକୁ ଫେରିଥାନ୍ତି ।

ଦିନେ ହଠାତ୍ ରାତି ଏଗାରଟାରେ ତାଙ୍କ ଚାକରମାନେ ରହୁଥିବା ବସ୍ତି ଭିତରୁ ଜୋର ପାଟିତୁଣ୍ଡ ଶୁଣାଗଲା । ଘଟଣାଟି କ'ଣ ଜାଣିବାକୁ ଚେଷ୍ଟା କରିବା ପରିବର୍ତ୍ତେ

ଟିକିରି ସେନା ନିଜ କୋଠାର ସମସ୍ତ ଆଲୁଅ ଲିଭାଇ ଦେଇ ଘରର ଭିତର ପଟୁ ସବୁ ଝରକା ଓ କବାଟ ବନ୍ଦ କରିଦେଲେ । କାଣ୍ଡିଠାରେ ପଢୁଥିବା ତାଙ୍କର କୋଡିଏ ବର୍ଷର ବଡ ପୁଅ ସେଦିନ ଛୁଟିରେ ଘରକୁ ଆସିଥାଏ । ସେ ତଳ ମହଲାରେ ଗୋଟିଏ ଘରେ ଶୁଏ । ତାକୁ ମଧ୍ୟ ତା କୋଠରିରେ ସମସ୍ତ ଝରକା କବାଟ ବନ୍ଦ କରିଦେବାକୁ ସେନା କହିଲେ । ସମ୍ଭବତଃ କୌଣସି ହତ୍ୟା ବା ସେପରି କିଛି ଅଘଟଣ ବସ୍ତିରେ ଘଟିଥିବା ସେ ଅନୁମାନ କରିଥିଲେ ।

ପରଦିନ ଜାମିସ ଓ ତାର ସ୍ତ୍ରୀ କାମ ପାଇଁ ଠିକ୍ ପାଞ୍ଚଟାରେ ଆସିଥିଲେ, ପିଟର ଓ ତାର ସ୍ତ୍ରୀ ଦିନ ହେବା ପରେ ଆସିଲେ । କାମ କରୁଥିବା ଚାକର ଚାକରାଣୀମାନେ ପୂର୍ବ ରାତିରେ ଦେଖିଥିବା ଏକ ଅଲୌକିକ ଗତିଶୀଳ ବଡ ଅଗ୍ନିଶିଖା ବିଷୟରେ କଥା ହେଲେ । ରାତି ଏଗାରଟାରେ ଏକ ଅଗ୍ନିପିଣ୍ଡ କିପରି ରାସ୍ତାରେ ବୁଲୁଥିଲା ଓ ଶେଷରେ ଅଦୃଶ୍ୟ ହୋଇଗଲା ତାହା ଟିକିରି ସେନା ଓ ତାଙ୍କର ପରିବାର ଚାକରମାନଙ୍କ ଠାରୁ ଜାଣିବାକୁ ପାଇଲେ ।

ପରଦିନ ରାତିରେ ମଧ୍ୟ ସେହି ଅଗ୍ନି ପିଣ୍ଡ ଠିକ୍ ଏଗାରଟା ସମୟରେ ବସ୍ତି ପାଖ ଅଞ୍ଚଳରୁ ବାହାରି ରାସ୍ତାରେ ବୁଲି ବୁଲି ଅଦୃଶ୍ୟ ହୋଇଗଲା । ଦ୍ୱିତୀୟ ଦିନ ଜମିଦାରଙ୍କ ପରିବାରର ସମସ୍ତେ ଝରକା ବାଟ ଦେଇ ସେହି ରହସ୍ୟଜନକ ଅଗ୍ନିପିଣ୍ଡକୁ ଦେଖିଲେ । ତୃତୀୟ ଦିନ ବେଳକୁ ଏହି ସମ୍ବାଦ ଆଖ ପାଖ ଗ୍ରାମରେ ବ୍ୟାପିଗଲା ଓ ଅନେକ ଲୋକ ଜମିଦାରଙ୍କ ଖଳାକୁ ଆସି ସେହି ଦୃଶ୍ୟ ଦେଖିଲେ । ଏହି ରହସ୍ୟଜନକ ଅଗ୍ନିପିଣ୍ଡ ବିଷୟକୁ ନେଇ ଗ୍ରାମ ଓ ବସ୍ତିରେ କୋକୁଆ ଭୟ ସୃଷ୍ଟି ହୋଇଗଲା । ଗ୍ରାମର ଲୋକମାନେ ସନ୍ଧ୍ୟା ସାତଟା ସୁଦ୍ଧା ଘରର ଟାଟି କବାଟ ବନ୍ଦ କରି ଘର ଭିତରେ ରହିଲେ । କୌଣସି ଲୋକ ରାତି ସାତଟା ପରେ ଭୟରେ ପଦାକୁ ବାହାରିଲେ ନାହିଁ । ଗ୍ରାମର ରାସ୍ତା ଘାଟ ସନ୍ଧ୍ୟା ପରଠୁ ଜନଶୂନ୍ୟ ହୋଇଗଲା । ଟିକିରି ସେନାଙ୍କ ଘରେ କାମ କରୁଥିବା ହଳିଆ, ଚାକର, ଚାକରାଣୀ ସନ୍ଧ୍ୟା ପୂର୍ବରୁ ନିଜ ନିଜ ଘରକୁ ଫେରି ଯାଉଥିଲେ ଓ ଦିନ ହେବା ପରେ ଯାଇ ଆସୁଥିଲେ ।

ପ୍ରତିଦିନ ରାତିରେ ଏହି ଦୃଶ୍ୟ ଦେଖାଯିବାରୁ ରହସ୍ୟମୟ ଅଗ୍ନିଶିଖା ବିଷୟରେ ନାନା ଲୋକ ନାନା କଥା କହିବାକୁ ଲାଗିଲେ । କିଏ କିଏ ଏହାକୁ ଅଗ୍ନିଦେବତା ବୋଲି

କହୁଥିବା ବେଳେ କିଏ କିଏ ଏହାକୁ ଭୈରବୀ ବୋଲି କହିବାକୁ ଲାଗିଲେ । ଦୁଇବର୍ଷ ତଳେ ସେହି ରାସ୍ତାରେ ହୋଇଥିବା ଏକ ହତ୍ୟାକାଣ୍ଡରେ ମୃତ୍ୟୁବରଣ କରିଥିବା ବାନ୍ଦରାର ଭୂତ ବୋଲି ମଧ୍ୟ କେହି କେହି କହିଲେ ।

ଟିକିରି ସେନା ଯଦିବା ଅନେକ ସମ୍ପତ୍ତିର ଅଧିକାରୀ, ତଥାପି ଚାକର, ଚାକରାଣୀଙ୍କ ବ୍ୟତୀତ ତାଙ୍କ ପରିବାର ଚଳିବା କଷ୍ଟକର ଥିଲା । ପ୍ରତ୍ୟେକ କାର୍ଯ୍ୟ ପାଇଁ ସେମାନେ ଚାକରମାନଙ୍କ ଉପରେ ନିର୍ଭରଶୀଳ ଥିଲେ । ଏପରିକି ସେ ନିଜେ ନିଜର ସ୍ନାନ ପାଇଁ ଚାକର ଉପରେ ନିର୍ଭର କରୁଥିଲେ । ତାଙ୍କୁ ଜାମିସ ଗାଧୁଆ ଘରେ ସାବୁନ ଲଗାଇ ଦେଇ ତେଲ ମାଲିସ କରି ଗାଧୋଇ ଦେଉଥିଲା । ସବୁ ଚାକରମାନେ ସନ୍ଧ୍ୟା ପୂର୍ବରୁ ନିଜ ନିଜ ଗୃହକୁ ଫେରିଯିବାକୁ ଚାହିଁବାରୁ ରାତିର ଯାବତୀୟ କାର୍ଯ୍ୟ ପାଇଁ ଜମିଦାରଙ୍କ ପରିବାରର ଲୋକମାନେ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ଲାଗିଲେ । ଦିନବେଳେ ଗ୍ରାମର ବହୁ ଲୋକ ଟିକିରିସେନାଙ୍କ ପାଖକୁ ଆସି ଗୁଣିଆ ଡାକିବା, ଯଜ୍ଞ କରିବା, ଅଖଣ୍ଡ ନାମ ଜପର ଆୟୋଜନ କରିବା ଇତ୍ୟାଦି ନାନା ପରାମର୍ଶ ଦେଲେ । ଶେଷରେ ୧୯୪୧ ଏପ୍ରିଲରେ ଟିକିରି ସେନା କୋଭୁରଙ୍କୁ ସାକ୍ଷାତ କରି ସମସ୍ତ ବିଷୟ କହିବା ପରେ ସେହିଦିନ ତାଙ୍କୁ ବାଧ୍ୟ କରି ସାଥୀରେ ଧରି ନିଜ ଗ୍ରାମକୁ ଆସିଲେ ।

ରାତ୍ରିର ଆଗମନ ପୂର୍ବରୁ ଚାକରମାନେ ନିଜ ନିଜ ଗୃହକୁ ଫେରି ଯାଉଥିବାରୁ ସନ୍ଧ୍ୟା ଛ'ଟାରେ ରାତ୍ର ଭୋଜନ ସମାପ୍ତ ହେଲା । କୋଭୁର ଓ ଟିକିରି ସେନା ବଗିଚାର ଜହ୍ନ ଆଲୁଅରେ ବସି ସନ୍ଧ୍ୟା ସମୟରେ ନାନା ଆଳାପ ଆଲୋଚନା କଲେ । ପୂର୍ବପରି ଠିକ୍ ରାତି ଏଗାରଟାରେ ଅଗ୍ନିଶିଖା ଦେଖାଗଲା । ଅଗ୍ନିଶିଖା ବାୟୁରେ ଭାସି ଭାସି ପୂର୍ବ ଦିଗକୁ ଯିବା କୋଭୁର ଦେଖିଲେ । ପ୍ରାୟ ଶହେ ଗଜ ଯିବା ପରେ ପୁଣି ପଶ୍ଚିମକୁ ଯିବା ଆରମ୍ଭ କଲା । ଅଗ୍ନିଶିଖାଟି ପାଖାପାଖି ଏକ ଫୁଟ ଓସାର ଓ ଦୁଇ ଫୁଟ ଲମ୍ବା ହେବାପରି ଜଣାପଡୁଥିଲା । ଜମିଦାରଙ୍କ ପରିବାରର ଅନ୍ୟମାନଙ୍କ ସହ କୋଭୁର ଏହା ଦେଖିବା ପରେ ଟିକିରି ସେନା ଓ ତାଙ୍କ ପୁଅକୁ ଅଗ୍ନିଶିଖା ଆଡକୁ ତାଙ୍କ ସହିତ ଯିବାକୁ ଡାକିଲେ । କିନ୍ତୁ ସେମାନେ ମନା କରିବା ସହିତ ବରଂ ଘର ଭିତରକୁ ଚାଲିଯିବାକୁ ବସିଲେ । ଏହାପରେ କୋଭୁର ଗୋଟିଏ ଠେଙ୍ଗା ତାଙ୍କ ପାଖରୁ ସଂଗ୍ରହ କରି ଜୋରରେ ଅଗ୍ନିଶିଖା ଆଡକୁ ଚାଲିଲେ । ରାସ୍ତା ଉପରକୁ ଚାଲି ଆସିବାପରେ ସେ ଅଗ୍ନିଶିଖାଟିକୁ ଖୁବ୍ ସ୍ପଷ୍ଟ ଭାବରେ ଦେଖି ପାରିଲେ ।

କୋଭୁର ଯେତେବେଳେ ହାତରେ ଠେଙ୍ଗାଟି ଧରି ଅଗ୍ନିଶିଖା ଆଡ଼କୁ ଦୌଡ଼ିଲେ ସେ ଲକ୍ଷ୍ୟ କଲେ ଯେ ଅଗ୍ନିଶିଖାଟି ତାଙ୍କ ଆଡ଼କୁ ଆସିବା ପରିବର୍ତ୍ତେ ପଛକୁ ପଛ ହଟି ଯାଉଛି । ଫଳରେ ସେ ଦ୍ରୁତ ଗତିରେ ତାକୁ ଅନୁଧାବନ କଲେ । ବର୍ତ୍ତମାନ ତାଙ୍କ ଭିତରେ ଦୂରତା କମି କମି ଆସି ପ୍ରାୟ ପଚାଶ ଗଜ ଦୂରରେ ଅଗ୍ନିଶିଖାଟି ରହିଲା । ଏହାପରେ ଅଗ୍ନିଶିଖାଟି ହଠାତ୍ ମୁହୂର୍ତ୍ତକ ପାଇଁ ନିଷ୍ଚଳ ହୋଇଯାଇ ତାଙ୍କ ଆଡ଼କୁ ଆସିବାକୁ ଉଦ୍ୟମ କଲା । କୋଭୁର ଏହାପରେ ନିଷ୍ଚଳ ହୋଇ ଛିଡ଼ା ହୋଇ ଏହାକୁ ଲକ୍ଷ୍ୟ କଲେ । ନିଆଁ ହୁଳାକୁ ଧରିଥିବା ଦୁଇଟି ହାତକୁ ଓ ନିଆଁ ହୁଳାର ତଳେ ମଣିଷ ପାଦକୁ ଅସ୍ପଷ୍ଟ ଭାବରେ ସେ ଲକ୍ଷ୍ୟ କଲେ । ଅଗ୍ନିଶିଖାଟି ତାଙ୍କ ପାଖରୁ ପ୍ରାୟ ଦଶ ଗଜ ଦୂରରେ ରହିଥିବା ବେଳେ କୋଭୁର ବଡ ପାଟିରେ କହିଲେ, "ସେଇଠି ରୁହ, କୁହ ତୁମେ କିଏ ?" ତାଙ୍କ ଆଶ୍ଚର୍ଯ୍ୟକୁ ନିଆଁ ହୁଳାଟିକୁ ସେଠାରେ ଫିଙ୍ଗିଦେଇ ଅସ୍ପଷ୍ଟ ମୂର୍ତ୍ତିଟି ଦୌଡ଼ିବାକୁ ଲାଗିଲା । ରାସ୍ତା ଉପରୁ ନଡ଼ିଆ ବଗିଚା ମଧ୍ୟକୁ ଏହା ଦୌଡ଼ିଲା ଓ ସେ ମଧ୍ୟ ତା ପଛେ ପଛେ ଦୌଡ଼ିକରି ଗଲେ । ପ୍ରାୟ ପଚାଶ/ ଷାଠିଏ ଗଜ ଦୌଡ଼ିବା ପରେ ସେହି ମୂର୍ତ୍ତିଟି ନଡ଼ିଆ ଚାରା ଲଗାଯିବାକୁ ହୋଇଥିବା ଗୋଟିଏ ଖାତ ଭିତରେ ପଡ଼ିଗଲା ଓ କୋଭୁର ଦକ୍ଷତାର ସହ ତାକୁ କାବୁ କରିନେଲେ ।

ଏହାପରେ ସେହି ମୂର୍ତ୍ତିଟି ତାକୁ ନ ମାରିବା ପାଇଁ କୋଭୁରଙ୍କୁ ଅନୁରୋଧ କଲା । ନିଜର ପରିଚୟ ଦେବାକୁ ଯାଇ କହିଲା ଯେ ସେ ହେଉଛି ଜାମିସ ଯେ କି ତାଙ୍କୁ ଖାଦ୍ୟ ପରଶି ଥିଲା । ଏହାପରେ ତାକୁ କ୍ଷମା କରିବାକୁ ତାଙ୍କ ପାଦ ଧରି ବିନୀତ ହେଲା । ସେ କାହିଁକି ଏପରି କରୁଛି ବୋଲି ତାକୁ ପ୍ରଶ୍ନ କରିବାରୁ ସେ ତାଙ୍କୁ ତାର ଗୃହକୁ ଯିବାକୁ ଅନୁରୋଧ କରି ସେଠାରେ ପ୍ରକାଶ କରିବ ବୋଲି କହିଲା । ଜାମିସ ଓ କୋଭୁର ଧଇଁ ସଇଁ ହୋଇ ଯେଉଁ ସ୍ଥାନରେ ଅଗ୍ନିଶିଖାଟି ଲିଭି ପଡ଼ିଗଲା ସେଠାରେ ପହଞ୍ଚିଲେ । ଜାମିସ ତାର କୁଟୀରକୁ ଯିବାକୁ କୋଭୁରଙ୍କୁ ଅନୁରୋଧ କଲା । ଉଭୟ ସେହି କୁଡ଼ିଆ ଘରେ ପ୍ରବେଶ କଲାପରେ ସେହି ଏକ ବଖରା ବିଶିଷ୍ଟ ଘରଟିରେ ପଡ଼ିଥିବା ଏକ ପୁରୁଣା ଖଟ ଉପରେ କୋଭୁରଙ୍କୁ ବସିବାକୁ ଜାମିସ ଅନୁରୋଧ କଲା । ଏହାପରେ ସେ ଛଳ ଛଳ ଆଖିରେ କହିବାକୁ ଲାଗିଲା ଯେ ତାର ବାପା, ମା' ଜମିଦାରଙ୍କ ଘରେ ହଳିଆ ଭାବରେ କାମ କରୁଥିଲେ ଓ ତାର ପିଲାଟି ଦିନରୁ ସେ ବି ଜମିଦାରଙ୍କ ଘରେ କାମ କରି ଆସୁଛି । ସେ ଛ ମାସ ତଳେ ବିବାହ କରିଛି । ସେ ଓ

ତାର ସ୍ତ୍ରୀ ଉଭୟ ଜମିଦାରଙ୍କ ଘରେ କାମ କରନ୍ତି । ତାର ସ୍ତ୍ରୀ ସନ୍ଧ୍ୟାରେ ବସାକୁ ଘର କାମ ପାଇଁ ଫେରିଆସେ, କିନ୍ତୁ ସେ ବିଳମ୍ବରେ ଜମିଦାରଙ୍କ ଘରୁ ଫେରେ । ଜମିଦାରଙ୍କ ପୁଅ ଛୁଟିରେ ପୂର୍ବଥର ଘରକୁ ଆସିଥିବାବେଳେ ରାତିରେ ତାର ଘରକୁ ଆସି ତାର ନବବିବାହିତ ପତ୍ନୀକୁ ହଇରାଣ କରିଥିଲେ । ଯଦି ଏହି ଘଟଣାକୁ ସେ ବାହାରେ ପ୍ରକାଶ କରେ, ତେବେ ସେମାନଙ୍କ ଜୀବନ ବିପଦସଙ୍କୁଳ ହୋଇ ଉଠିବ । ଏଣୁ ଏଥର ଯେଉଁଦିନ ଜମିଦାରଙ୍କ ପୁଅ ଘରକୁ ଛୁଟିରେ ଆସିଲେ ସେହିଦିନ ରାତିରୁ ସେ ଏହି ଅଗ୍ନିଶିଖା ବାହାର କଲା । ଗୋଟିଏ ବଡ କଡେଇରେ କୁଣ୍ଡା ଓ ନଡିଆ କତାକୁ ନେଇ ସେ ନିଆଁ ସୃଷ୍ଟି କରି ତାହାକୁ ଧରି ରାସ୍ତାରେ କିଛି ସମୟ ଝୁଲାଇକରି ବୁଲିବାଦ୍ୱାରା ଜମିଦାରଙ୍କ ପୁଅ ତାର କୁଡିଆକୁ ଆସୁନାହାନ୍ତି ବୋଲି ସେ ବାଷ୍ପରୁଦ୍ଧ କଣ୍ଠରେ କହିଲା । ଏହି ରହସ୍ୟକୁ ଅନ୍ୟ କାହାକୁ ନ କହିବାକୁ ସେ କୋଭୁରଙ୍କୁ ଅନୁରୋଧ କରି ସେ ଏହା ଆଉ କରିବ ନାହିଁ ବୋଲି କହିଲା ।

ଏହାପରେ କୋଭୁର ଜମିଦାରଙ୍କ ଘରକୁ ଫେରିଆସିଲେ । ଜମିଦାର, ତାଙ୍କ ପତ୍ନୀ ଓ ପୁଅ ଉତ୍କଣ୍ଠାର ସହ କୋଭୁରଙ୍କୁ ଅପେକ୍ଷା କରିଥିଲେ । କୋଭୁର ଉତଫୁଲ୍ଲିତ ହୋଇ କହିଲେ ଯେ ସେ 'ଅଗ୍ନିଭୂତ'କୁ ଧରିଲେ ଓ ସେ ଏହା ଆଉ କରିବ ନାହିଁ ବୋଲି ପ୍ରତିଶ୍ରୁତି ଦେଇଛି । ତା ପରଦିନ ସେ କଲମ୍ବୋ ଫେରିଆସିଲେ ।

ଏକ ସପ୍ତାହ ପରେ ଟିକିରି ସେନା ଓ ତାଙ୍କ ପତ୍ନୀ ନାନା ଉପହାର ନେଇ କୋଭୁରଙ୍କୁ ସାକ୍ଷାତ କରିବାକୁ ଆସିଲେ । ତାଙ୍କ ଇଲାକାକୁ ବୁଲି ଆସିବାକୁ ଏକ ସ୍ଥାୟୀ ନିମନ୍ତ୍ରଣ ଜଣାଇ ବିଦାୟ ନେଲେ ।



# ଫଳିତ ଜ୍ୟୋତିଷ ଓ ସାମୁଦ୍ରିକ

## ଫଳିତ ଜ୍ୟୋତିଷ :

ବାତ୍ୟା, ଭୂକମ୍ପ, ନଦୀବଢ଼ି, ଉତ୍ତାଳ ସାମୁଦ୍ରିକ ଜୁଆର ଇତ୍ୟାଦି ପ୍ରାକୃତିକ ଦୁର୍ବିପାକ ଗୁଡିକୁ ସମୟେ ସମୟେ ଦେଖି ସେଗୁଡିକ ବାହ୍ୟ ଶକ୍ତିଦ୍ୱାରା ହେଉଥିବା ପ୍ରାଚୀନ କାଳରୁ ମଣିଷ କଳ୍ପନା କରିଛି । ଏହିସବୁର ପ୍ରତ୍ୟକ୍ଷରୁ ଦୃଷ୍ଟିର ଅନ୍ତରାଳରେ ରହିଥିବା କିଛି ଦୈବି ଶକ୍ତି ଉପରେ ଆଦିମ ମଣିଷର ବିଶ୍ୱାସ ସୃଷ୍ଟି ହୋଇଛି । ପ୍ରକୃତିର ରହସ୍ୟକୁ ବୁଝିବାର ଅସାମର୍ଥ୍ୟ ଭିତରୁ ନାନା ଅଲୌକିକ ବାଖ୍ୟା ଓ କଳ୍ପନା ଆଦିମ ମଣିଷର କୌତୂହଳ ଜନିତ ଜିଜ୍ଞାସାକୁ ଚରିତାର୍ଥ କରିଛି । ପ୍ରତୀୟମାନ ହେଉଥିବା ଗତିଶୀଳ ସୂର୍ଯ୍ୟର ସ୍ଥିତି ପାଗ ଓ ପରିବେଶକୁ ଏବଂ ଚନ୍ଦ୍ରର ଅବସ୍ଥାନ ସମୁଦ୍ରର ଜୁଆର ଓ ଭଟ୍ଟାକୁ ପ୍ରଭାବିତ କରୁଥିବାର ଦୃଶ୍ୟକୁ ଦେଖି ସେହି ସାଦୃଶ୍ୟରେ ପ୍ରକୃତିର ଘଟଣାବଳୀ ବାହ୍ୟ ଶକ୍ତିର ଅଧୀନରେ ପରିଚାଳିତ ହେଉଥିବା ନେଇ କଳ୍ପନା ମଣିଷର ମନକୁ ଆସିଛି ।

ସେହିପରି ମଣିଷର ଭାଗ୍ୟ ମଧ୍ୟ ଏକ ଦୈବୀ ଶକ୍ତିଦ୍ୱାରା ନିୟନ୍ତିତ ବୋଲି କଳ୍ପନା ଅତୀତରେ କରାଯାଇଛି । ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଇତ୍ୟାଦି ଖଗୋଳୀୟ ପିଣ୍ଡମାନଙ୍କର ଗତିବିଧିକୁ ଲକ୍ଷ୍ୟକରି ସେସବୁ କିପରି ମଣିଷ ଜୀବନର ଘଟଣା ପ୍ରବାହକୁ ନିୟନ୍ତ୍ରଣ କରୁଛି ଏହି ବିଶ୍ୱାସ ଆସିଛି । ସେତେବେଳେ ଧାରଣା ଥିଲାଯେ ପୃଥିବୀ ହେଉଛି ଗୋଟିଏ ସମତଳ ଭୂମି ଯାହା ଗୋଲାର୍ଦ୍ଧ ପରି ଆକାଶଦ୍ୱାରା ଆଚ୍ଛାଦିତ । ସେହି ଆକାଶ ଜନିତ ସ୍ୱର୍ଗ ନାନା ଦେବଦେବୀଙ୍କର ବାସସ୍ଥଳୀ । ସ୍ୱର୍ଗର ସେହି ଦେବତାମାନେ ପୃଥିବୀର ଘଟଣାବଳୀକୁ ନିୟନ୍ତ୍ରଣ କରୁଛନ୍ତି । ଏହି ବିଶ୍ୱାସ ପୃଷ୍ଠଭୂମିରେ ଫଳିତ ଜ୍ୟୋତିଷ ସୃଷ୍ଟି ହୋଇଛି । ବହୁ ପ୍ରାଚୀନ କାଳରୁ ଓ ବିଭିନ୍ନ ପୁରାତନ ସଭ୍ୟତାରେ ଫଳିତ ଜ୍ୟୋତିଷର ଉଦ୍‌ଭବ ହୋଇଛି । ଆଧୁନିକ ଜ୍ୟୋତିର୍ବିଜ୍ଞାନର ବହୁ ପୂର୍ବରୁ ଫଳିତ ଜ୍ୟୋତିଷର ସୃଷ୍ଟି । ଜଣେ ବ୍ୟକ୍ତିର ଜନ୍ମ

ସମୟରେ ସୂର୍ଯ୍ୟ, ଚନ୍ଦ୍ର ଓ ଅନ୍ୟାନ୍ୟ ଗ୍ରହମାନଙ୍କର ଅବସ୍ଥିତି ତାର ଜୀବନର ମୁଖ୍ୟ ଘଟଣା ପ୍ରବାହକୁ ଯେ ନିର୍ଦ୍ଦିଷ୍ଟ କରିଥାଏ ଏହି ବିଶ୍ୱାସର ଆଧାର ଉପରେ ଫଳିତ ଜ୍ୟୋତିଷ ବିକାଶ ଲାଭକରିଛି । ଏତଦ୍‌ବ୍ୟତୀତ ପ୍ରାଚୀନ କାଳରେ ରାଜ୍ୟ, ରାଜା ଓ ଶାସକବର୍ଗଙ୍କର ଜୀବନକୁ ପ୍ରଭାବିତ କଲାପରି କୌଣସି ମହତ୍ତ୍ୱପୂର୍ଣ୍ଣ ଘଟଣା ଓ ଏପରିକି ଅଘଟଣ ସମୟରେ ସୂର୍ଯ୍ୟ, ଚନ୍ଦ୍ର, ଦୃଶ୍ୟମାନ ଗ୍ରହ ଓ ନକ୍ଷତ୍ରପୁଞ୍ଜଙ୍କର ଅବସ୍ଥିତିକୁ ବୁଦ୍ଧିମାନ ଲୋକମାନେ ଲକ୍ଷ୍ୟ କରିଛନ୍ତି । ଖଗୋଳୀୟ ସ୍ଥିତିରେ ଅନୁରୂପ ଅବସ୍ଥା ସମୟରେ ପୂର୍ବ ଅନୁଭୂତିକୁ ଆଧାର କରି ରାଜ୍ୟ ବା ରାଜାଙ୍କର ଘଟଣା ନେଇ ଭବିଷ୍ୟବାଣୀ କରିଛନ୍ତି । ରାଜ୍ୟ ପରାଜୟ, ଶାସକବର୍ଗଙ୍କର ମୃତ୍ୟୁ, ପ୍ରାକୃତିକ ଦୁର୍ବିପାକ ପରି ଅଘଟଣ ସମୟରେ ରାଶିଚକ୍ରୀୟ ଅବସ୍ଥାନ, ଧୂମକେତୁ ବା ସୂର୍ଯ୍ୟପରାଗ ପରି କୌଣସି ଖଗୋଳୀୟ ଅବସ୍ଥା ଦେଖି ସେସବୁକୁ ଅଶୁଭର ସଙ୍କେତ ଭାବରେ ଗ୍ରହଣ କରାଯାଇଛି । ମୋଟ ଉପରେ କହିବାକୁ ଗଲେ ସୂର୍ଯ୍ୟ, ଚନ୍ଦ୍ର ଓ ଗ୍ରହମାନଙ୍କର ନିର୍ଦ୍ଦିଷ୍ଟ ସ୍ଥିତିରେ ପ୍ରଥମେ ଯେଉଁ ଘଟଣା ଘଟିଛି, ସେମାନଙ୍କର ସେହି ପ୍ରକାର ସ୍ଥିତି ଦେଖି ପୂର୍ବ ଘଟଣାପରି କୌଣସି ଶୁଭ ଅଶୁଭ ଘଟଣାକୁ କଳ୍ପନା କରାଯାଇଛି । ପ୍ରାଥମିକ ଅବସ୍ଥାରେ ରାଜା ବା ଶାସକଙ୍କର ଜୀବନର ଘଟଣା ସମ୍ପର୍କରେ ଫଳିତ ଜ୍ୟୋତିଷ ସଙ୍କ୍ରାନ୍ତୀୟ ଗଣନା କରାଯାଉଥିଲା, କାରଣ ତତ୍କାଳୀନ ସମାଜରେ ରାଜାଙ୍କର ଜୀବନ ପ୍ରବାହ ଉପରେ ରାଜ୍ୟର ଭଲ ମନ୍ଦ ନିର୍ଭରଶୀଳ ବୋଲି ବିଶ୍ୱାସ ବଳବତ୍ତର ଥିଲା ।

ଭାରତ, ଚୀନ, ବେବିଲୋନ ଓ ମେସୋପଟାମିଆ ଇତ୍ୟାଦି ପ୍ରାଚୀନ ସଭ୍ୟତା ଗୁଡିକରେ ଫଳିତ ଜ୍ୟୋତିଷ ବିଷୟକ ଧାରଣା ସୃଷ୍ଟି ହୋଇଥିଲା ଓ ପରେ ପରେ ଏହା ଅନ୍ୟ ଭୂଖଣ୍ଡକୁ ବିସ୍ତାର ଲାଭ କଲା । ଖ୍ରୀଷ୍ଟାବ୍ଦ ପୂର୍ବରୁ ଫଳିତ ଜ୍ୟୋତିଷ ଜନିତ ଗଣନା ଓ ପଞ୍ଜିକା ପ୍ରସ୍ତୁତି ଏକ ସମ୍ମାନଜନକ ବୃତ୍ତି ଭାବରେ ପରିଗଣିତ ହେଉଥିଲା ଓ ପୂଜକ ଶ୍ରେଣୀର ଆଧିପତ୍ୟ ଭିତରେ ଏହା ଥିଲା । କନଫୁସିୟସ, ମହମ୍ମଦ ଓ ଯୀଶୁଖ୍ରୀଷ୍ଟଙ୍କର ବାଣୀର ପ୍ରଚାରପରେ ଚୀନ, ଆରବ ଭୂଖଣ୍ଡ ଓ ୟୁରୋପୀୟ ଦେଶମାନଙ୍କରେ ଧର୍ମଠାରୁ ଫଳିତ ଜ୍ୟୋତିଷ ପୃଥକ ହୋଇଥିଲେ ବି ଭାରତବର୍ଷରେ ଧର୍ମଧାରଣା ଓ ଫଳିତ ଜ୍ୟୋତିଷ ମଧ୍ୟରେ ନିବିଡ ସମ୍ବନ୍ଧ ରହିଥିଲା । ଜ୍ୟୋତିଷ ଗଣନାନୁଯାୟୀ ଶୁଭଦିନ ମାନଙ୍କରେ ବିଭିନ୍ନ ହିନ୍ଦୁ ପର୍ବ ପର୍ବାଣୀ ପାଳିତ ହେବା ଦେଖାଯାଏ ।

ଅତୀତରେ ରସାୟନ ବିଜ୍ଞାନ ପୂର୍ବରୁ କିମିଆ ବିଦ୍ୟା ଓ ଚିକିତ୍ସା ବିଜ୍ଞାନ ପୂର୍ବରୁ ଗୁଣି ଟୁଣିରେ ବିଶ୍ୱାସ ଥିଲା । କିନ୍ତୁ ରସାୟନ ବିଦ୍ୟା ଓ ଚିକିତ୍ସା ବିଜ୍ଞାନର ବିକାଶ ପରେ କିମିଆ ଓ ଗୁଣି ଟୁଣି ଭିତ୍ତିହୀନ ବୋଲି ଜଣାପଡିଲା । ସେହିପରି ଆଧୁନିକ ଜ୍ୟୋତିର୍ବିଜ୍ଞାନ ଫଳିତ ଜ୍ୟୋତିଷ ପୃଷ୍ଠଭୂମିରେ ବିକାଶ ଲାଭ କରିଥିଲେ ବି ଜ୍ୟୋତିର୍ବିଜ୍ଞାନର ଅଭ୍ୟୁଦୟ ଫଳିତ ଜ୍ୟୋତିଷକୁ ଅବୈଜ୍ଞାନିକ ପ୍ରତିପାଦନ କଲା । ଖ୍ରୀଷ୍ଟଜନ୍ମର ପୂର୍ବରୁ ଜ୍ୟୋତିର୍ବିଜ୍ଞାନୀମାନେ ପଞ୍ଜିକା ତିଆରି କରିବାର ସାମର୍ଥ୍ୟ ଲାଭ କରିଥିଲେ । ଦୂରବୀକ୍ଷଣ ଯନ୍ତ୍ର ଉଦ୍ଭାବନର ବହୁ ପୂର୍ବରୁ ଖାଲି ଆଖିରେ ସୂର୍ଯ୍ୟ, ଚନ୍ଦ୍ର, ବିଭିନ୍ନ ଗ୍ରହ ଓ ନକ୍ଷତ୍ର ମାନଙ୍କର ସ୍ଥିତିକୁ ପର୍ଯ୍ୟବେକ୍ଷଣ କରି ସେମାନେ ଏହା କରୁଥିଲେ । ଗ୍ରହମାନଙ୍କର ଅବସ୍ଥିତି ବା ଖଗୋଳୀୟ ଘଟଣା ଅଠର ବର୍ଷ ଏଗାର ଓ ତେର ଦିନରେ ପୁନରାବୃତ୍ତି ହେବା ସେମାନେ ଜାଣି ପାରୁଥିଲେ । ବେବିଲୋନର ଜ୍ୟୋତିଷୀ-ଜ୍ୟୋତିର୍ବିଦ୍‌ମାନେ ଏହାକୁ ସାରୋସ ଚକ୍ର (Saros Cycle) ବୋଲି ଆଖ୍ୟା ଦେଇଥିଲେ । ଧୂମକେତୁର କେବେ ଦେଖା ହେବ ସେମାନେ ସେ ବିଷୟରେ କିଛି ସ୍ପଷ୍ଟ ଭାବରେ କହିପାରୁ ନଥିଲେ, ଯଦିବା ଧୂମକେତୁ ଦେଖାଦେବାକୁ ସେମାନେ ବିପଦର ସଙ୍କେତ ଭାବରେ ବହୁ ଗୁରୁତ୍ୱ ଦେଉଥିଲେ ।

ଷୋଡଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ଅନେକ ଜ୍ୟୋତିର୍ବିଜ୍ଞାନୀ ଫଳିତ ଜ୍ୟୋତିଷରେ ବିଶ୍ୱାସ ରଖୁଥିଲେ । ଏହି ସମୟ ପର୍ଯ୍ୟନ୍ତ ଟଲେମିଙ୍କ ଭାବନା "ପୃଥିବୀ ହେଉଛି ଗ୍ରହ ମଣ୍ଡଳର କେନ୍ଦ୍ରବିନ୍ଦୁ" ବୋଲି ବିଶ୍ୱାସ ରହିବା ଦେଖାଯାଏ । କିନ୍ତୁ କୋପରନିକସ ଷୋଡଶ ଶତାବ୍ଦୀରେ ଏହି ମତ ପରିବର୍ତ୍ତନ କରି ସୌର ମଣ୍ଡଳର କେନ୍ଦ୍ର ସୂର୍ଯ୍ୟ ବୋଲି ପ୍ରତିପାଦନ କଲେ । ଏହା ପରେ ପରେ ନିଉଟନଙ୍କର ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର, ଗାଲିଲିଓଙ୍କର ଦୂରବୀକ୍ଷଣ ଯନ୍ତ୍ର ଉଦ୍ଭାବନ ଓ କେପଲରଙ୍କର ଜ୍ୟୋତିର୍ବିଜ୍ଞାନକୁ ମୌଳିକ ଅବଦାନ ଫଳିତ ଜ୍ୟୋତିଷର ଭିତ୍ତିକୁ ଭାଙ୍ଗିଦେଲା । କାରଣ ଫଳିତ ଜ୍ୟୋତିଷ ପୃଥିବୀ ଓ ଗ୍ରହମାନଙ୍କର ଯେଉଁ ଧାରଣା ଉପରେ ପର୍ଯ୍ୟବସିତ ଥିଲା ଜ୍ୟୋତିର୍ବିଜ୍ଞାନ ସେସବୁକୁ ଭ୍ରମାତ୍ମକ ବୋଲି ଦର୍ଶାଇଲା । ଜ୍ୟୋତିର୍ବିଜ୍ଞାନର ନୂତନ ଆବିଷ୍କାର ସତ୍ତ୍ୱେ ଫଳିତ ଜ୍ୟୋତିଷ ତଥାପି ନିଜର ଭ୍ରମାତ୍ମକ ପ୍ରତ୍ୟୟ ଉପରେ ଆଧାରିତ ହୋଇ ରହିଲା । ପୃଥିବୀ ହେଉଛି ସୌର ମଣ୍ଡଳର କେନ୍ଦ୍ରବିନ୍ଦୁ, ସୂର୍ଯ୍ୟ ଓ ଚନ୍ଦ୍ର ହେଉଛନ୍ତି ଗ୍ରହ ଇତ୍ୟାଦି ଧାରଣାକୁ ନେଇ ଫଳିତ ଜ୍ୟୋତିଷ

ତିଷ୍ଠି ରହିଲା । ନକ୍ଷତ୍ର ପୁଞ୍ଜକୁ ରାଶିଚକ୍ରର ଯେପରି ବାରଟି ଘରରେ ବିଭାଜନ କରାଯାଏ ତାହା ଯେ କପୋଳକଳ୍ପିତ ଏହା ଜଣା ପଡିଲା । ସେହିପରି ଗ୍ରହମାନେ ଏକତ୍ର ଥିବା ପ୍ରତୀୟମାନ ହେଲେବି ସେମାନେ ପରସ୍ପରଠାରୁ କୋଟି କୋଟି କିଲୋମିଟର ଦୂରରେ ଅବସ୍ଥାନ କରିଥାନ୍ତି । ରାତିର ଆକାଶରେ ଏକ ଗ୍ରହ ଉଦୟ ହୁଏ ନାହିଁ, ବରଂ ପୃଥିବୀ ଗ୍ରହଆଡକୁ ଢଳିଥାଏ । ସୁତରାଂ ଫଳିତ ଜ୍ୟୋତିଷର ବହୁ ଧାରଣା ଭୁଲ ବୋଲି ଜ୍ୟୋତିର୍ବିଜ୍ଞାନରେ ଜଣାପାଡିଲା ।

ପୁନଶ୍ଚ ଜ୍ୟୋତିର୍ବିଜ୍ଞାନରେ ଜଣା ପଡିଥିବା ୟୁରେନ୍‌ସ, ନେପଚ୍ୟୁନ ଓ ପ୍ଲୁଟୋ ଗ୍ରହମାନଙ୍କୁ ଜ୍ୟୋତିଷ ଗଣନାରେ ବିଚାରକୁ ନିଆଯାଏ ନାହିଁ । ସେହିପରି ଫଳିତ ଜ୍ୟୋତିଷରେ ରାହୁ ଓ କେତୁ ଯାହାଙ୍କୁ ଗ୍ରହ ଭାବରେ ନିଆଯାଏ ସେମାନଙ୍କର ଅବସ୍ଥିତି ହିଁ ନାହିଁ । ରାହୁ ଓ କେତୁ ସଂକ୍ରାନ୍ତରେ ଧାରଣା ଥିଲା ଯେ ସେମାନେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ନିର୍ଦ୍ଦିଷ୍ଟ ଦିନ ବ୍ୟବଧାନରେ ଗିଳିଥାନ୍ତି ଓ ବାହାର କରିଥାନ୍ତି । ଫଳରେ ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ପରି ଖଗୋଳୀୟ ଘଟଣା ସୃଷ୍ଟି ହୋଇଥାଏ । ପରେ ଯେତେବେଳେ ଏହି ଧାରଣାକୁ ବ୍ୟାଖ୍ୟା କରିବା ଅସମ୍ଭବ ମନେହେଲା ସେତେବେଳେ ଫଳିତ ଜ୍ୟୋତିଷରେ ରାହୁ ଓ କେତୁକୁ କଳା ଓ ଅଦୃଶ୍ୟ ଗ୍ରହ ଭାବରେ ଗ୍ରହଣ କରାଯାଇ ଜୀବନ ଉପରେ ସେମାନଙ୍କର ପ୍ରଭାବ ଥିବା କଥା କୁହାଗଲା । କିନ୍ତୁ ରାହୁ ଓ କେତୁର ବାସ୍ତବ ସ୍ଥିତି ନଥିବାରୁ ମଣିଷର ଭାଗ୍ୟ ଉପରେ ସେମାନଙ୍କର ପ୍ରଭାବ ଥିବା କହିବା ଅବାନ୍ତର ମନେହୁଏ ।

ଏହାଛଡା ପ୍ରାଚୀନ ଫଳିତ ଜ୍ୟୋତିଷ ଶାସ୍ତ୍ରକାରମାନେ ସୂର୍ଯ୍ୟ ଯେ ଏକ ଗ୍ରହ ନୁହେଁ, ଏକ ନକ୍ଷତ୍ର ଏହା ଜାଣିନଥିଲେ । ସେହିପରି ଚନ୍ଦ୍ର ପୃଥିବୀର ଏକ ଉପଗ୍ରହ ତାହା ସେତେବେଳେ ଜଣା ନଥିଲା । ଗୋଟିଏ ଶିଶୁର ଜନ୍ମ ସମୟରେ ନକ୍ଷତ୍ର ଓ ଗ୍ରହମାନଙ୍କର ଆକାଶରେ ତାରାପୁଞ୍ଜରେ ଅବସ୍ଥିତିକୁ ଆଧାରକରି ରାଶି ଓ ଜାତକ ନିର୍ଣ୍ଣୟ କରାଯାଇଥାଏ । କିନ୍ତୁ ସେହି ନକ୍ଷତ୍ରମାନଙ୍କୁ ଆମେ ପୃଥିବୀରେ ଯେଉଁ ସ୍ଥାନରେ ଥିବା ଦେଖୁ ସେଗୁଡିକର ସେହି ସ୍ଥିତି ଯଥାର୍ଥ ନୁହେଁ । କାରଣ ତାରା ପୁଞ୍ଜରେ ଦେଖାଯାଉଥିବା ଗ୍ରହ, ନକ୍ଷତ୍ରମାନେ ପୃଥିବୀଠାରୁ କୋଟି କୋଟି ଆଲୋକ ବର୍ଷ ଦୂରରେ ଅବସ୍ଥିତ ଓ ସେମାନଙ୍କର ଆଲୋକ ପୃଥିବୀକୁ ଆସିବା ବେଳକୁ ଲକ୍ଷ ଲକ୍ଷ ବର୍ଷ ନେଇଥାଏ । ଆଜି ଆମେ ଦେଖୁଥିବା ନକ୍ଷତ୍ର ଗୁଡିକ କୋଟି କୋଟି ବର୍ଷ ତଳେ

ଧ୍ୱଂସ ପାଇ ଯାଇଥିବା ସମ୍ଭବ । ଆମେ ପୃଥିବୀରେ ଗ୍ରହ, ନକ୍ଷତ୍ରମାନଙ୍କୁ ଯେଉଁ ସ୍ଥାନରେ ଦେଖୁ ସେମାନେ ଯେ ଯଥାର୍ଥରେ ସେହି ସ୍ଥାନରେ ରହିଛନ୍ତି ଏହା ଅସମ୍ଭବ ମନେହୁଏ । ଏହିସବୁ ଫଳିତ ଜ୍ୟୋତିଷରେ ଅଜ୍ଞାତ ଥିବାରୁ ଏହାର ବୈଜ୍ଞାନିକ ଭିତ୍ତି ନଥିବା କୁହାଯାଇପାରେ ।

ପୁନଶ୍ଚ ଗୋଟିଏ ଶିଶୁର ଭାଗ୍ୟ ତାର ଜନ୍ମ ସମୟ ଉପରେ ନିର୍ଭର କରେ ବୋଲି କୁହାଯାଏ । କିନ୍ତୁ ଗୋଟିଏ ଶିଶୁର ଜନ୍ମ ପୂର୍ବରୁ ବା ପରେ କରାଯିବା ସମ୍ଭବ ମନେହୁଏ । ଆଧୁନିକ ଚିକିତ୍ସା ବିଜ୍ଞାନର ସାହାଯ୍ୟରେ ଅସ୍ତ୍ରୋପଚାର ଫଳରେ ଜନ୍ମ ସମୟକୁ ପରିବର୍ତ୍ତନ କରାଯାଇପାରେ । ଗ୍ରହମାନେ କେବେ ବି ପରସ୍ପର ସହିତ ସମ୍ମିଳିତ ହୁଅନ୍ତି ନାହିଁ । ସେମାନେ ପରସ୍ପରଠାରୁ କୋଟି କୋଟି ମାଇଲ ଦୂରରେ ଅବସ୍ଥାନ କରନ୍ତି, ଯଦିବା ସେମାନେ ନିକଟରେ ଥିବା ଜଣାଯା'ନ୍ତି । ସୂର୍ଯ୍ୟ ବା ଚନ୍ଦ୍ରର ଆଲୋକ, ମାଧ୍ୟାକର୍ଷଣର ପ୍ରଭାବ ଛଡା ଗ୍ରହମାନେ ପୃଥିବୀ ଉପରେ କୌଣସି ପ୍ରଭାବ ସୃଷ୍ଟି କରନ୍ତି ନାହିଁ ।

ସୁତରାଂ ଫଳିତ ଜ୍ୟୋତିଷର ମୂଳ ଆଧାର ଗୁଡିକ ଯେ ଭ୍ରମାତ୍ମକ ଏହା ନିଃସନ୍ଦେହରେ କୁହାଯାଇପରେ । କେବଳ କେତେକ ଅନ୍ଦାଜ ଓ ଅନୁମାନ ଉପରେ ଏହା ନିର୍ଭର କରେ । ଏତଦ୍‌ବ୍ୟତୀତ ବୈଜ୍ଞାନିକ ଆରୋହାନୁମାନ କ୍ଷେତ୍ରରେ ଯେପରି ପ୍ରକୃତିର ଏକରୂପତା ଓ କାର୍ଯ୍ୟକାରଣ ଭିତ୍ତି ଥାଏ, ଫଳିତ ଜ୍ୟୋତିଷର ଅନୁମାନ ସେପରି କୌଣସି ବିଜ୍ଞାନ ସମ୍ମତ ଆଧାର ଉପରେ ପର୍ଯ୍ୟବସିତ ନୁହେଁ । ବିଜ୍ଞାନ ଯେପରି ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଦ୍ୱାରା ଏକ ସୁନିର୍ଦ୍ଦିଷ୍ଟ ପ୍ରଣାଳୀ ଅବଲମ୍ବନରେ ତଥ୍ୟ ସମର୍ଥିତ ଜ୍ଞାନ ଦେଇଥାଏ, ଫଳିତ ଜ୍ୟୋତିଷ କ୍ଷେତ୍ରରେ ତାହା ସମ୍ଭବପର ନୁହେଁ । ପୁନଶ୍ଚ ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ଯେପରି ପରସ୍ପର ସଂପୃକ୍ତ କ୍ରମ ଥାଏ, ଯାହା ତଥ୍ୟଗୁଡିକର ସଂଯୋଗଦ୍ୱାରା ନିର୍ଦ୍ଧାରିତ ହୋଇଥାଏ, ଫଳିତ ଜ୍ୟୋତିଷ କ୍ଷେତ୍ରରେ ସେପରି କ୍ରମାନୁବଦ୍ଧ ତଥ୍ୟାବଳୀ ବା ତତ୍ତ୍ୱ ନ ଥାଏ । ଏହା ମୁଖ୍ୟତଃ ଅନ୍ଦାଜ ଓ ଅନୁମାନ ଉପରେ ନିର୍ଭର କରୁଥିବାରୁ ସ୍ଥଳ ବିଶେଷରେ କେତେକ ଅନୁମାନ ସତ୍ୟ ବା ମିଥ୍ୟା ହୋଇପାରେ । ମୋଟ ଉପରେ ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ଆରୋହାନୁମାନ ଯେପରି ପ୍ରଣାଳୀବଦ୍ଧ ପଦ୍ଧତି ଉପରେ ନିର୍ଭର କରେ, ଫଳିତ ଜ୍ୟୋତିଷ କ୍ଷେତ୍ରରେ ତାହା ହୁଏନାହିଁ ।

କୋଭୁର ତାଙ୍କ ଜୀବନର ଏକ ଉଲ୍ଲେଖନୀୟ ଘଟଣା ଅବତାରଣା କରିଛନ୍ତି । ସେ ଫଳିତ ଜ୍ୟୋତିଷ ଅଧ୍ୟୟନ ଉପରେ ଜୀବନର କେତୋଟି ବର୍ଷ ଅତିବାହିତ କରିଥିଲେ । ତାଙ୍କର ପୁଅ ଏରିସ୍ ୧୯୨୭ରେ ଜନ୍ମ ହେବା ପରେ ସେ ନିଜର ଅଧ୍ୟୟନରୁ ପୁଅର ଜାତକ ପ୍ରସ୍ତୁତ କରିଥିଲେ । ଏହା ପଶ୍ଚାତରେ ଫଳିତ ଜ୍ୟୋତିଷ ଜନିତ ଘଟଣା କେତେ ଦୂର ସତ୍ୟ ତାହା ପରୀକ୍ଷା କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ତାଙ୍କର ଗଣନା ଅନୁଯାୟୀ ଏରିସଙ୍କର କୌଣସି ଭାଇ, ଭଉଣୀ ନ ହେବାର ସୂଚନା ଥିଲା । କୋଭୁରଙ୍କର ଏରିସଙ୍କୁ ଛାଡି ଅନ୍ୟ ସନ୍ତାନ ହୋଇନଥିଲା । ଏହି ଗୁରୁତ୍ୱପୂର୍ଣ୍ଣ ଗଣନା ସତ୍ୟ ହୋଇଥିଲେ ମଧ୍ୟ ଜାତକରେ ଥିବା ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଗଣନା ଗୁଡିକ ସତ୍ୟ ହୋଇନଥିଲା । ସାଧାରଣ ମନସ୍ତତ୍ତ୍ୱ ଭିତରେ ସକାରାତ୍ମକ ଘଟଣାକୁ ଗୁରୁତ୍ୱ ଦିଆଯାଇ ନକାରାତ୍ମକ ଘଟଣା ଗୁଡିକୁ ଏଡାଇ ଦିଆଯାଇଥାଏ । କିନ୍ତୁ ଗଣନାର ସକାରାତ୍ମକ ଦିଗକୁ ଗୁରୁତ୍ୱ ଦେଇ ଏହାକୁ ବୈଜ୍ଞାନିକ କହିବା ଯଥାର୍ଥ ନୁହେଁ । କୋଭୁର ବିଭିନ୍ନ ଦେଶର ବିଶିଷ୍ଟ ଜ୍ୟୋତିଷୀ ମାନଙ୍କର ଗଣନା ଓ ଭବିଷ୍ୟବାଣୀକୁ ସଂଗ୍ରହ କରିଥିଲେ ଓ ସେଗୁଡିକର ତୁଳନାତ୍ମକ ଅଧ୍ୟୟନରୁ ଏହି ସିଦ୍ଧାନ୍ତକୁ ଆସିଥିଲେ ଯେ ସେଗୁଡିକ କେବଳ କେତେକ ଅନ୍ଦାଜ ଉପରେ ପର୍ଯ୍ୟବସିତ । ସାମଗ୍ରିକ ଭାବରେ ଓ ପ୍ରଣାଳୀବଦ୍ଧ ପଦ୍ଧତିରେ ସେଗୁଡିକ ବୈଜ୍ଞାନିକ ଜ୍ଞାନ ବୋଲି କୁହାଯାଇ ପାରିବ ନାହିଁ ।

ସମୟରେ ଫଳିତ ଜ୍ୟୋତିଷ ଗଣକମାନେ ଏହାର ବୈଧତା ଦର୍ଶାଇବାକୁ ଯାଇ ଯୁକ୍ତି କରିଥାନ୍ତି ଯେ ପୃଥିବୀର କେତେକ ବିଶିଷ୍ଟ ଜ୍ୟୋତିର୍ବିଦ ବୈଜ୍ଞାନିକ ମଧ୍ୟ ଫଳିତ ଜ୍ୟୋତିଷକୁ ଗ୍ରହଣ କରିଛନ୍ତି । ଏହି ପରିପ୍ରେକ୍ଷୀରେ କେପଲର, ଗାଲିଲିଓ ଓ ନିଉଟନଙ୍କ କଥା ଉଲ୍ଲେଖ କରାଯାଇଥାଏ । କୋଭୁରଙ୍କ ମତରେ କେପଲର ଯଦି ଫଳିତ ଜ୍ୟୋତିଷ ଉପରେ ନିଜର ଦୃଷ୍ଟି ଆବଦ୍ଧ କରିଥାନ୍ତେ ତେବେ ତାଙ୍କୁ ଅତ୍ୟନ୍ତ ଦରିଦ୍ର ହୋଇ ମୃତ୍ୟୁବରଣ କରିବାକୁ ପଡିନଥାନ୍ତା । ସେହିପରି ଗାଲିଲିଓଙ୍କ ଜୀବନୀରୁ ଉଦ୍ଧାର କରି କହିଛନ୍ତି ଯେ ସେ ଟୁସିକାନିରେ ଡିଉକ୍ ଫର୍ଡିନାଣ୍ଡଙ୍କର ଜାତକ ଗଣନା କରି ତାଙ୍କର ଦୀର୍ଘ ଜୀବନ ବିଷୟରେ ଭବିଷ୍ୟବାଣୀ କରିଥିଲେ ମଧ୍ୟ ଖୁବ୍ ଅଳ୍ପ ଦିନରେ ଫର୍ଡିନାଣ୍ଡ ମୃତ୍ୟୁବରଣ କରିଥିଲେ । ନିଉଟନଙ୍କ ବିଭିନ୍ନ ଲେଖା ଓ ପତ୍ରରୁ ଫଳିତ ଜ୍ୟୋତିଷରେ ତାଙ୍କର ଆସ୍ଥା ଥିବା କେଉଁଠି ହେଲେ ସୂଚନା ମିଳେ ନାହିଁ । ଅପର ପକ୍ଷରେ ଫ୍ରାନ୍ସର ବିଶିଷ୍ଟ ଚିନ୍ତାନାୟକ ଭୋଲଟାୟାରଙ୍କର ଜାତକ ଗଣନା

କରି ସେ ୩୨ବର୍ଷରେ ମୃତ୍ୟୁବରଣ କରିବେ ବୋଲି ଦୁଇଜଣ ଜ୍ୟୋତିଷ ଭବିଷ୍ୟବାଣୀ କରିଥିଲେ ବି ୮୪ ବର୍ଷ ବଞ୍ଚି ଏକ ପରିଣତ ବୟସରେ ସେ ମୃତ୍ୟୁ ବରଣ କରିଥିଲେ । ଜୋହାନ୍‌ସ କେପଲରଙ୍କର- ଯାହାଙ୍କୁ ଜ୍ୟୋତିର୍ବିଜ୍ଞାନର ପ୍ରତିଷ୍ଠାତା ଭାବରେ ନିଆଯାଏ- ଗ୍ରହମାନଙ୍କର ଗତିଶୀଳତା ଜନିତ ନିୟମକୁ ଆବିଷ୍କାର ଓ ନିଉଟନଙ୍କର ଏ ନେଇ ମୌଳିକ ବ୍ୟାଖ୍ୟା ପରେ କୌଣସି ଜ୍ୟୋତିର୍ବିଦ ଫଳିତ ଜ୍ୟୋତିଷର ବୈଧତାକୁ ଗ୍ରହଣ କରି ନାହାନ୍ତି । ବରଂ ବିଶିଷ୍ଟ ଜ୍ୟୋତିର୍ବିଜ୍ଞାନୀ ଫ୍ଲେମେରିଆନଙ୍କ ମତରେ ଗ୍ରହ ଓ ନକ୍ଷତ୍ରମାନଙ୍କର ଆମର ଭାଗ୍ୟ ଉପରେ ଯେ କିଛି ପ୍ରଭାବ ବା ନିୟନ୍ତ୍ରଣ ରହିଛି କୌଣସି ପର୍ଯ୍ୟବେକ୍ଷଣ ବା ପରୀକ୍ଷଣଦ୍ୱାରା ତାହା ପ୍ରମାଣ କରାଯାଇପାରିବ ନାହିଁ ।

ସେହିପରି ଫଳିତ ଜ୍ୟୋତିଷର ପ୍ରାଚୀନତାକୁ ଆଧାର କରି ଏହାର ବୈଧତାକୁ କେହି କେହି ସ୍ୱୀକାର କରିଥାନ୍ତି । ଏପରିକି ବିଭିନ୍ନ ସମାଜରେ ଓ ବହୁ ବିଶିଷ୍ଟ ବ୍ୟକ୍ତି ଏହାକୁ ସ୍ୱୀକାର କରୁଥିବାରୁ ଏହାର ଯଥାର୍ଥତା ନେଇ ଏକ ମାନସିକତା ସମାଜରେ ରହିବା ଦେଖାଯାଏ । କିନ୍ତୁ କୌଣସି ସିଦ୍ଧାନ୍ତର ବୈଧତା ତାର ପ୍ରମାଣସିଦ୍ଧ ବା ଯୁକ୍ତିନିଷ୍ଠ ଆଧାର ଉପରେ ନିର୍ଭର କରିଥାଏ । ତାର ପ୍ରାଚୀନତା ତାର ବୈଧତାକୁ ପ୍ରତିଷ୍ଠା କରେ ନାହିଁ । ସମାଜରେ ପ୍ରତିଷ୍ଠା ଲାଭ କରିଥିବା ବ୍ୟକ୍ତିମାନେ ଫଳିତ ଜ୍ୟୋତିଷକୁ ଗ୍ରହଣ କରୁଛନ୍ତି ବୋଲି ଫଳିତ ଜ୍ୟୋତିଷର ଭାଗ୍ୟ ସମ୍ବନ୍ଧୀୟ ଗଣନା ବୈଧ, ଏପରି ଭାବିବାଦ୍ୱାରା ତର୍କ ଶାସ୍ତ୍ର ଦୃଷ୍ଟିରୁ 'ଆପ୍ତଦ୍ୱାହି ତର୍କ ଦୋଷ' ସୃଷ୍ଟି ହୋଇଥାଏ ।

ଅବଶ୍ୟ ଏଠାରେ ପ୍ରଶ୍ନ ଉଠିପାରେ ଯଦି ଫଳିତ ଜ୍ୟୋତିଷର କୌଣସି ବୈଜ୍ଞାନିକ ଭିତ୍ତି ବା ବୈଧତା ନାହିଁ, ତେବେ କାହିଁକି ଏହା ପ୍ରସାର ଲାଭ କରୁଛି ଓ ଅଗଣିତ ବ୍ୟକ୍ତି ଏଥିରେ ବିଶ୍ୱାସ କରୁଛନ୍ତି ? ଏଥିରେ ବ୍ୟବହୃତ ହେଉଥିବା ପ୍ରତୀକ, ରହସ୍ୟମୟ ରେଖାଚିତ୍ର ଓ ଗଣନା ଇତ୍ୟାଦିରୁ ଏହାର ବାସ୍ତବତା ନେଇ ଏକ ପ୍ରତୀୟମାନ ଧାରଣା ସୃଷ୍ଟି ହୋଇଥାଏ । ଏହାଛଡ଼ା ଅନ୍ୟମାନଙ୍କର ମନସ୍ତତ୍ତ୍ୱକୁ ସ୍ପର୍ଶ କରିବା ପରି ଜ୍ୟୋତିଷୀମାନେ ଭବିଷ୍ୟବାଣୀ କରିଥାନ୍ତି । ନିଜର ଭବିଷ୍ୟତ ବିଷୟରେ ଜାଣିବା ପାଇଁ ଆଗ୍ରହ ଅଧିକାଂଶଙ୍କ ଭିତରେ ଥାଏ । କେଉଁ ବ୍ୟକ୍ତି ନିଜର ଭବିଷ୍ୟତ ଜାଣିବାକୁ ଆଗ୍ରହ ପ୍ରକାଶ କରେ ନାହିଁ ! ସୁତରାଂ ଲୋକମାନେ ଯାହା ଚାହୁଁଛନ୍ତି ଜ୍ୟୋତିଷ ଗଣକମାନେ ସେମାନଙ୍କର ମନସ୍ତତ୍ତ୍ୱକୁ ଜାଣି ସେହି ପ୍ରକାର କହିଥାନ୍ତି ।

ଏହାଛଡା ବହୁ ସମୟରେ ଭବିଷ୍ୟବାଣୀ ଗୁଡିକ ଏ ପ୍ରକାର ଦ୍ୱ୍ୟର୍ଥକ ଭାଷାରେ ବ୍ୟକ୍ତ ହୋଇଥାଏ ଯେ ଯାହା ହେଲେ ବି ତାହାହିଁ ଭବିଷ୍ୟବାଣୀ ଥିଲା ବୋଲି ବିଶ୍ୱାସ କରାଯାଏ । ଭବିଷ୍ୟବାଣୀ କରିବାବେଳେ ନାନାର୍ଥ ଥିବା କଥାଟି କୌଶଳତାର ସହ କୁହାଯାଇଥିବାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ମୋଟ ଉପରେ କହିବାକୁ ଗଲେ ନାନା ସାମାଜିକ ଓ ମନସ୍ତାତ୍ତ୍ୱିକ କାରଣରୁ ଫଳିତ ଜ୍ୟୋତିଷ ନେଇ ବିଶ୍ୱାସ ରହିବା ଦେଖାଯାଏ ।

## ସାମୁଦ୍ରିକ ବିଦ୍ୟା :

ଫଳିତ ଜ୍ୟୋତିଷ ଓ ଜ୍ୟୋତିର୍ବିଜ୍ଞାନ ଯେପରି ପରସ୍ପରଠାରୁ ଭିନ୍ନ, ସେହିପରି ସାମୁଦ୍ରିକ ବିଦ୍ୟା (Palmistry) ଓ ହସ୍ତରେଖା ବିଜ୍ଞାନ (Dermatoglyphics) ମଧ୍ୟ ପରସ୍ପରଠାରୁ ପୃଥକ୍ । ଜ୍ୟୋତିର୍ବିଜ୍ଞାନ ଖଗୋଳୀୟ ପିଣ୍ଡ ଯଥା ସୂର୍ଯ୍ୟ, ନକ୍ଷତ୍ର, ଗ୍ରହ, ଉପଗ୍ରହ, ସୌରମଣ୍ଡଳ ଇତ୍ୟାଦି ଉପରେ ଅଧ୍ୟୟନ ହୋଇଥିବାବେଳେ ଫଳିତ ଜ୍ୟୋତିଷ ମଣିଷର ଭାଗ୍ୟ ଓ ଭବିଷ୍ୟତ ଘଟଣା ଉପରେ ଭବିଷ୍ୟବାଣୀକୁ ବୁଝାଏ । ସେହିପରି ହସ୍ତ-ତ୍ୱଚା ବିଜ୍ଞାନ ଏକ ବୈଜ୍ଞାନିକ ଅଧ୍ୟୟନ ହୋଇଥିବାବେଳେ ସାମୁଦ୍ରିକ ବିଦ୍ୟା ମଣିଷର ଭାଗ୍ୟ ଉପରେ ଭବିଷ୍ୟବାଣୀକୁ ସୂଚାଇଥାଏ ।

ହାତ, ପାଦର ଗାର, ଆଙ୍ଗୁଠି ଗୁଡିକର ଚିହ୍ନ ଇତ୍ୟାଦିକୁ ଅଧ୍ୟୟନ କରାଯାଇ ସେଗୁଡିକ ଭିତରେ ପାର୍ଥକ୍ୟ ବା ସାମଞ୍ଜସ୍ୟକୁ ବିଶ୍ଳେଷଣ କରାଯାଉଛି । ବ୍ୟକ୍ତିମାନଙ୍କର ଟିପ ଚିହ୍ନ ବା ହାତ ଚିହ୍ନ ପରସ୍ପରଠାରୁ ପୃଥକ ହୋଇଥିବାରୁ ଅପରାଧ ବିଜ୍ଞାନ କ୍ଷେତ୍ରରେ ଏହାକୁ ଗୁରୁତ୍ୱ ଦିଆଯାଉଛି । ଚିକିତ୍ସା ବିଜ୍ଞାନରେ ଚମ, ପାପୁଲି, ଆଙ୍ଗୁଠିର ଆକୃତି ଓ ଗଠନ ପାଇଁ ବିଭିନ୍ନ ଜିନ୍, ଜାତିଗତ ବା ପରିବେଶୀୟ ପ୍ରଭାବକୁ ବିଶ୍ଳେଷଣ କରାଯାଉଛି । ଭ୍ରୁଣ ଅବସ୍ଥାରୁ ତ୍ୱଚା, ହାତ ପାଦର ରେଖା, ଭାଙ୍ଗ ସୃଷ୍ଟି ହେବାରେ ଜିନ ଓ କ୍ରୋମଜମର ପ୍ରଭାବକୁ ମଧ୍ୟ ଦେଖାଯାଉଛି । ଏସବୁରେ କିଛି ବିକୃତି ବା ବ୍ୟତିକ୍ରମକୁ ମଧ୍ୟ ଅଧ୍ୟୟନ କରାଯାଉଛି । ଏସବୁକୁ ବୈଜ୍ଞାନିକ ପ୍ରଣାଳୀରେ ଚିକିତ୍ସା ବିଜ୍ଞାନ ପରିସରରେ କରାଯିବା ସମ୍ଭବ ହୋଇଛି । ସେହିପରି କେତେକ ବାଦ୍ୟ ବଜାଇବା ବା ଛବି ଆଙ୍କିବା ଇତ୍ୟାଦି କ୍ଷେତ୍ରରେ ଟିପ ଓ ଅଙ୍ଗୁଳିମାନଙ୍କର ଆକାର, ବିସ୍ତୃତି ଅନୁକୂଳ କି ନୁହଁ ତାହା ମଧ୍ୟ ସ୍ଥିର ଭାବେ କୁହାଯାଇ ପାରୁଛି ।

ଅପରପକ୍ଷରେ ସାମୁଦ୍ରିକ ବିଦ୍ୟାର ପରିସର ଭିନ୍ନ ଅଟେ । ଏହା ଅନୁଯାୟୀ ହାତରେ ଥିବା ରେଖା ଭାଙ୍ଗକୁ ଦେଖି ବ୍ୟକ୍ତିର ସାମାଜିକ ଚରିତ୍ର ନିରୂପଣ କରାଯିବା ସମ୍ଭବ ବୋଲି ଦାବି କରାଯାଏ । ହାତରେ ଥିବା ତିନୋଟି ମୁଖ୍ୟ ରେଖା ଓ ଅନ୍ୟାନ୍ୟ ଉପ ରେଖାର ଉତ୍ପତ୍ତି, ବିସ୍ତୃତି, ଭାଙ୍ଗ, ବକ୍ରତା ଇତ୍ୟାଦିକୁ ଦେଖି ଜଣଙ୍କର ମାନସିକ ଅବସ୍ଥା, ପାରିବାରିକ ଜୀବନ, ପ୍ରେମ, ବିବାହ, ସନ୍ତାନ ସନ୍ତତି, ରୋଗ, ଦୁର୍ଘଟଣା, ମୃତ୍ୟୁ, ଆର୍ଥିକ ସ୍ଥିତି, କର୍ମକ୍ଷେତ୍ରର ସଫଳତା ବା ପ୍ରତିକୂଳତା କହିବାକୁ ସାମୁଦ୍ରିକ ବିଦ୍ୟାରେ ଉଦ୍ୟମ କରାଯାଏ । ଅର୍ଥାତ୍ ହାତର ରେଖା ଓ ଭାଙ୍ଗମାନଙ୍କୁ ଦେଖି ଜୀବନର ଘଟଣା ପ୍ରବାହ ଓ ଅନ୍ୟାନ୍ୟ ଭବିଷ୍ୟବାଣୀ କରିବା ପାଇଁ ଏଥିରେ ଚେଷ୍ଟା ହୁଏ । ବୈବାହିକ ଜୀବନର ସଫଳତା ବା ବିଫଳତା, କୌଣସି ଦୁର୍ଘଟଣା, ବିଦେଶ ଭ୍ରମଣ, ରାଷ୍ଟ୍ରୀୟ ସମ୍ମାନ ଇତ୍ୟାଦି ଜୀବନର ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ହସ୍ତରେଖା ଓ ଭାଙ୍ଗ ଦେଖି କହିବା ସମ୍ଭବ ବୋଲି ସାଂମୁଦ୍ରିକ ଗଣକମାନେ ମତପୋଷଣ କରନ୍ତି । ମୋଟ ଉପରେ ହାତର ରେଖା ଗୁଡିକ ବ୍ୟକ୍ତିତ୍ୱର ପ୍ରତୀକ ଓ ଜୀବନର ଘଟଣାବଳୀର ପ୍ରତିଫଳନ ବୋଲି ସାମୁଦ୍ରିକ ବିଦ୍ୟାରେ ଗ୍ରହଣ କରାଯାଏ । ଫଳିତ ଜ୍ୟୋତିଷ ପରି ସାମୁଦ୍ରିକ ବିଦ୍ୟା ବି ବହୁ ପ୍ରାଚୀନ ଅଟେ ।

## ପରୀକ୍ଷା ପାଇଁ ଆହ୍ୱାନ :

ଫଳିତ ଜ୍ୟୋତିଷ ଓ ସାମୁଦ୍ରିକ ବିଦ୍ୟାର ବୈଜ୍ଞାନିକ ଭିତ୍ତି ଯେ ନାହିଁ ଏହି ଦୃଢ ପ୍ରତ୍ୟୟରୁ କୋଭୁର ଏସବୁର ଗଣକମାନଙ୍କୁ ୧୯୬୪ରେ ଆହ୍ୱାନ ଦେଇଥିଲେ । ଯଦିଓ କୌଣସି ଗଣକ ଶତକଡା ପାଞ୍ଚଟି ଭୁଲକୁ ବାଦ୍ ଦେଇ ଜାତକ ବା ହସ୍ତରେଖାରୁ ବ୍ୟକ୍ତି ଜୀବିତ ବା ମୃତ ଏବଂ ନାରୀ ବା ପୁରୁଷ କହିପାରିବେ, ତେବେ କୋଭୁର ତାଙ୍କୁ ଏକ ଲକ୍ଷ ସିଂହଳ ଟଙ୍କା ଦେବାକୁ ଘୋଷଣା କରିଥିଲେ । କୌଣସି ଗଣକ ତାଙ୍କର ଆହ୍ୱାନକୁ ଗ୍ରହଣ କରିବାକୁ ଆଗଭର ହୋଇନଥିଲେ ମଧ୍ୟ ସେ ନିଜ ତରଫରୁ କେତେକ ପରୀକ୍ଷା ସାଧାରଣରେ କରିଥିଲେ । ସେହି ପରୀକ୍ଷାରୁ ଜଣେ ଗଣକ ଓ ସାଧାରଣ ବ୍ୟକ୍ତିର ଅନୁମାନକୁ ତୁଳନା କରି ସେଥିରେ ବିଶେଷ ପାର୍ଥକ୍ୟ ନଥିବା ଦର୍ଶାଇଥିଲେ । ଏହି ପୃଷ୍ଠଭୂମିରେ ଏ କ୍ଷେତ୍ରରେ ତାଙ୍କର ଶେଷ ପରୀକ୍ଷାଟି ଏଠାରେ ବ୍ୟକ୍ତ କରାଯାଇଛି ।

ସିଲୋନରୁ ପ୍ରକାଶ ପାଉଥିବା "ସଣ୍ଡେ ଅବଜର୍ଭର" ପତ୍ରିକାରେ ଏକ ସମ୍ବାଦ ପ୍ରକାଶ ପାଇଲା ଯେ ଶ୍ରୀଲଙ୍କାର ବିଶିଷ୍ଟ ଜ୍ୟୋତିଷୀ ଓ ସାମୁଦ୍ରିକ ଗଣକ ସାଇରସ ଆବେୟାକୁନ୍ ତାଙ୍କର ଭବିଷ୍ୟବାଣୀ ପାଇଁ ଇଂଲଣ୍ଡ ଓ ଅନ୍ୟାନ୍ୟ କେତେକ ଦେଶରେ ପ୍ରସିଦ୍ଧି ଲାଭ କରିଛନ୍ତି । ସମ୍ବାଦଟିରେ ଉଲ୍ଲେଖଥିଲା ଯେ ଘାନାର ରାଷ୍ଟ୍ରପତିଙ୍କର ହାତ ଦେଖି ଘାନାରେ ପେଟ୍ରୋଲର ସନ୍ଧାନ କରାଇବାରେ ସେ ସମର୍ଥ ହୋଇଛନ୍ତି । ତାଙ୍କର ସିଲୋନ ଅବସ୍ଥାନ ସମୟରେ ତାଙ୍କ ସମ୍ପର୍କରେ ଏହି ସମ୍ବାଦ ପ୍ରକାଶ ପାଇବାରୁ ବେଶ୍ ଆଲୋଡନ ସୃଷ୍ଟି ହୋଇଥିଲା । ଏହି ସମ୍ବାଦ ପ୍ରକାଶ ପରେ ସେହି ପତ୍ରିକାରେ କୋଭୁର ସାଇରସ ଆବେୟାକୁନ ତଥା ଅନ୍ୟାନ୍ୟ ଜ୍ୟୋତିଷୀ ଓ ସାମୁଦ୍ରିକ ପାଠକମାନଙ୍କୁ ଆହ୍ୱାନ ଦେଇ କହିଥିଲେ ଯେ ଯଦି ତାଙ୍କର ଆହ୍ୱାନକୁ ଗ୍ରହଣକରି ସଫଳତାର ସହ ଜାତକ ବା ହସ୍ତରେଖାରୁ ବ୍ୟକ୍ତି ମୃତ ବା ଜୀବିତ ଏବଂ ପୁରୁଷ ବା ମହିଳା କହିପାରିବେ ତେବେ ସେ ତାଙ୍କୁ ଏକ ଲକ୍ଷ ଟଙ୍କା ପ୍ରଦାନ କରିବେ । ପୁନଶ୍ଚ ଆହୁରି ମଧ୍ୟ ଘୋଷଣା କରିଥିଲେ ଯେ ଥୃଷ୍ଟାନ କଲେଜ ପରିସରରେ ୧୨.୨.୭୮ ଦିନ ସେ ଏହି ସଂକ୍ରାନ୍ତରେ ଏକ ପରୀକ୍ଷା କରିବେ । ହସ୍ତରେଖା ବା ଜନ୍ମ ସମୟକୁ ନିର୍ଦ୍ଧିଷ୍ଟ ଭାବରେ ଜଣାଇଲେ ବ୍ୟକ୍ତିର ଭବିଷ୍ୟତ କହିପାରିବେ ବୋଲି ଯେଉଁମାନେ ନାନା ବିଜ୍ଞାପନ ଦେଉଛନ୍ତି ସେମାନେ ତାଙ୍କଦ୍ୱାରା କରାଯାଉଥିବା ପରୀକ୍ଷାରେ (ଟେଷ୍ଟ) ଯୋଗଦେଇ ଆହ୍ୱାନ ଜିତିବାକୁ ସେ ଅନୁରୋଧ କରିଥିଲେ । ଚାରିଜଣ ଗଣକ କୋଭୁରଙ୍କ ଆହୂତ ଟେଷ୍ଟରେ ଯୋଗଦେବେ ବୋଲି ତାଙ୍କୁ ଜଣାଇଲେ । ଅନ୍ୟ ଜଣେ ବ୍ୟକ୍ତି ପ୍ରାର୍ଥନାଦ୍ୱାରା ରୋଗ ଭଲ କରିପାରିବେ ବୋଲି ଦାବି କରି ତାଙ୍କୁ ଜଣାଇବାରେ ସେ ମଧ୍ୟ ଟେଷ୍ଟରେ ଯୋଗ ଦେଇ ନିଜର ଚମତ୍କାରିକତା ଦେଖାଇବାକୁ ଆହ୍ୱାନ ଦେଇଥିଲେ ।

ନିର୍ଦ୍ଧାରିତ ଦିନ ନର୍ଦ୍ଧିଷ୍ଟ ସମୟ ପୂର୍ବରୁ ଥୃଷ୍ଟାନ କଲେଜର ପ୍ରେକ୍ଷାଳୟଟି ଜନ ଗହଳିରେ ପୂରି ଯାଇଥିଲା । କୋଭୁର ତାଙ୍କ ଆହ୍ୱାନର ଉଦ୍ଦେଶ୍ୟ ସମ୍ପର୍କରେ ଏକ ସଂକ୍ଷିପ୍ତ ଭାଷଣ ପ୍ରଦାନ ପରେ ଫଳିତ ଜ୍ୟୋତିଷ ଓ ସାମୁଦ୍ରିକ ଗଣକମାନଙ୍କୁ ମଞ୍ଚ ଉପରକୁ ଆସି ନିଜ ନିଜର ଆସନ ଗ୍ରହଣ କରିବାକୁ ଅନୁରୋଧ ଜଣାଇଲେ । ଯଦିବା ସେହି ସଭାରେ ବହୁ ଗଣକ ଉପସ୍ଥିତ ଥିଲେ, ଜଣେ ମାତ୍ର ସାମୁଦ୍ରିକ ପାଠକ ଓ ପ୍ରାର୍ଥନା ଆରୋଗ୍ୟକ ମଞ୍ଚ ଉପରକୁ ଆସିଲେ । ମାତ୍ର କେତୋଟି ଟଙ୍କା ନେଇ

ଲୋକଙ୍କର ଭାଗ୍ୟ ଓ ଭବିଷ୍ୟ କହୁଥିବା ଜ୍ୟୋତିଷୀମାନେ ଏକ ଲକ୍ଷ ଟଙ୍କାର ଆହ୍ୱାନ ଜିତିବାକୁ ସାହସ ରଖି ଆଗଭର ହୋଇନଥିଲେ । ଯେଉଁ ବ୍ୟକ୍ତି ପ୍ରାର୍ଥନା ଦ୍ୱାରା ଆରୋଗ୍ୟ କରିପାରିବେ ବୋଲି ଆସିଥିଲେ ତାଙ୍କୁ ପରିଚିତ କରାଇଦେଇ ପ୍ରାର୍ଥନାଦ୍ୱାରା କୋଭୁରଙ୍କର ନାକ ଅଗ୍ରରେ ଥିବା ଗୋଟିଏ ତିଳ ଚିହ୍ନକୁ ଲିଭାଇଦେବାକୁ କହିଲେ । ସେ ହୁଏତ ତାଙ୍କ ପେଟରେ ହୋଇଥିବା କ୍ୟାନସରକୁ ଭଲ କରିବା ପାଇଁ ଅନୁରୋଧ କରି ପାରିଥାନ୍ତେ, କିନ୍ତୁ ଫଳାଫଳ ବାଓସି ବ୍ୟତୀତ ଦର୍ଶକଙ୍କୁ ଜଣାଇବା ସମ୍ଭବ ନଥିବାରୁ ସେ ତାଙ୍କ ନାକର ତିଳ ଚିହ୍ନଟିକୁ ଦୂର କରିଦେବାକୁ କହିଲେ । ଦର୍ଶକଙ୍କ ମଧ୍ୟରୁ ଜଣେ ବ୍ୟକ୍ତିଙ୍କୁ ସେ ମଞ୍ଚ ଉପରକୁ ଆସିବାକୁ ବି ଅନୁରୋଧ କଲେ ।

ଏହାପରେ କୋଭୁର ଚାରୋଟି ଜଉ ମୁଦ ଦିଆ ଲଫାପାରୁ ଦୁଇଟି ବାହାର କଲେ । ପ୍ରଥମଟିରେ ଦଶ ଜଣ ବ୍ୟକ୍ତିଙ୍କର ଦୁଇ ହାତର ଫଟୋଚିତ୍ର ରହିଥିଲା ଯାହାକୁ ତାଙ୍କ ଅନୁରୋଧରେ ଶ୍ରୀଲଙ୍କା ପୋଲିସ କର୍ତ୍ତୃପକ୍ଷ ସତ୍ୟ ବୋଲି ଦସ୍ତଖତ ସହ ଦେଇଥିଲେ । ଅନ୍ୟ ଗୋଟିଏ ଲଫାପାରେ ଦଶ ଜଣ ବ୍ୟକ୍ତିଙ୍କର ଜନ୍ମ ତାରିଖ ଓ ଜନ୍ମ ସ୍ଥାନ, ସମୟ, ଘଣ୍ଟା, ମିନିଟ ସହ, ଉଲ୍ଲେଖ ଥିଲା ଓ ଅନ୍ୟ ଲଫାପାରେ ସେହି ବ୍ୟକ୍ତିଙ୍କର ଲିଙ୍ଗ, ଆୟୁଷ ଓ ପୂର୍ଣ୍ଣ ପରିଚୟ ରହିଥିଲା । ଯାହାକୁ ଜୀବିତ ଲୋକମାନେ ନିଜେ ଓ ମୃତ ଲୋକମାନଙ୍କ କ୍ଷେତ୍ରରେ ତାଙ୍କ ପରିବାର ଲୋକମାନେ ସତ୍ୟ ବିବରଣୀ ବୋଲି ଦସ୍ତଖତ କରିଥିଲେ । ଅବଶ୍ୟ ଲଫାପା ଦୁଇଟି ଖୋଲିବାର ଅବକାଶ ସେଦିନ ନଥିଲା ।

ଦଶ ଜଣଙ୍କର ଦୁଇ ହସ୍ତର ଚିତ୍ର ଥିବା ମୁଦ ଲଫାପାଟିକୁ ଖୋଲି ହସ୍ତରେଖା ପାଠକଙ୍କୁ ପ୍ରଥମେ ଦେଲେ ଓ ତାଙ୍କର ଉତ୍ତର ସଂଗ୍ରହ ପରେ ଦର୍ଶକଙ୍କ ମଧ୍ୟରୁ ଆସିଥିବା ଜଣେ ସାଧାରଣ ଲୋକଙ୍କୁ ଅନୁମାନ କରି ଉତ୍ତର ଲେଖିବାକୁ କହିଲେ । ସେହି ଦଶଟି ଉଭୟ ହସ୍ତ ଚିତ୍ରରୁ କିଏ ଜୀବିତ ବା ମୃତ ଏବଂ କିଏ ପୁରୁଷ ବା ମହିଳା ତାହା ଉଲ୍ଲେଖ କରିବାକୁ କହିଲେ । ଏହାପରେ ଦୁଇଜଣ ସାମ୍ବାଦିକଙ୍କୁ ଉଭୟ ଉତ୍ତରକୁ ମୁଦ ଲଫାପା ଭିତରେ ଥିବା ଉତ୍ତର ସହିତ ମେଳ କରାଇ ଦେଖିଲେ ଯେ ଗଣକଙ୍କର ଉତ୍ତର ଶତକଡା ତିରିଶ ଠିକ୍ ଥିବାବେଳେ ସାଧାରଣ ବ୍ୟକ୍ତିର ଉତ୍ତର ଶତକଡା କୋଡିଏ ଠିକ୍ ହୋଇଥିଲା । ସେହିପରି କୋଭୁରଙ୍କ ନାକର ରାଶି ଚିହ୍ନଟିରେ ପ୍ରାର୍ଥନା ଆରୋଗ୍ୟକଙ୍କ ଚେଷ୍ଟା ସତ୍ତ୍ୱେ କୌଣସି କିଛି ପରିବର୍ତ୍ତନ ହୋଇନଥିଲା ।

ସର୍ବ ସାଧାରଣରେ ଏହି ପ୍ରକାର ପରୀକ୍ଷା କରି ସତ୍ୟକୁ ଅନାବୃତ କରିବାକୁ ସେ ବହୁବାର ଉଦ୍ୟମ କରିଛନ୍ତି । କୁସଂସ୍କାର ବିରୁଦ୍ଧରେ ସଚେତନତା ସୃଷ୍ଟି କରି ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ କରାଇବା ତାଙ୍କର ଜୀବନବ୍ୟାପୀ ଲକ୍ଷ୍ୟ ଥିଲା ।

କୋଭୁର ଗୋଟିଏ ଘଟଣା ଉଲ୍ଲେଖ କରିଛନ୍ତି । ଶ୍ରୀଲଙ୍କାର ଭୂତପୂର୍ବ ପ୍ରଧାନମନ୍ତ୍ରୀ ଏସ.ଡବ୍ଲୁ. ଆର.ଡି. ବନ୍ଦରନାୟକ ତାଙ୍କର ଶପଥ ପାଠ ଉତ୍ସବକୁ ନିର୍ଦ୍ଧାରିତ ସମୟଠାରୁ ଅଧ ଘଣ୍ଟାଏ ଘୁଞ୍ଚାଇ ଦେଇଥିଲେ, କାରଣ ତାଙ୍କ ପରିବାରର ଜ୍ୟୋତିଷ ଗଣକ ଶୁଭ ମୁହୂର୍ତ୍ତ ନିର୍ଣ୍ଣୟ କରି ଶୁଭ ସମୟରେ ଶପଥ ନେବାକୁ ତାଙ୍କୁ ପରାମର୍ଶ ଦେଇଥିଲେ । ଯଦିବା ସେ ଶୁଭ ମୁହୂର୍ତ୍ତରେ ଶପଥ ଗ୍ରହଣ କରିଥିଲେ ତଥାପି ତାଙ୍କର ପାଳି ସରିବା ପୂର୍ବରୁ ସେ ଆତତାୟୀ ଦ୍ୱାରା ନିହତ ହୋଇଥିଲେ । ଶ୍ରୀଲଙ୍କା ଓ ଭାରତବର୍ଷରେ ଅନେକ ରାଜନୈତିକ ନେତୃବୃନ୍ଦ ନିଜର କ୍ଷମତା ଓ ଶାସନ ପାଇଁ ଗଣକମାନଙ୍କର ପରାମର୍ଶ ନେଉଛନ୍ତି ।

କୋଭୁରଙ୍କର ଚତୁର୍ଥ 'ଅଲୌକିକ ବା ଚମତ୍କାରିତା ଅନାବୃତ କାର୍ଯ୍ୟକ୍ରମ' (Miracle Exposure Campaign) ସମୟରେ ବାଙ୍ଗାଲୋରର ଫଳିତ ଜ୍ୟୋତିଷ ପତ୍ରିକାର ସମ୍ପାଦକ ଓ ବିଶିଷ୍ଟ ଜ୍ୟୋତିଷ ଗଣକ ଡଃ ବି.ଭି. ରମଣଙ୍କୁ ପତ୍ର ଲେଖି ତାଙ୍କର କାର୍ଯ୍ୟକ୍ରମରେ ଯୋଗ ଦେଇ ତାଙ୍କ ଆହ୍ୱାନକୁ ଗ୍ରହଣ କରିବାକୁ ଅନୁରୋଧ କରିଥିଲେ । କୋଭୁର ବାଙ୍ଗାଲୋର ମଧ୍ୟରେ ଆଠଟି ସଭାରେ ଯୋଗ ଦେଇଥିଲେ ବି ଡଃ ରମଣ ତାଙ୍କର ଆହ୍ୱାନକୁ ଗ୍ରହଣ କରିନଥିଲେ ବା ଫଳିତ ଜ୍ୟୋତିଷ ଅନୁଯାୟୀ କରାଯାଉଥିବା ଭବିଷ୍ୟବାଣୀ ବିଜ୍ଞାନ ସମ୍ମତ ବୋଲି ପ୍ରମାଣ ଦେବାକୁ କେବେ ବି ତାଙ୍କର ସମ୍ମୁଖୀନ ହୋଇନଥିଲେ ।

## ବୈଜ୍ଞାନିକଙ୍କ ଘୋଷଣା ପତ୍ର :

"ଆଧିବୈଦିକ ଘଟଣାର ବୈଜ୍ଞାନିକ ବିଶ୍ଳେଷଣ ସଂଘ" (Committee for Scientific Investigatin of Claims of the Paranormal) ନାମରେ ଏକ ଆନ୍ତର୍ଜାତିକ ସଂଗଠନର ମୁଖ୍ୟ କାର୍ଯ୍ୟାଳୟ ଆମେରିକାର ବୁଫାଲୋଠାରେ ରହିଛି । ଏହି ଅନୁଷ୍ଠାନ ସହ ବହୁ ନୋବେଲ ପୁରସ୍କାର ପ୍ରାପ୍ତ ବୈଜ୍ଞାନିକ, ମନସ୍ତତ୍ତ୍ୱବିତ୍, ସମାଜ ବିଜ୍ଞାନୀ, ଦାର୍ଶନିକ, ଯାଦୁକର ଇତ୍ୟାଦି ସଂପୃକ୍ତ ରହିଛନ୍ତି । ସଂଗଠନର ଶାଖା ବିଭିନ୍ନ

ଦେଶରେ ରହିଛି, ଭାରତରେ ମଧ୍ୟ ରହିଛି । ଏହି ସଂଗଠନ ତରଫରୁ Sceptical Enquirer ନାମକ ଏକ ତ୍ରୟ ମାସିକ ପତ୍ରିକା ପ୍ରକାଶ ପାଉଛି । ଅନୁଷ୍ଠାନ ଆନୁକୂଲ୍ୟରେ ଫଳିତ ଜ୍ୟୋତିଷ, ଇନ୍ଦ୍ରିୟାତୀତ ପ୍ରତ୍ୟକ୍ଷ (Extra Sensory Perception), ଦୂରବୋଧ (Telepathy), ନିଆଁ ଉପରେ ଚାଲିବା ପଶ୍ଚାତରେ ବିଜ୍ଞାନ, ମୃତ୍ୟୁକାଳୀନ ଅନୁଭୂତି, ଆଲଫା ଚେତନା ରହସ୍ୟ, ବର୍ମୁଣ୍ଡା ଟ୍ରାଙ୍ଗେଲ, ଅଜଣା ଉଡନ୍ତା ବସ୍ତୁ ପରି ବହୁ ବିଷୟ ଉପରେ ପ୍ରବୀଣ ବ୍ୟକ୍ତିମାନଙ୍କ ଦ୍ୱାରା ବିଭିନ୍ନ ସମୟରେ ପରୀକ୍ଷା ହୋଇ ଫଳାଫଳ ପ୍ରକାଶ କରାଯାଇଛି । "ଫଳିତ ଜ୍ୟୋତିଷର ବିରୋଧ" (Objection to Astrology) ଶିରୋନାମାରେ ଉଣେଇଶ ଜଣ ନୋବେଲ ପୁରସ୍କାର ପ୍ରାପ୍ତ ବୈଜ୍ଞାନିକଙ୍କ ସହ ଏକ ଶହ ଛୟାଅଶୀ ଜଣ ବିଶିଷ୍ଟ ବ୍ୟକ୍ତିଙ୍କର ଦସ୍ତଖତରେ ୧୯୭୫ ମସିହାରେ ଏକ ବିବୃତି ବା ଘୋଷଣା ପତ୍ର ପ୍ରକାଶ ପାଇଥିଲା । ଆମେରିକାର ନାଗରିକତ୍ୱ ଗ୍ରହଣ କରିଥିବା ନୋବେଲ ପୁରସ୍କାର ପ୍ରାପ୍ତ ଭାରତର ବିଶିଷ୍ଟ ବୈଜ୍ଞାନିକ ଏସ. ଚନ୍ଦ୍ରଶେଖର ମଧ୍ୟ ଏହି ଘୋଷଣାନାମାରେ ସାକ୍ଷର କରିଥିଲେ । ସେହି ଘୋଷଣା ପତ୍ରଟିକୁ ଏଠାରେ ଅବିକଳ ପ୍ରକାଶ କରାଗଲା ।

"ପୃଥିବୀର ବିଭିନ୍ନ ଅଞ୍ଚଳରେ କ୍ରମବର୍ଦ୍ଧିଷ୍ଣୁ ଭାବେ ଫଳିତ ଜ୍ୟୋତିଷର ପ୍ରସାର ହେଉଥିବାରୁ ବୈଜ୍ଞାନିକମାନେ ଚିନ୍ତିତ ହେଉଛନ୍ତି । ଆମେ ନିମ୍ନ ସାକ୍ଷରକାରୀ ଜ୍ୟୋତିର୍ବିଜ୍ଞାନୀ, ଖଗୋଳ ପଦାର୍ଥ ବିଜ୍ଞାନୀ ଓ ଅନ୍ୟାନ୍ୟ ବୈଜ୍ଞାନିକଗଣ ଫଳିତ ଜ୍ୟୋତିଷ ଗଣକମାନେ ଗୁପ୍ତ ଭାବରେ ବା ମୁକ୍ତ ଭାବରେ ଦେଉଥିବା ଭବିଷ୍ୟବାଣୀ ସମ୍ପର୍କରେ ଜନଗଣଙ୍କୁ ସତର୍କ କରାଇଦେବାକୁ ଚାହୁଁଛୁ । ଫଳିତ ଜ୍ୟେତିଷରେ ବିଶ୍ୱାସ କରୁଥିବା ବ୍ୟକ୍ତିଗଣ ଜାଣି ରଖିବା ଆବଶ୍ୟକ ଯେ ଫଳିତ ଜ୍ୟୋତିଷ ସିଦ୍ଧାନ୍ତ ଗୁଡିକର କୌଣସି  ବୈଜ୍ଞାନିକ ଭିତ୍ତି ନାହିଁ ।

"ପ୍ରାଚୀନ କାଳରେ ଜ୍ୟୋତିଷୀମାନେ ଦେଉଥିବା ପରାମର୍ଶ ବା ଭବିଷ୍ୟବାଣୀ ଉପରେ ଜନଗଣ ବିଶ୍ୱାସ କରୁଥିଲେ କାରଣ ସେତେବେଳେ ସେମାନଙ୍କର ଜଗତ ବିଷୟକ କାଳ୍ପନିକ ଧାରଣାର ତାହା ଅଙ୍ଗବିଶେଷ ଥିଲା । ଖଗୋଳୀୟ ବସ୍ତୁମାନଙ୍କୁ ଦେବତାମାନଙ୍କର ବାସସ୍ଥଳୀ ଓ ଐଶ୍ୱରୀୟ ସୂଚନାର ପ୍ରତୀକ ଭାବରେ ଗ୍ରହଣ କରି ପୃଥିବୀରେ ସୃଷ୍ଟ ଘଟଣାକୁ ସେସବୁ ସହିତ ସଂପୃକ୍ତ କରାଯାଉଥିଲା । ପୃଥିବୀଠାରୁ ଗ୍ରହ ଓ ନକ୍ଷତ୍ରମାନଙ୍କର ଭିତରେ ଥିବା ଦୂରତାକୁ ନିରୂପଣ କରାଯାଇଛି ବା କରାଯିବା

ସମ୍ଭବ ହୋଇଛି । କୋଟି କୋଟି ମାଇଲ ଦୂରରେ ଥିବା ଏହି ଗ୍ରହ ଓ ଅବିଶ୍ୱାସନୀୟ ଦୂରରେ ଥିବା ନକ୍ଷତ୍ର ମାନଙ୍କର ପୃଥିବୀ ଉପରେ ପଡୁଥିବା ମାଧ୍ୟାକର୍ଷଣ ଓ ପ୍ରଭାବ ଅକଳ୍ପନୀୟ ଭାବେ କ୍ଷୀଣ ବା କ୍ଷୀଣତମ । ଗୋଟିଏ ଶିଶୁର ଜନ୍ମ ସମୟରେ ଏହି ଗ୍ରହ-ନକ୍ଷତ୍ର ମାନଙ୍କର ଅବସ୍ଥିତି ଜନିତ ପ୍ରଭାବରୁ ତାର ଭାଗ୍ୟ ଓ ଭବିଷ୍ୟତ ନିର୍ଦ୍ଧାରିତ ହୋଇଥାଏ ବୋଲି ଭାବିବା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ସେହିପରି ଗ୍ରହ ଓ ନକ୍ଷତ୍ରମାନଙ୍କର କେତେକ ନିର୍ଦ୍ଦିଷ୍ଟ ଅବସ୍ଥିତି ଜନିତ ସମୟ ବା ଦିନ ଯେ କେତେକ କାର୍ଯ୍ୟ ପାଇଁ ଶୁଭଙ୍କର ଏହା ମଧ୍ୟ ସତ୍ୟ ନୁହେଁ । ପୁନଶ୍ଚ ଜନ୍ମ ମୁହୂର୍ତ୍ତ ଅନୁଯାୟୀ ବ୍ୟକ୍ତିର ଅନ୍ୟ ସହ ସମ୍ବନ୍ଧ ପ୍ରୀତିପଦ ବା ଅପ୍ରିତିକର ହେବ ବୋଲି ଭାବିବା ଭୁଲ ଅଟେ ।

"ଲୋକମାନେ କାହିଁକି ତେବେ ଫଳିତ ଜ୍ୟୋତିଷରେ ବିଶ୍ୱାସ କରୁଛନ୍ତି ? ଆଜିର ଅନିଶ୍ଚିତ ସମୟରେ କେତେକ ବ୍ୟକ୍ତି ଜୀବନରେ ନିଷ୍ପତ୍ତି ନେବା କ୍ଷେତ୍ରରେ ଆଗ୍ରହର ସହିତ ଅନ୍ୟର ପରାମର୍ଶ ନେବା ପାଇଁ ଇଚ୍ଛା କରିଥାନ୍ତି । ସେମାନେ ନିଜ ନିୟନ୍ତ୍ରଣ ବାହାରେ ଥିବା ଗ୍ରହ ନକ୍ଷତ୍ର ଶକ୍ତିର ପ୍ରଭାବରୁ ନିଜର ଭାଗ୍ୟ ନିର୍ଦ୍ଧାରିତ ହୋଇଯାଇଛି ବୋଲି ବିଶ୍ୱାସ ପୋଷଣ କରନ୍ତି । କିନ୍ତୁ ଆମେ ପରିସ୍ଥିତିର ସମ୍ମୁଖୀନ ହେବା ଆବଶ୍ୟକ । ଆମେ ଏହା ମଧ୍ୟ ଜାଣି ରଖିବା ଉଚିତ ଯେ ଆମର ଭବିଷ୍ୟତ ଆମ ଉପରେ ନିର୍ଭର କରେ, ଗ୍ରହ ନକ୍ଷତ୍ର ଏପରେ ନୁହେଁ ।

"ଜ୍ଞାନ ଓ ଶିକ୍ଷାର ବହୁଳ ପ୍ରସାର ଲାଭ କରିଥିବା ଆଜିର ପରିବେଶରେ କୁସଂସ୍କାର ବା ଚମତ୍କାରିତାର ପ୍ରକୃତ ସ୍ୱରୂପକୁ ଅନାବୃତ କରିବାର ଆବଶ୍ୟକତା ନାହିଁ ବୋଲି ହୁଏତ କେହି ଭାବିପାରନ୍ତି । ତଥାପି ଫଳିତ ଜ୍ୟୋତିଷ ଆଧୁନିକ ସମାଜରେ ଯଥେଷ୍ଟ ପ୍ରଭାବ ବିସ୍ତାର କରି ରହିଛି । ଫଳିତ ଜ୍ୟୋତିଷ, ଭବିଷ୍ୟବାଣୀ, ରାଶିଫଳ ଓ ଜାତକ ଇତ୍ୟାଦି ନେଇ ଗଣମାଧ୍ୟମ, ପ୍ରତିଷ୍ଠିତ ସମ୍ବାଦ ପତ୍ର, ପତ୍ର ପତ୍ରିକା ଓ ବିଶିଷ୍ଟ ପ୍ରକାଶକମାନେ ଯେପରି ଚିନ୍ତାଶୂନ୍ୟ ଭାବରେ ସମ୍ବାଦ ଓ ଲେଖା ପ୍ରକାଶ କରି ସେସବୁର ପ୍ରସାର କରୁଛନ୍ତି ତାହା ଆମପାଇଁ ଗଭୀର ଚିନ୍ତାର ବିଷୟ ହେଉଛି । ଏହାଦ୍ୱାରା ଅହେତୁକ ଭାବନା ଓ ରୂଢ଼ିବାଦର ପ୍ରସାର ହେଉଛି । ସୁତରାଂ ଫଳିତ ଜ୍ୟୋତିଷ ବାହାନାରେ ଜନଗଣଙ୍କୁ ବିଭ୍ରାନ୍ତ କରୁଥିବା ବ୍ୟକ୍ତିମାନଙ୍କୁ ପ୍ରତ୍ୟକ୍ଷ ଓ ଦୃଢ଼ ଭାବରେ ବିରୋଧ କରାଯିବା ଆବଶ୍ୟକ ।

"ଫଳିତ ଜ୍ୟୋତିଷରେ ବିଶ୍ୱାସ ରଖିଥିବା ବ୍ୟକ୍ତିଗଣ ଜାଣିବା ଆବଶ୍ୟକ ଯେ ସେମାନଙ୍କ ବିଶ୍ୱାସ ପଶ୍ଚାତରେ କୌଣସି ବୈଜ୍ଞାନିକ ଭିତ୍ତି ନାହିଁ, ବରଂ ଫଳିତ ଜ୍ୟୋତିଷର ଭିତ୍ତି ଯେ ତ୍ରୁଟି ପୂର୍ଣ୍ଣ ଏ ନେଇ ବଳିଷ୍ଠ ପ୍ରମାଣ ରହିଛି ।"

ଏହି ଘୋଷଣା ପତ୍ରରେ ଯେଉଁ ନୋବେଲ ପୁରସ୍କାର ପ୍ରାପ୍ତ ବ୍ୟକ୍ତିଗଣ ସାକ୍ଷର କରିଥିଲେ ସେମାନେ ହେଉଛନ୍ତି -

୧. ହାନ୍ସ ଏ. ବେଥେ, ଏମେରିଟସ ପ୍ରଫେସର, ପଦାର୍ଥ ବିଜ୍ଞାନ, କର୍ଣ୍ଣେଲ ।

୨. ସାର୍ ଫ୍ରାନସିସ କ୍ରିକ, ମେଡିକାଲ ରିସର୍ଚ୍ଚ କାଉନସିଲ, କେମ୍ବ୍ରିଜ, ଇଂଲଣ୍ଡ ।

୩. ସାର୍ ଜନ ଏକଲେସ, ପ୍ରଫେସର, ଫିଜିଓଲୋଜି ଓ ବାଓଫିଜିକ୍ସ, ସନି, ବୁଫାଲୋ ।

୪. ଜେହାର୍ଡ ହଜବର୍ଗ, ବୈଜ୍ଞାନିକ, ନେସନାଲ ରସର୍ଚ୍ଚ କାଉନସିଲ, କାନାଡା ।

୫. ୱାସିଲ ଲେଣ୍ଟିଫ୍, ପ୍ରଫେସର ଅର୍ଥନୀତି ବିଭାଗ, ହାର୍ଭାଡ ବିଶ୍ୱବିଦ୍ୟାଳୟ, ଆମେରିକା ।

୬. କୋନ୍ରାଡ ଲେରେନ୍ସ, ପ୍ରଫେସର, ଅଷ୍ଟ୍ରିଆନ ଏକାଡେମି ଅଫ ସାଇନସ୍, ଅଷ୍ଟ୍ରିୟା ।

୭. ଆନ୍ଦ୍ରେ ଏମ. ଲୋଫ୍, ପ୍ରଫେସର, ପାଶ୍ଚର ଇନଷ୍ଟିଚ୍ୟୁଟ, ପ୍ୟାରିସ, ଫ୍ରାନସ ।

୮. ସାର ପିଟର ମେଡୱାର, ମେଡିକାଲ ରିସର୍ଚ୍ଚ କାଉନସିଲ, ମିଡିଲେକ୍ସ ବିଶ୍ୱବିଦ୍ୟାଳୟ, ଇଂଲଣ୍ଡ ।

୯. ରବର୍ଟ ଏସ.ମୁଲ୍ଲିକେନ, ପ୍ରଫେସର, ରସାୟନ ବିଜ୍ଞାନ, ଚିକାଗୋ ବିଶ୍ୱବିଦ୍ୟାଳୟ, ଆମେରିକା ।

୧୦. ଲିନସ ସି. ପଲିଙ୍ଗ, ପ୍ରଫେସର, ରସାୟନ ବିଜ୍ଞାନ, ଷ୍ଟାନଫୋର୍ଡ ବିଶ୍ୱବିଦ୍ୟାଳୟ ।

୧୧. ଏଡ୍‌ୱାର୍ଡ ଏମ. ପୁର୍ସେଲ,ଗେରହାର୍ଡ ଗେଡ ବିଶ୍ୱବିଦ୍ୟାଳୟ ପ୍ରଫେସର, ହାର୍ଭାଡ ବିଶ୍ୱବିଦ୍ୟାଳୟ ।

୧୨. ପଲ ଏ.ସାମୁଏଲସନ, ପ୍ରଫେସର, ଅର୍ଥନୀତି ବିଭାଗ, ମିଟ୍ ।

୧୩. ଜୁଲିଏନ ସିଞ୍ଜର, ପ୍ରଫେସର, ପଦାର୍ଥ ବିଜ୍ଞାନ, କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ, ଲସ ଆଞ୍ଜେଲେସ ।

୧୪. ଗ୍ଲେନ ଟି.ସିବର୍ଗ, ପ୍ରଫେସର, କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ, ବର୍କେଲ ।

୧୫. ଜେ.ଟିନବର୍ଗେନ, ଏମିରିଟସ ପ୍ରଫେସର, ରୋଟରଡର୍ମ ।

୧୬. ଏନ.ଟିନବର୍ଗେନ, ଏମିରିଟସ ପ୍ରଫେସର, ଆନିମଲ ବିହେଭିଅର, ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ।

୧୭. ହାରୋଲ୍ଡ ସି.ଉରେ, ଏମିରିଟସ ପ୍ରଫେସର, କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ, ସାନଡିଏଗୋ ।

୧୮. ଜର୍ଜ ୱାଇଡ୍, ପ୍ରଫେସର ବାଓଲୋଜି, ହାର୍ଭାଡ ବିଶ୍ୱବିଦ୍ୟାଳୟ ।

୧୯. ଏସ. ଚନ୍ଦ୍ରଶେଖର, ପ୍ରଫେସର, ଚିକାଗୋ ବିଶ୍ୱବିଦ୍ୟାଳୟ ।

ଏମାନଙ୍କ ବ୍ୟତୀତ ୧୬୭ ଜଣ ପ୍ରବୀଣ ବୈଜ୍ଞାନିକ ଏହି ଘୋଷଣା ପତ୍ରରେ ସାକ୍ଷର କରିଥିଲେ ।



# ଜାତିସ୍ମର ଓ ମୃତ ଲୋକର ଆତ୍ମା

ପୃଥିବୀର ବିଭିନ୍ନ ଧର୍ମମାନଙ୍କରେ ମୃତ୍ୟୁ ପରେ ମୃତ ବ୍ୟକ୍ତିର ଆତ୍ମା ବା ଏକ ଚେତନ ସତ୍ତା ରହେ ବୋଲି ବିଶ୍ୱାସ ରହିଛି । 'ଆତ୍ମା ଯେ ଅମର' ଏହା ବିଭିନ୍ନ ଧର୍ମ ପରମ୍ପରାରେ ଗ୍ରହଣ କରାଯାଇଛି । କେତେକ ଧର୍ମ ପୁନର୍ଜନ୍ମରେ ବି ବିଶ୍ୱାସ କରନ୍ତି । ସେମାନଙ୍କ ମତରେ ଜୀବ ଜନ୍ମ-ମୃତ୍ୟୁ ଚକ୍ରରେ ମୋକ୍ଷ ପାଇବା ପର୍ଯ୍ୟନ୍ତ ଘୂରୁଥାଏ । ଅନ୍ୟ କେତେକ ଧର୍ମରେ ପୁନର୍ଜନ୍ମର ପରିକଳ୍ପନା ନାହିଁ । ମଣିଷର ମାତ୍ର ଗୋଟିଏ ଜନ୍ମ ଅଛି । ମୃତ୍ୟୁ ପରେ ଆତ୍ମା ରହିଥାଏ । ସୃଷ୍ଟିର ଅନ୍ତିମ ଦିନରେ ଈଶ୍ୱର ଆତ୍ମାର ଭଲ ମନ୍ଦ ବିଚାର କରି ତାକୁ ସ୍ୱର୍ଗ ବା ନର୍କକୁ ପଠାଇଥାନ୍ତି । ପୁନର୍ଜନ୍ମରେ ବିଶ୍ୱାସ କରୁଥିବା ଧର୍ମମାନଙ୍କରେ ଆତ୍ମାର ପ୍ରତୀତି ସମାନ ନୁହେଁ । ଆତ୍ମାର ସ୍ୱରୂପ ନେଇ ପୃଥକ ପୃଥକ କଥା କୁହାଯିବା ଦେଖାଯାଏ । ସେହିପରି ମୃତ୍ୟୁ ପରେ ଆତ୍ମାର ଗତି ନେଇ ଗୋଟିଏ କଥା ବି କୁହାଯାଏ ନାହିଁ । ଏପରିକି ହିନ୍ଦୁ ଧର୍ମ ଓ ଭାରତୀୟ ଦର୍ଶନର ବିଭିନ୍ନ ସ୍କୁଲ ମଧ୍ୟରେ ଆତ୍ମାର ସ୍ୱରୂପ ଓ ଗତି ନେଇ ଏକକ ପ୍ରତୀତି ନାହିଁ । ସେଗୁଡିକର ତୁଳନାତ୍ମକ ଅଧ୍ୟୟନରୁ ସେମାନେ କିପରି ପରସ୍ପର ବିରୋଧୀ ତାହା ଜଣାପଡେ ।

ଯେଉଁ ଧର୍ମମାନଙ୍କରେ ପୁନର୍ଜନ୍ମ ବିଶ୍ୱାସ ରହିଛି ସେଠିକାର ସମାଜରେ ସମୟେ ସମୟେ ଜାତିସ୍ମରମାନଙ୍କ ବିଷୟରେ ସମ୍ବାଦ ପ୍ରକାଶ ପାଏ । ଗୋଟିଏ ଛୋଟ ପିଲା ତାର ପୂର୍ବଜନ୍ମର ବୃତ୍ତାନ୍ତ କହିପାରୁଛି । ଏପରିକି କେତେକ ବ୍ୟକ୍ତି ଏ ସଂକ୍ରାନ୍ତରେ ବହି ମଧ୍ୟ ଲେଖି ପୁନର୍ଜନ୍ମବାଦକୁ ସ୍ୱୀକାର କରିଛନ୍ତି । ବେଳେବେଳେ ସମ୍ବାଦପତ୍ର ଓ ପତ୍ର ପତ୍ରିକାରେ ଏସବୁ ନେଇ ବିବରଣୀ ପ୍ରକାଶ ପାଏ । ଏପରିକି ସମ୍ବାଦ ପ୍ରକାଶ ପାଏ ଯେ ଗୋଟିଏ ଶିଶୁ ତାର ପୂର୍ବ ଜନ୍ମର ଜୀବନ ବୃତ୍ତାନ୍ତ କହିପାରୁଛି ଓ ପରୀକ୍ଷାପରେ ତାହା ସତ୍ୟ ଜଣାପଡିଛି । ଏହି ସମ୍ବାଦ ଗୁଡିକ ସ୍ପର୍ଶକାତର ଓ ଭାବୋଦ୍ଦୀପକ ହୋଇଥାଏ ।

ସେହିପରି ମୃତ ବ୍ୟକ୍ତିର ଆତ୍ମା ଜୀବିତ ବ୍ୟକ୍ତିର ଶରୀରରେ ପ୍ରବେଶ କରିବାର ବିଶ୍ୱାସ ବିଭିନ୍ନ ସମାଜରେ ରହିଛି । ଜଣେ ଜଣେ ବ୍ୟକ୍ତି କୌଣସି ମୃତ ବ୍ୟକ୍ତି ପରି ବ୍ୟବହାର କରିଥାନ୍ତି ଓ ସେମାନଙ୍କ ଢଙ୍ଗରେ କଥା କହନ୍ତି । ଆତ୍ମା ପ୍ରବେଶ ଯୋଗୁଁ ଜଣେ ଜାଣି ନଥିବା ଅନ୍ୟ ଭାଷା ମଧ୍ୟ କହିବାର ସମ୍ବାଦ ବେଳେବେଳେ ପ୍ରକାଶ ପାଏ । ସାଧାରଣ ବିଶ୍ୱାସରେ ଗ୍ରହଣ କରିନିଆଯାଏ ଯେ କୌଣସି ମୃତ ବ୍ୟକ୍ତିର ଆତ୍ମା ଜୀବିତ ବ୍ୟକ୍ତିର ଶରୀରରେ ପ୍ରବେଶ କରିବା ଯୋଗୁଁ ଜୀବିତ ବ୍ୟକ୍ତି ସେପରି ଅସ୍ୱାଭାବିକ ବ୍ୟବହାର ପ୍ରଦର୍ଶନ କରୁଛି । ଯଦି କୌଣସି ପିଲା ପୂର୍ବଜନ୍ମର ବୃତ୍ତାନ୍ତ କହିପାରୁଛି ତାହାକୁ ଜାତିସ୍ମର କୁହାଯିବାବେଳେ କୌଣସି ଜୀବିତ ବ୍ୟକ୍ତି ଅନ୍ୟ ଏକ ମୃତ ବ୍ୟକ୍ତି ପରି ବ୍ୟବହାର ଦେଖାଇଲେ ତାହାକୁ ଅଶରୀର ଆତ୍ମା ପ୍ରବେଶ ବୋଲି କୁହାଯାଇଛି । ଏପରିକି ସମାଜରେ ଏପରି କାହାଣୀ ମଧ୍ୟ ଅଛି ଯେ କୌଣସି ଜୀବିତ ବ୍ୟକ୍ତି ନିଜର ଶରୀରରୁ ନିଜର ଆତ୍ମାକୁ ବାହାର କରି ଏକ ମୃତ ବ୍ୟକ୍ତିର ଶରୀରରେ ପ୍ରବେଶ କରାଇ ତାହାକୁ ଜୀବିତ କରାଇଛନ୍ତି । ପୁନଶ୍ଚ ନିଜର ଲକ୍ଷ୍ୟ ହାସଲ ପରେ ନିଜର ଶରୀର ମଧ୍ୟକୁ ଫେରି ଆସିଛନ୍ତି । ଏହିସବୁ ବିଶ୍ୱାସ ବା ଘଟଣା ସମ୍ପର୍କରେ ବର୍ତ୍ତମାନ ସୁଦ୍ଧା କୌଣସି ବସ୍ତୁନିଷ୍ଠ ଆଧାର ନାହିଁ ବା ବୈଜ୍ଞାନିକ ପରୀକ୍ଷା ପଦ୍ଧତିରେ ଏସବୁ ସତ୍ୟ ବୋଲି ପ୍ରତିଷ୍ଠିତ ହୋଇନାହିଁ । ବରଂ ଏହିପରି ଘଟଣା ଯେଉଁଠି ଘଟୁଛି ବୋଲି ସମ୍ବାଦ ପ୍ରକାଶ ପାଉଛି ସେ ସବୁର ଯେଉଁ ପରୀକ୍ଷା କରାଯାଉଛି ତାହା ସମ୍ପୂର୍ଣ୍ଣ ମିଥ୍ୟା ବୋଲି ଜଣାପଡିଛି । ଆନ୍ତର୍ଜାତିକ ସ୍ତରରେ ଏସବୁ ସଂକ୍ରାନ୍ତରେ ଯେତିକି ଗବେଷଣା ହୋଇଛି ସେ ନେଇ କୌଣସି ସତ୍ୟପରକ ଦୃଷ୍ଟାନ୍ତ ମିଳିନାହିଁ ।

ମୃତ ବ୍ୟକ୍ତିର ଆତ୍ମା ଅନ୍ୟର ଶରୀରରେ ପ୍ରବେଶ କରିବା ନେଇ ନାନା ଘଟଣାକୁ କୋଭୁର ଅନୁସନ୍ଧାନ କରିଛନ୍ତି । ଜାତିସ୍ମର ଘଟଣା ଗୋଟିଏ ହେଲେ ବି କେଉଁଠି ସତ୍ୟପରକ ଭାବରେ ପ୍ରତିଷ୍ଠିତ ହୋଇନାହିଁ । ଏସବୁ ପରିପ୍ରେକ୍ଷୀରେ ସେ ଆହ୍ୱାନ ଦେଇଛନ୍ତି, ହେଲେ କେହି ବସ୍ତୁନିଷ୍ଠ ଭାବରେ କୌଣସି ଘଟଣା ଦର୍ଶାଇ ନାହାନ୍ତି । ଏହି ପୃଷ୍ଠଭୂମିରେ ଜାତିସ୍ମର ଘଟଣା ନେଇ ଅନୁସନ୍ଧାନ କରିଥିବା କେତେକ ଘଟଣା ମଧ୍ୟରୁ ଗୋଟିଏ ଘଟଣାର ବିବରଣୀ ତଳେ ଦିଆଗଲା ।

## ଜାତିସ୍ମର :

ଏପ୍ରିଲ ୧୯୭୭ରେ ଶ୍ରୀଲଙ୍କାରୁ ପ୍ରକାଶ ପାଉଥିବା 'ଦି ସନ', 'ଦି ଉଇକଏଣ୍ଡ' ଓ 'ଦି ରିଭିରେସା' ସମ୍ବାଦପତ୍ର ମାନଙ୍କରେ ଏକ ଜାତିସ୍ମର ଘଟଣା ସମ୍ପର୍କରେ ସମ୍ବାଦ ପ୍ରକାଶ ପାଇ ବେଶ୍ ଆଲୋଡନ ସୃଷ୍ଟି କରିଥିଲା । ଏପରିକି ଅନୁସନ୍ଧାନ ପରେ ଏହା ସତ୍ୟ ବୋଲି ସମ୍ବାଦରେ ଉଲ୍ଲେଖ ଥିଲା । ସମ୍ବାଦଟି ଅନୁଯାୟୀ 'ମାତର' ଟାଉନର ଫ୍ରାନସିସ କୋଦିତିଓ୍ୱାକୁ ୧୬.୪.୧୯୭୩ରେ ବାଉନ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ ।ଏହାପରେ ସେ ପୁନର୍ଜନ୍ମ ଲାଭ କରି ସେହି ଟାଉନରେ ତାଙ୍କର ଗୃହଠାରୁ ତିନି ଶହ ଗଜ ଦୂରରେ ଅନ୍ୟ ଏକ ପରିବାରରେ ଜନ୍ମ ଗ୍ରହଣ କରିଛନ୍ତି । କୋଦିତିଓ୍ୱାକୁଙ୍କର ଆତ୍ମା ତିନିବର୍ଷର ଗୋଟିଏ ବାଳକ ଦେହରେ ରହିଛି ଓ ବିଭିନ୍ନ ପରୀକ୍ଷାଦ୍ୱାରା ଏହି ପୁନର୍ଜନ୍ମ ଘଟଣାଟି ସତ୍ୟ ବୋଲି ଜଣାପଡିଛି ।' ଏହି ସମ୍ବାଦ ପ୍ରକାଶ ପରିପ୍ରେକ୍ଷୀରେ କୋଭୁରଙ୍କ ନିର୍ଦ୍ଦେଶରେ 'ଶ୍ରୀଲଙ୍କା ହେତୁବାଦୀ ସମାଜ'ର ବରିଷ୍ଠ ସଭ୍ୟ ଆମୁନିଗୋଡା ତିଳକରତ୍ନେ ଓ ତାଙ୍କର ପତ୍ନୀ ଅନୁସନ୍ଧାନ କରିବାକୁ ଯାଇଥିଲେ । ଫ୍ରାନସିସ କୋଦିତିଓ୍ୱାକୁ ଯେଉଁ ମାତର କଚେରୀରେ ଚାକିରୀ କରୁଥିଲେ ସେହି କାର୍ଯ୍ୟାଳୟର ଦୁଇଜଣ ବ୍ୟକ୍ତି ଏହି ଅନୁସନ୍ଧାନକାରୀ ଦଳରେ ମଧ୍ୟ ଥିଲେ । ୧୩.୫.୭୭ଦିନ ଏକ ପାଞ୍ଚ ଜଣିଆଁ ଅନୁସନ୍ଧାନକାରୀ ଦଳ ତିଳକରତ୍ନେଙ୍କ ନେତୃତ୍ୱରେ ମାତରକୁ ଯାଇଥିଲେ । ସେମାନେ ଫ୍ରାନସିସ କୋଦିତିଓ୍ୱାକୁଙ୍କର ପତ୍ନୀ ସୁମନବତୀ, ପୁନର୍ଜନ୍ମ ନେଇଥିବା ବାଳକର ବାପା ଏଚ.ପି.ସୁଗତପଲ, ଫ୍ରାନସିସ କୋଦିତିଓ୍ୱାକୁଙ୍କର ବନ୍ଧୁ ଓ ସହକର୍ମୀ ଏମ.ଏ. ଗୁଣବନ୍ଥ,ଡବ୍ଲୁ.ଏ. ଆରିୟାଦଶ, ଟି.ସି.ଆମାଦାରୁ ଓ ମହିନ୍ଦ୍ର ରଣକର, କୋଦିତିଓ୍ୱାକୁଙ୍କର ଛ'ଟି ସନ୍ତାନ ମଧ୍ୟରୁ ତିନିଜଣଙ୍କୁ ଓ ଜନ୍ମ ନେଇଥିବା ବାଳକକୁ ସାକ୍ଷାତ କରି ବିଭିନ୍ନ ତଥ୍ୟ ସଂଗ୍ରହ କରିଥିଲେ । ସେତେବେଳେ ସେ ବାଳକଟିର ବୟସ ତିନି ବର୍ଷ ଛ'ମାସ ହୋଇଥିଲା । କୋଦିତିଓ୍ୱାକୁଙ୍କ ମୃତ୍ୟୁର ସାତ ମାସ ପରେ ବାଳକଟି ଜନ୍ମ ହୋଇଥିବା ଅନୁସନ୍ଧାନରୁ ଜଣାପଡିଲା ।

ବାଳକଟିକୁ କେତେକ କଥା ପଚାରି ତାକୁ ସାଥୀରେ ନେଇ ଅନୁସନ୍ଧାନକାରୀ ଦଳ କୋଦିତିଓ୍ୱାକୁ ଚାକିରୀ କରୁଥିବା କଚେରୀ ଅଫିସ ଏବଂ ରହୁଥିବା ଘରକୁ ଗଲେ । ପିଲାଟି ବହୁବାର ବିଭିନ୍ନ ଦଳ ସହ କୋଦିତିଓ୍ୱାକୁଙ୍କ ଘରକୁ ଯାଇଥିବାରୁ ସେ ସ୍ଥାନ

ସହ ବେଶ୍ ପରିଚିତ ଥିଲା । ତଥାପି ପିଲାଟିକୁ ଖୁସି କରିବାକୁ ତିଲକରତ୍ନେ ଓ ତାଙ୍କର ପତ୍ନୀ ଅଙ୍ଗୁର ଓ ଖେଳନା ଦେଇଥିଲେ । ଏ ଉଭୟ ସ୍ଥାନକୁ ପିଲାଟିକୁ ନେବାବେଳେ ତାର ବାପା ମଧ୍ୟ ଯାଇଥିଲେ । ପିଲାଟିକୁ ଯେଉଁ ପ୍ରଶ୍ନ କରିଥିଲେ ଓ ପିଲାଟି ଯେଉଁ ଉତ୍ତର ଦେଇଥିଲା ତାହା ସେମାନେ ଟେପ୍ କରି ଆଣିଥିଲେ ଓ ତାହା ଆବଶ୍ୟକ ସ୍ଥଳେ ସେମାନଙ୍କ ମନ୍ତବ୍ୟ ସହ ତଳେ ଦିଆଗଲା ।

ପ୍ରଶ୍ନ - ତୁମର ନାମ କ'ଣ ?
ଉତ୍ତର - ଫ୍ରାନସିସ କୋଦିତିଓ୍ୱାକୁ ।
ପ୍ରଶ୍ନ - ତୁମର ବୟସ କେତେ ?
ଉତ୍ତର - ୪୯ (କୋଦିତିଓ୍ୱାକୁ ୫୨ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ ଓ ପିଲାଟିର ବୟସ ୩ ବର୍ଷ ୬ ମାସ ଥିଲା)
ପ୍ରଶ୍ନ - ତୁମେ ବିବାହ କରିଛ ?
ଉତ୍ତର - ହଁ ।
ପ୍ରଶ୍ନ - ତୁମର ବୟସ ୪୯ ବର୍ଷ ବୋଲି ତୁମେ କିପରି ଜାଣୁଛ ?
ଉତ୍ତର - ମୁଁ ଜାଣି ନାହିଁ ।
ପ୍ରଶ୍ନ - ତୁମେ କ'ଣ ପାଠ ପଢିଥିଲ ?
ଉତ୍ତର - ମୁଁ ଜାଣି ନାହିଁ ।
ପ୍ରଶ୍ନ - ତୁମର ପିଲାପିଲି ଅଛନ୍ତି ?
ଉତ୍ତର - ହଁ ।
ପ୍ରଶ୍ନ - ତୁମର ବେଶି ପୁଅ ନା ବେଶି ଝିଅ ?
ଉତ୍ତର - ଝିଅ ।
ପ୍ରଶ୍ନ - ତୁମର କେତୋଟି ପୁଅ ?
ଉତ୍ତର - ଗୁଡିଏ ।
ପ୍ରଶ୍ନ - ସେମାନଙ୍କର ନାମ କହିବ କି ?
ଉତ୍ତର - ସୁସିଆ, ପାତିଆ ।
ପ୍ରଶ୍ନ - ସାନ ପୁଅ କିଏ ?
ଉତ୍ତର - ମୁଁ ଜାଣିନାହିଁ ।

ପ୍ରଶ୍ନ - ତୁମ ସ୍ତ୍ରୀଙ୍କର ନାମ କ'ଣ ?
ଉତ୍ତର - ମୁଁ ଜାଣିନାହିଁ ।
ପ୍ରଶ୍ନ - ତୁମେ କ'ଣ ଚାକିରୀ କରୁଥିଲ ?
ଉତ୍ତର - ମୁ ଜାଣିନାହିଁ, ପରେ କହିବି ।
ପ୍ରଶ୍ନ - ତୁମ ମା'ଙ୍କର ନାମ କ'ଣ ?
ଉତ୍ତର - ଏଭେଲିନ୍ ଓ୍ୱାଡିସିଂହା (ଏହା ଥିଲା ପିଲାର ମା'ର ନାମ)
ପ୍ରଶ୍ନ - ତୁମେ ଦରମା ପାଇଲେ କ'ଣ କର ?
ଉତ୍ତର - ମୁଁ ହଜାଇ ଦିଏ ।
ପ୍ରଶ୍ନ - ତୁମେ ପ୍ରତିଦିନ କିପରି ଅଫିସକୁ ଯାଅ ?
ଉତ୍ତର - ମୁଁ ମୋ ମଟର ସାଇକେଲରେ ଯାଏ ।
ପ୍ରଶ୍ନ - ତୁମର କେଉଁ ମଟରସାଇକେଲ ଥିଲା ?
ଉତ୍ତର - ମୁଁ ଜାଣି ନାହିଁ, ପରେ କହିବି ।
ପ୍ରଶ୍ନ - ତୁମେ କେଉଁ ସ୍କୁଲରେ ପଢୁଥିଲେ ?
ଉତ୍ତର - ମୁ ଜାଣିନାହିଁ । ମୁଁ ପରେ କହିବି ।
ପ୍ରଶ୍ନ - ତୁମେ କ'ଣ ପିନ୍ଧୁଥିଲ ?
ଉତ୍ତର - ବେଲ୍ ବଟମ ।
ପ୍ରଶ୍ନ - ସେତେବେଳେ ତୁମେ କ'ଣ ଖାଇବାକୁ ଭଲ ପାଉଥିଲ ?
ଉତ୍ତର - ଅଙ୍ଗୁର ।
ପ୍ରଶ୍ନ - ଫ୍ରାନସିସ କୋଦିତିଓ୍ୱାକୁ ବାପାଙ୍କର ନାମ କ'ଣ ଥିଲା ?
ଉତ୍ତର - ମୁଁ ଜାଣି ନାହିଁ ।
ପ୍ରଶ୍ନ - ତୁମେ ପୂର୍ବ ଜନ୍ମରେ କ'ଣ ପିଇବାକୁ ଭଲ ପାଉଥିଲେ ?
ଉତ୍ତର - ମଦ ।
ପ୍ରଶ୍ନ - ମଦ ପିଇବାକୁ କେଉଁଠୁ ଟଙ୍କା ଆଣୁଥିଲ ?
ଉତ୍ତର - ଲୋକମାନେ ମୋତେ ଟଙ୍କା ଦେଉଥିଲେ ।
ପ୍ରଶ୍ନ - ତୁମେ କେଉଁମାନଙ୍କ ସହ ଏକାଠି ମଦ ପିଉଥିଲ ?
ଉତ୍ତର - ମୁଁ ଜାଣିନାହିଁ ।
ପ୍ରଶ୍ନ - କଚେରୀରେ ତୁମର ସାଙ୍ଗ ଥିଲେ ?

ଉତ୍ତର - ହଁ ।
ପ୍ରଶ୍ନ - ତୁମ ସାଙ୍ଗମାନଙ୍କର ନାମ କ'ଣ ?
ଉତ୍ତର - ମୁଁ ଜାଣି ନାହିଁ । ମୁଁ ପରେ କହିବି ।
ପ୍ରଶ୍ନ - କଚେରୀରେ ତୁମର ସବୁଠାରୁ ପ୍ରିୟ ସାଙ୍ଗ କିଏ ଥିଲେ ?
ଉତ୍ତର - ମୁଁ ଜାଣି ନାହିଁ । ମୁଁ ପରେ କହିବି ।
ପ୍ରଶ୍ନ - ଫ୍ରାନସିସ କୋଦିତିଓ୍ୱାକୁଙ୍କର ଧର୍ମ କ'ଣ ଥିଲା ?
ଉତ୍ତର - ମୁଁ ଜାଣି ନାହିଁ ।
ପ୍ରଶ୍ନ - ଫ୍ରାନସିସ କୋଦିତିଓ୍ୱାକୁ ସ୍ତ୍ରୀଙ୍କର ନାମ କ'ଣ ଥିଲା ?
ଉତ୍ତର - ସୁମନବତୀ ।

ଅନୁସନ୍ଧାନକାରୀ ଦଳ ଫ୍ରାନସିସ କୋଦିତିଓ୍ୱାକୁଙ୍କ ଘରକୁ ପିଲାଟିକୁ ସାଥୀରେ ଧରି ଆସିଲେ । ପିଲାଟି ବହୁବାର ଏହା ପୂର୍ବରୁ ସେଠାକୁ ଆସିଥିଲା । ସୁମନବତୀ ଓ ତାଙ୍କର ଛ'ଟି ପିଲା ଭିତରୁ ପ୍ରଥମ ତିନିଜଣ ପୁଅ ଓ ପର ତିନି ଜଣ ଝିଅ ଥିଲେ । ସୁମନବତୀଙ୍କର ବୟସ ପଚାଶ ଥିଲା । ସେଠାରେ ଫ୍ରାନସିସ କୋଦିତିଓ୍ୱାକୁଙ୍କର ଏକ ଗ୍ରୁପ୍ ଫଟୋ ପିଲାଟିକୁ ଦେଖାଗଲା । ସେ ସୁମନବତୀଙ୍କୁ ଫଟୋରୁ ଚିହ୍ନାଇଲା, ଅଥଚ ଫ୍ରାନସିସ କୋଦିତିଓ୍ୱାକୁ ବା ପରିବାରର ଅନ୍ୟାମାନଙ୍କୁ ଚିହ୍ନାଇ ପାରିଲା ନାହିଁ । ସୁମନବତୀ ଓ କୋଦିତିଓ୍ୱାକୁ ପିଲାମାନଙ୍କର ଏକ ଗ୍ରୁପ୍ ଫଟୋ ଦେଖାଇବାରୁ ସେ ସେଥିରୁ କୌଣସି ପୁଅ ବା ଝିଅର ନାମ କହିପାରିଲା ନାହିଁ ।

କୋଦିତିଓ୍ୱାକୁଙ୍କର ଜଣେ ସାଙ୍ଗ ଧର୍ମଦାଶା ଯେ ତାଙ୍କ ସହିତ ଏକ ବର୍ଷ ରହିଥିଲେ ତାଙ୍କର ଏକ ଫଟୋ ଦେଖାଇବାରୁ ପିଲାଟି ସେ କିଏ କହିପାରିଲା ନାହିଁ । କଚେରୀରେ କୋଦିତିଓ୍ୱାକୁଙ୍କର ଜଣେ ସହକର୍ମୀଙ୍କର ଅବସର ସମୟରେ ଷ୍ଟାଫମାନଙ୍କର ଏକ ଫଟୋ ନିଆଯାଇଥିଲା, ପିଲାଟିକୁ ତାହା ଦେଖାଇବାରୁ ସେ କାହାକୁ ହେଲେ ଓ ଏପରିକି କୋଦିତିଓ୍ୱାକୁଙ୍କୁ ମଧ୍ୟ ଚିହ୍ନଟ କରିପାରିନଥିଲା । ଏହି ଫଟୋଟି ଏହା ପୂର୍ବରୁ ପିଲାଟି କେବେ ଦେଖିନଥିଲା । କୋଦିତିଓ୍ୱାକୁଙ୍କ ସହ ଏକା ଅଫିସରେ କୋଡିଏ ବର୍ଷ ଧରି ଚାକିରୀ କରିଥିବା ଗୁଣବନ୍ତୁଙ୍କୁ ପିଲାଟି ଚିହ୍ନି ପାରି ନଥିଲା ବା ସେ କିଏ କିଛି କହିପାରିନଥିଲା । ଅଫିସରେ ସହକର୍ମୀମାନଙ୍କ ସହ ଫ୍ରାନସିସ କୋଦିତିଓ୍ୱାକୁ କଟରଗାମା ଓ ଆଦାମ ପର୍ବତ ଶିଖରକୁ ଏକ ତୀର୍ଥ ଯାତ୍ରାରେ

ଯାଇଥିଲେ, କିନ୍ତୁ ସେ ସମ୍ବନ୍ଧରେ ପିଲାଟି କିଛି ମନେ ପକାଇ ପାରିଲା ନାହିଁ । କୋଦିତିଓ୍ୱାକୁଙ୍କର ଅନ୍ତରଙ୍ଗ ବନ୍ଧୁ ଡବ୍ଲୁ.ଡବ୍ଲୁ. ଆରିଦଶାଙ୍କ ଘରକୁ ତାକୁ ନିଆଯିବାପରେ ସେ ଆରିଦଶାଙ୍କୁ ଜାଣିପାରି ନଥିଲା । କୋଦିତିଓ୍ୱାକୁ ପ୍ରତ୍ୟେକ ଦିନ ଟି.ଜି. ଆମାଦୋରୁଙ୍କ ସହିତ ଏକାଠି ବସି କ୍ଲବରେ ମଦ୍ୟପାନ କରୁଥିଲେ, କିନ୍ତୁ ଆମାଦୋରୁଙ୍କୁ ସିଏ ଚିହ୍ନି ପାରିନଥିଲା ।

ସମ୍ବାଦପତ୍ରରେ ପ୍ରକାଶ ପାଇଥିବା ସମ୍ବାଦରୁ ପୂର୍ବଜନ୍ମର କେତେ ଘଟଣାକୁ ସ୍ମରଣ କରିପାରୁଛି ବା ଅତି ଆପଣାର ଲୋକମାନଙ୍କୁ ଚିହ୍ନି ପାରୁଛି କି ନାହିଁ ପରୀକ୍ଷା କରିବା ଏହି ଅନୁସନ୍ଧାନର ଉଦ୍ଦେଶ୍ୟ ଥିଲା । ସମ୍ବାଦ ପତ୍ର ଗୁଡିକରେ ପ୍ରକାଶ ପାଇଥିବା ସମ୍ବାଦ "ପିଲାଟି ତାର ପୂର୍ବଜନ୍ମର ସ୍ମୃତିକୁ ମନେ ରଖିଛି" ତେବେ ପରୀକ୍ଷାଦ୍ୱାରା ଅନ୍ତତଃ ଅଧାଅଧି ଘଟଣାକୁ ସେ କହିପାରିଥାନ୍ତା । କିନ୍ତୁ ପ୍ରଶ୍ନ, ଚିହ୍ନଟ ଓ ଫଟୋ ଇତ୍ୟାଦି ଦେଖାଇବା ସତୁରିଟି ଘଟଣାରୁ ପିଲାଟି ମାତ୍ର ଚାରଟି ଉତ୍ତର ଠିକ୍ ଦେଇଥିଲା । ଆଉ ଚାରି/ ପାଞ୍ଚଟି କ୍ଷେତ୍ରରେ ହୁଏତ ତାର ଉତ୍ତରକୁ ଅଧାଅଧି ଠିକ୍ ବୋଲି ଗ୍ରହଣ କରାଯାଇପାରେ, କାରଣ ପ୍ରଶ୍ନ ଗୁଡିକ ସମ୍ଭବତଃ ସେ ବୋଧଗମ୍ୟ କରିପାରିନଥିଲା । କିନ୍ତୁ ପ୍ରଶ୍ନ ଓ ଚିହ୍ନଟ ମିଶି ୭୦ଟି ଘଟଣାରୁ ଷାଠିଏଟି ଘଟଣାରେ ପିଲାଟି ଭୁଲ ଉତ୍ତର ଦେଇଥିଲା ବା ବିଫଳ ହୋଇଥିଲା । ଅନେକ ପ୍ରଶ୍ନରେ ସେ ଘାବୁରି ଯାଉଥିଲା ଓ ତାକୁ କୁହା ଯାଇଥିବା "ମୁଁ ପରେ କହିବି" କହୁଥିଲା । ଫ୍ରାନସିସ କୋଦିତିଓ୍ୱାକୁଙ୍କ ମୃତ୍ୟୁର ସାତ ମାସ ପରେ ପିଲାଟି ଜନ୍ମ ହୋଇଥିଲା, ପିଲାଟିର ଜନ୍ମ ଅପରିପକ୍ୱ ସମୟରେ ହୋଇନଥିଲା । ଯେଉଁ ସବୁ ଘଟଣା ବିଷୟରେ କିଛି କୁହାଯାଇ ନଥିଲା ସେ କ୍ଷେତ୍ରରେ ସେ କିଛି ଜାଣିପାରୁନଥିଲା । ଅଫିସରେ ଜଣେ ସହକର୍ମୀଙ୍କର ଅବସର ସମୟରେ ଉଠାଯାଇଥିବା ଫଟୋ ଯେଉଁଥିରେ କୋଦିତିଓ୍ୱାକୁ ଓ ତାଙ୍କର ସହକର୍ମୀମାନେ ଥିଲେ, ତାହା ପିଲାଟି ପୂର୍ବରୁ କେବେ ଦେଖି ନଥିବା ଯୋଗୁଁ ସେ କାହାକୁ ଓ ଏପରିକି କୋଦିତିଓ୍ୱାକୁଙ୍କୁ ମଧ୍ୟ ଚିହ୍ନି ପାରି ନଥିଲା । ଫ୍ରାନସିସ କୋଦିତିଓ୍ୱାକୁଙ୍କ ଘରକୁ ବାରମ୍ବାର ଯିବା ଫଳରେ ସେଠାରେ ତାଙ୍କ ପତ୍ନୀ ସୁମନବତୀଙ୍କୁ ଦେଖି ସେ ପରିବାରର ଫଟୋରୁ ସୁମନବତୀଙ୍କୁ ହିଁ ଚିହ୍ନି ପାରିଥିଲା । ଏହି ଅନୁସନ୍ଧାନ ପରେ ସମଗ୍ର ଘଟଣାଟି ଯେ ଏକ ମନ ଗଢା କାହାଣୀ ଓ ଠକାମି ଥିଲା, ତାହା ସ୍ପଷ୍ଟ ହୋଇଥିଲା ।

## ମୃତ ଲୋକର ଆତ୍ମା ସହ ସମ୍ପର୍କ ସ୍ଥାପନ :

ପାନଦୁରାର ସାଇମନ ରୋଦ୍ରିଗୋ ଜାଫନାରେ ଜିଲ୍ଲା ଜଜ୍ ଥାନ୍ତି । ଆତ୍ମା ଓ ଆଧ୍ୟାତ୍ମିକତା ଉପରେ ସେ ଅନେକ ପଢିଛନ୍ତି । ସେ ବୌଦ୍ଧଧର୍ମାବଲମ୍ବୀ । ରୋଦ୍ରିଗୋଙ୍କର ପତ୍ନୀ ଅସମୟରେ ଓ ଅଳ୍ପ ବୟସରେ ମରିଯିବା ପରେ ମୃତ ପତ୍ନୀଙ୍କର ସ୍ମୃତି ଓ ଚିନ୍ତାରେ ସେ ଭାଙ୍ଗି ପଡିଥିଲେ । ଏହାପରେ ସେ ଆଧ୍ୟାତ୍ମିକ ଗ୍ରନ୍ଥ ପଢିବାରେ ଆଗ୍ରହୀ ହେଲେ । ଜାଫନା ସାଧାରଣ ପାଠାଗାରରେ ଥିବା ଆଧ୍ୟାତ୍ମିକ ପୁସ୍ତକ ମାନଙ୍କୁ ନେଇ ସେ ପଢିବାକୁ ଲାଗିଲେ । ବିଶେଷକରି ମାୟର୍ସ, ସୋଲ, ସିଦଓ୍ୱିଗ, ପୋଡମର, ଆଲେକଜାଣ୍ଡର କାନନ, ହାରିପ୍ରାଇସ ଦାଉଲେସ ଇତ୍ୟାଦି ଲେଖକମାନଙ୍କର ଆଧ୍ୟାତ୍ମିକତା ଉପରେ ଥିବା ପୁସ୍ତକ ଭିତରେ ସେ ସର୍ବଦା ମଗ୍ନ ରହୁଥିଲେ । ଏମାନେ ସମସ୍ତେ ଖ୍ରୀଷ୍ଟିଆନ ଲେଖକ ହୋଇଥିବାରୁ ରୋଦ୍ରିଗୋ ନିଜ ଧର୍ମର ଅନାତ୍ମବାଦ ପ୍ରତୀତିକୁ ପରିହାର କରି ଖ୍ରୀଷ୍ଟିଆନ ଧର୍ମର ଆତ୍ମା ପ୍ରତୀତିକୁ ଗ୍ରହଣ କଲେ । କୋଭୁର ସେହି ସମୟରେ ଜାଫନା ସେଣ୍ଟ୍ରାଲ କଲେଜରେ ଅଧ୍ୟାପକ ଥା'ନ୍ତି ଓ ସେ ବି ଆଧ୍ୟାତ୍ମିକ ଲେଖକମାନଙ୍କର ଅନେକ ବହି ପଢିଥାନ୍ତି । ଏହା ଭିତରେ ରୋଦ୍ରିଗୋ ଓ କୋଭୁରଙ୍କ ଭିତରେ ସୁସମ୍ପର୍କ ଗଢି ଉଠିଲା । ସେମାନେ ଏହି ଲେଖକ ମାନଙ୍କର ବିଚାର ଉପରେ ନାନା ଆଲୋଚନା ଓ ତର୍କ ମଧ୍ୟ କରୁଥିଲେ ।

୧୯୪୧ ନଭେମ୍ବର ୫ରେ ରୋଦ୍ରିଗୋ ଉତ୍‌ଫୁଲ୍ଲିତ ହୋଇ କହିଲେ ଯେ ସେ ଏବେ ତାଙ୍କ ମୃତ ପତ୍ନୀଙ୍କ ସହିତ ସମ୍ବନ୍ଧ ସ୍ଥାପନ କରି ତାଙ୍କ ସହ ପ୍ରାୟ ଏକ ଘଣ୍ଟା କଥା ହୋଇଛନ୍ତି । ଏହି କଥାବାର୍ତ୍ତା ମଧ୍ୟରେ ତାଙ୍କର ପତ୍ନୀ ତାଙ୍କୁ ଏପରି କେତେକ ବ୍ୟକ୍ତିଗତ କଥା ଜଣାଇଛନ୍ତି ଯାହାକି ସେ ବଞ୍ଚିଥିବାବେଳେ ପ୍ରକାଶ କରିନଥିଲେ । ଆଗାମୀ ରବିବାର ଦିନ ସେ ତାଙ୍କ ପତ୍ନୀଙ୍କ ସହିତ ଆଉଥରେ କଥାହେବାକୁ ସ୍ଥିର କରିଛନ୍ତି । ଏହା କହିବାବେଳେ ସେ ଅତ୍ୟନ୍ତ ଭାବପ୍ରବଣ ହୋଇ ପତ୍ନୀଙ୍କର ସ୍ମୃତିରେ ଛଳ ଛଳ ହୋଇଗଲେ । କିଛି ସମୟ ନୀରବ ରହିବା ପରେ ସେ କହିବାକୁ ଲାଗିଲେ ଯେ ମଣିପେଠାରେ ଥିବା ମିଃ ଏକ୍ସଙ୍କ (ନାମକୁ ଗୋପନ ରଖିଛନ୍ତି) ସହ ସେ ସମ୍ପର୍କ ସ୍ଥାପନ କଲେ । ଏକ୍ସ ଏପରି ଶକ୍ତି ହାସଲ କରିଛନ୍ତି ଯଦ୍ୱାରା କୌଣସି ମୃତ ବ୍ୟକ୍ତିର ଆତ୍ମାକୁ ସେ ତାଙ୍କର ଶରୀର ମଧ୍ୟରେ ଅବତରଣ କରାଇପାରନ୍ତି । ମୃତବ୍ୟକ୍ତି ଆତ୍ମାର ମାଧ୍ୟମ ହୋଇ ରୋଦ୍ରିଗୋଙ୍କର ସ୍ୱର୍ଗତ ପତ୍ନୀଙ୍କର ଆତ୍ମାକୁ ଏକ୍ସ

ତାଙ୍କ ଭିତରେ ଅବତରଣ କରାଇବା ପରେ ରୋଡ୍ରିଗୋ ତାଙ୍କ ପତ୍ନୀଙ୍କ ସହ କଥା ହୋଇପାରିଲେ । କେହି ଚାହିଁଲେ ଏକ୍ସଙ୍କ ମାଧ୍ୟମରେ କୌଣସି ମୃତ ଆତ୍ମାକୁ ଡାକି କଥା ହୋଇପାରିବେ । ରୋଡ୍ରିଗୋଙ୍କ ପାଖରୁ ଏହା ଶୁଣିବାପରେ ତାଙ୍କ ପତ୍ନୀଙ୍କ ସହିତ ପୁନଶ୍ଚ କଥାହେବା ସମୟରେ କୋଭୁର ଉପସ୍ଥିତ ରହିବାକୁ ଇଚ୍ଛାପ୍ରକାଶ କରିବାରୁ ସେ ତାଙ୍କ ପତ୍ନୀଙ୍କ ସହିତ ଗୋପନୀୟ ବ୍ୟାପାରରେ କଥାହେବାକୁ ଥିବାରୁ କୋଭୁରଙ୍କର ଉପସ୍ଥିତ ପାଇଁ ଅସମ୍ମତ ହେଲେ ।

କୋଭୁରଙ୍କ ନିମନ୍ତ୍ରଣ କ୍ରମେ ଆତ୍ମାର ଆବାହନ ପାଇଁ ମାଧ୍ୟମ ହେଉଥିବା ଏକ୍ସ ୨୨.୧୧.୧୯୪୧ରେ ତାଙ୍କୁ ତାଙ୍କର ଜାଫନା ବାସଗୃହରେ ସାକ୍ଷାତ କଲେ । କୋଭୁର ତାଙ୍କୁ ସ୍ୱାଗତ କରିବାରୁ ଏକ୍ସ କହିଲେ ଯେ ଆଧ୍ୟାତ୍ମିକତା ଉପରେ କୋଭୁରଙ୍କର ଗଭୀର ଅଧ୍ୟୟନ ସମ୍ବନ୍ଧରେ ସେ ରୋଡ୍ରିଗୋଙ୍କ ପାଖରୁ ଶୁଣିଛନ୍ତି । କୋଭୁରଙ୍କ ମୁଣ୍ଡ ଚାରିପଟେ ଏକ ଆଲୋକର ଚକ୍ର ସେ ଦେଖୁଛନ୍ତି ବୋଲି ପ୍ରକାଶ କଲେ । ତାଙ୍କ ସହ ଆଲୋଚନାରୁ କୋଭୁର ଜାଣିବାକୁ ପାଇଲେ ଯେ ସେ ଏକ ସମ୍ଭ୍ରାନ୍ତ ଖ୍ରୀଷ୍ଟିଆନ ପରିବାରରେ ଜନ୍ମ ଓ ଉଚ୍ଚ ଶିକ୍ଷିତ । ଖ୍ରୀଷ୍ଟିଆନ ମିସନାରୀ ପେଡାଗଗଙ୍କ ସଂସ୍ପର୍ଶରେ ଆସି ଯୁବକ ଅବସ୍ଥାରେ ଜଣେ ଧର୍ମଯାଜକ ହେବାକୁ ସେ ଅଭିଳାଷ ରଖିଥିଲେ । କିନ୍ତୁ ତାଙ୍କର ଭାଇ ସେହି ପନ୍ଥାରେ ଯିବାରୁ ସେ ସେଥିରୁ ନିବୃତ ହେଲେ । ଅତ୍ୟନ୍ତ ଧର୍ମପରାୟଣ ଓ ଏକ ସମ୍ମାନଜନକ ବ୍ୟକ୍ତି ଭାବରେ ସେ ସାମାଜିକ ପ୍ରତିଷ୍ଠା ଲାଭ କରିଛନ୍ତି । ତାଙ୍କ ଭିତରେ କୌଣସି ମନ୍ଦ ଉଦ୍ଦେଶ୍ୟ ନାହିଁ ।

ଏକ୍ସ ବିବାହ କରିଥିଲେ, କିନ୍ତୁ ତାଙ୍କର ପତ୍ନୀ ଗୋଟିଏ ଝିଅ ଜନ୍ମ ହେବାପରେ ୧୯୨୬ରେ ମୃତ୍ୟୁବରଣ କଲେ । ଏହାପରେ ଯଦିବା ସେ ଦ୍ୱିତୀୟବାର ବିବାହ କଲେ, ତଥାପି ତାଙ୍କ ପ୍ରଥମ ପତ୍ନୀଙ୍କର ସ୍ମୃତି ତାଙ୍କ ଭିତରେ ସର୍ବଦା ଅମଳିନ ରହିଛି । ରୋଡ୍ରିଗୋଙ୍କ ପରି ଏକ୍ସ ମଧ୍ୟ ନିଜର ପ୍ରଥମ ପତ୍ନୀଙ୍କୁ ହରାଇବା ପରେ ଆଧ୍ୟାତ୍ମିକ ସାହିତ୍ୟ ପଢିବାରେ ପୂର୍ଣ୍ଣ ମନନିବେଶ କଲେ । ଏହାପରେ ସେ ଲଣ୍ଡନସ୍ଥିତ ଆତ୍ମା-ବିଷୟକ ଗବେଷଣା ପ୍ରତିଷ୍ଠାନର ସଭ୍ୟ ହେବା ସହିତ ସେହି ଅନୁଷ୍ଠାନର ପତ୍ରିକା ନିୟମିତ ପଢୁଥିଲେ । ତାଙ୍କର ପତ୍ନୀ ଓ ଶ୍ୱଶୁରଙ୍କର ମୃତ୍ୟୁର ଅନେକ ବର୍ଷ ପରେ "ମୃତ ବ୍ୟକ୍ତି ଆତ୍ମାର ଫଟୋ" ଉଠାଇବା ଇଂଲଣ୍ଡର ଏକ ଫଟୋଗ୍ରାଫରଙ୍କଠାରୁ ସେ ନିଜ ପତ୍ନୀ ଓ ଶ୍ୱଶୁରଙ୍କର ଫଟୋ ସଂଗ୍ରହ କରିଥିଲେ । ସେହି ଫଟୋର ବୈଧତା

ନେଇ ତାଙ୍କର ସନ୍ଦେହ ଥିଲେ ବି ସେ ଆବଶ୍ୟକ ସ୍ଥଳେ ତାହା ପ୍ରଦର୍ଶନ କରିବାକୁ ସେସବୁକୁ ଯତ୍ନର ସହ ରଖିଥିଲେ । କଳାଦାଗରେ ଅଙ୍କିତ ସେହି ଅସ୍ପଷ୍ଟ ଫଟୋ ଗୁଡିକର ବାସ୍ତବ ଫଟୋ ସହିତ କିଛି ସାମଞ୍ଜସ୍ୟ ନଥିଲା ।

ସେ ପ୍ରଥମେ ୧୯୩୪ରେ ତାଙ୍କର ମୃତ ପତ୍ନୀଙ୍କର ଆତ୍ମା ସହିତ ସମ୍ବନ୍ଧ ସ୍ଥାପନ କଲେ ଓ ତା'ପରେ ବହୁବାର ପତ୍ନୀଙ୍କ ସହିତ କଥା ହୋଇଛନ୍ତି । ଯେକୌଣସି ଗୁରୁତ୍ୱପୂର୍ଣ୍ଣ ବ୍ୟାପାରରେ ସେ ପତ୍ନୀଙ୍କ ଆତ୍ମାକୁ ଆବାହନ କରି ତାଙ୍କର ପରାମର୍ଶ ନେଉଥିଲେ । ଯଦିବା ସେହି ପରାମର୍ଶରେ ଭୁଲର ପରିମାଣ ଅଧିକ ଥିଲା, ତଥାପି କେତେକ କ୍ଷେତ୍ରରେ ସେହି ପରାମର୍ଶ ସଂପୂର୍ଣ୍ଣ ଠିକ୍ ହୋଇଥିବା ସେ ପ୍ରକାଶ କଲେ । ଏପରିକି ତାଙ୍କ ପ୍ରଥମ ଝିଅଙ୍କର ବିବାହ ପତ୍ନୀଙ୍କ ଆତ୍ମା ସହିତ ପରାମର୍ଶ କରି ସ୍ଥିର କରିଥିଲେ । ସେ ଏକଥା ମଧ୍ୟ କହିଲେ ଯେ ସେ ଏପରି ଏକାଗ୍ର ଚିତ୍ତରେ ତାଙ୍କର ପତ୍ନୀଙ୍କ ଆତ୍ମାଠାରେ ମନ ନିବେଶ କରିପାରୁଛନ୍ତି ଯଦ୍ୱାରା ଯେକୌଣସି ସମୟରେ ଚାହିଁଲେ ସେ ତାଙ୍କର ପତ୍ନୀଙ୍କର ଆତ୍ମାକୁ ଆବାହନ କରିପାରିବେ ।

ତାଙ୍କଠାରୁ କୋଭୁର ଏସମସ୍ତ ଶୁଣିବାପରେ ଏକ୍ସ ତାଙ୍କ ପତ୍ନୀଙ୍କର ଆତ୍ମାକୁ ଆବାହନ କରି କଥା ହେବାକୁ ଅନୁରୋଧ କଲେ । ଏଥିପାଇଁ ଏକ ନିରୋଳା ସ୍ଥାନ ଆବଶ୍ୟକ ଥିବା ଜାଣି କୋଭୁର ତାଙ୍କୁ ତାଙ୍କର ଅଧ୍ୟୟନ କକ୍ଷକୁ ନେଲେ । ଏକ୍ସ ଏକ ଚଉକିରେ ବସି କକ୍ଷର ସମସ୍ତ ଝରକାକୁ ବନ୍ଦ କରିଦେବାକୁ କହିଲେ । ଦୁଇ ମିନିଟ୍ ସମ୍ମୁଖସ୍ଥ କାନ୍ଥକୁ ଚାହିଁ ସେ ଏକ ଆତ୍ମ-ବିସ୍ମୃତ ବା ସମାଧିସ୍ଥ ଅବସ୍ଥାକୁ ଚାଲି ଆସିଲେ । ଏହାପରେ କହିବାକୁ ଲାଗିଲେ, "ମୁଁ ବର୍ତ୍ତମାନ ମୋର ପତ୍ନୀଙ୍କୁ ସ୍ପଷ୍ଟ ଭାବରେ ଦେଖିପାରୁଛି । ସେ ସେଠାରେ ଦଣ୍ଡାୟମାନ ହୋଇ ମୋତେ ଚାହିଁଛନ୍ତି ।" ସେହି କାନ୍ଥରେ ଝୁଲୁଥିବା କୋଭୁରଙ୍କ ବାପାଙ୍କର ଏକ ବଡ ଫଟୋଚିତ୍ରକୁ ଚାହିଁ ଏକ୍ସ ଏହା କହିଲେ । ତାଙ୍କଠାରୁ ଏହା ଶୁଣି କୋଭୁର ପ୍ରଶ୍ନ କଲେ ଯେ କାନ୍ଥରେ ଝୁଲୁଥିବା ଫଟୋଟିକୁ ସେ ଦେଖୁଛନ୍ତି କି ନାହିଁ ? ସେ କହିବାକୁ ଲାଗିଲେ, "ସେଠାରେ କାନ୍ଥ କାହିଁ ? ମୁଁ ସେଠାରେ ବିସ୍ତୃତ ନୀଳ ଆକାଶର ବାଦଲ ମଧ୍ୟରେ ମୋର ପତ୍ନୀ ଛିଡା ହେବା ଦେଖୁଛି ।" କୋଭୁର କାନ୍ଥ ପର୍ଯ୍ୟନ୍ତ ଚାଲିକରି ଆସିଲେ ଓ ତାଙ୍କ ବାପାଙ୍କର ଫଟୋଚିତ୍ରକୁ ଦେଖାଇ ତାହା କ'ଣ ତାଙ୍କ ପତ୍ନୀଙ୍କର ଆତ୍ମା ବୋଲି ପ୍ରଶ୍ନ କରିବାରୁ ସେ କହିବାକୁ ଲାଗିଲେ, "ହଁ, ସେ ହେଉଛନ୍ତି ମୋର ପତ୍ନୀ । କିନ୍ତୁ ତାଙ୍କୁ ସ୍ପର୍ଶ କରନ୍ତୁ

ନାହିଁ । ଆପଣ ତାଙ୍କୁ ପାର୍ଥିବ ହାତରେ ଛୁଇଁଲେ ସେ ଚାଲିଯିବେ ।" ଏହାପରେ ତାଙ୍କ ପତ୍ନୀ ତାଙ୍କର ଯେକୌଣସି ପ୍ରଶ୍ନର ଉତ୍ତର ଦେଇପାରିବେ ବୋଲି କହିଲେ । କୋଭୁରଙ୍କର କେତେକ ପ୍ରଶ୍ନ ଶୁଣି ପତ୍ନୀଙ୍କ ପାଖରୁ ପାଉଥିବା ଉତ୍ତର ଏକ୍କ ଦେଇଥିଲେ ।

ଆତ୍ମା ପାଖରୁ ଆସିଥିବା ସେହି ଉତ୍ତର ଗୁଡିକ ହେଲା, "ଖ୍ରୀଷ୍ଟଧର୍ମ ହିଁ ସବୁଠାରୁ ଶ୍ରେଷ୍ଠ ଧର୍ମ । ପୁନର୍ଜନ୍ମ ବା ଜନ୍ମାନ୍ତରବାଦ କିଛି ନାହିଁ । ଆତ୍ମାମାନଙ୍କର ସଂସାରରେ ଜନ୍ମ ପୂର୍ବରୁ ଅନ୍ୟ କିଛି ଜନ୍ମର ଜ୍ଞାନ ନଥାଏ । ମୃତ୍ୟୁ ପରେ ଆତ୍ମା 'ଆତ୍ମା ଜଗତ'ରେ ରହେ । ଆତ୍ମା ଜଗତରେ ଖାଦ୍ୟ ଓ ପାନୀୟ ମଧ୍ୟ ଥାଏ । ଆତ୍ମାମାନେ ଛୋଟ ଛୋଟ ଦଳରେ ଜଣେ ଜଣେ ଦଳପତିଙ୍କ ନେତୃତ୍ୱରେ ଦଳବଦ୍ଧ ହୋଇ ରହନ୍ତି । ପାର୍ଥିବ ଲୋକଙ୍କ ସହିତ ସମ୍ପର୍କ ସ୍ଥାପନ କରିବା କ୍ଷେତ୍ରରେ ସେମାନଙ୍କୁ ଦଳପତିଙ୍କର ଅନୁମତି ନେବାକୁ ହୁଏ । ଆତ୍ମାମାନେ ଯୌନ କାର୍ଯ୍ୟ ମଧ୍ୟ କରିଥାନ୍ତି । ମୋର ପତ୍ନୀ ମୋର ମୃତ୍ୟୁ ପରେ ମୋ ସହିତ ସ୍ତ୍ରୀ-ସ୍ୱାମୀ ସମ୍ପର୍କ ଭିତରେ ରହିବାକୁ ଚାହାନ୍ତି । ଆତ୍ମାମାନେ ଧଳା ପୋଷାକରେ ନିଜର ଶରୀରକୁ ଆବୃତ କରନ୍ତି । ମନୁଷ୍ୟେତର ଜୀବଙ୍କର ଆତ୍ମା ନାହିଁ । ଅନ୍ୟ ଗ୍ରହ ମାନଙ୍କରେ ମଣିଷ ରହିଛନ୍ତି । ବଞ୍ଚିଥିବା ବେଳେ ଜଣଙ୍କର ଯେଉଁ ଶରୀର ଥାଏ ମୃତ୍ୟୁପରେ ମର୍ତ୍ତ୍ୟରେ ଥିବା ପର୍ଯ୍ୟନ୍ତ ଆତ୍ମା ସୀୟ ଶରୀର ଧାରଣ କରେ । ମର୍ତ୍ତ୍ୟପୁର ପରେ ଏକ ଆତ୍ମାପୁର ରହିଛି । ଆତ୍ମାପୁରରୁ ସେମାନେ ଆହୁରି ଏକ ଉଚ୍ଚତର ପୁରକୁ ଯା'ନ୍ତି ଓ ଶେଷରେ ଆତ୍ମାମାନେ ସ୍ୱର୍ଗର ଈଶ୍ୱରଙ୍କ ପାଖକୁ ଯାଇଥାନ୍ତି । ଆତ୍ମାପୁରରେ ମଦ ଓ ସୋଡା ଜାତୀୟ ପାନୀୟ ମଧ୍ୟ ରହିଛି । ଆତ୍ମାମାନେ ଇଂରାଜୀ ଭାଷାରେ କଥାବାର୍ତ୍ତା ହୁଅନ୍ତି ।"

ଏହାପରେ ଏକ୍କ ପ୍ରକୃତିସ୍ଥ ହେବାରୁ ସେ ଓ କୋଭୁର ବୈଠକଖାନାକୁ ଆସିଲେ । ତାଙ୍କର ଆତ୍ମ-ବିସ୍ମୃତ ଅବସ୍ଥା ସମ୍ପର୍କରେ ତାଙ୍କୁ ପଚାରିବାରୁ ଏକ୍କ କହିଲେ ଯେ ଯେତେବେଳେ ସେ ତାଙ୍କ ପତ୍ନୀଙ୍କର ସ୍ମୃତିରେ ଏକାଗ୍ରଚିତ୍ତ ହେଉଛନ୍ତି ସେ ତାଙ୍କ ସମ୍ମୁଖରେ ଏକ ଅଦ୍‌ଭୁତ ଆଲୋକ ଓ ମୂର୍ତ୍ତି ଦେଖୁଛନ୍ତି । ସେ ଯେ କେବଳ ତାଙ୍କ ପତ୍ନୀଙ୍କ ସହିତ ଆଳାପ କରୁଛନ୍ତି ତା ନୁହଁ, ଅନ୍ୟ ଆତ୍ମାମାନଙ୍କୁ ଏକାଗ୍ର ଚିତ୍ତରେ ଆବାହନ କରି ସେମାନଙ୍କ ସହିତ ମଧ୍ୟ କଥା ହୋଇପାରୁଛନ୍ତି । ଏହି ଆତ୍ମ-ବିସ୍ମୃତି ଅବସ୍ଥା ଶେଷରେ ସେ ସାଧାରଣତଃ କ୍ଳାନ୍ତ, ଅବଶ ଓ ଶୋଷ ଅନୁଭବ କରିଥାନ୍ତି ।

ଆଧୁନିକ ମନୋବିଜ୍ଞାନ ମାନଦଣ୍ଡରେ ଏହିପ୍ରକାର ଦିବ୍ୟାନୁଭୂତିକୁ ବିଶ୍ଳେଷଣ କରିବା କଷ୍ଟକର ନୁହେଁ । ପ୍ରକୃତରେ ଏକ୍ସଙ୍କର ଏହି ଅନୁଭୂତି ସମ୍ପୂର୍ଣ୍ଣ ବ୍ୟକ୍ତିନିଷ୍ଠ । ଉଭୟ ରୋଡ୍ରିଗୋ ଓ ଏକ୍ସ ନିଜ ନିଜର ମୃତ ପତ୍ନୀଙ୍କର ଚିନ୍ତାରେ ଏକ ପ୍ରକାର ଆବିଷ୍ଟ ରହୁଥିଲେ । ଏହାଛଡା ଆଧ୍ୟାତ୍ମିକତା ଓ ଆତ୍ମାକୁ ଆବାହନ ଇତ୍ୟାଦି ଉପରେ ଅଧ୍ୟୟନରୁ ଆତ୍ମା ରହିଛି ଓ ଆତ୍ମା ସହିତ ସଂଯୋଗ ସ୍ଥାପନ କରି କଥୋପକଥନ ସମ୍ଭବ ବୋଲି ସେମାନଙ୍କର ଧାରଣା ଦୃଢ ହୋଇଥିଲା । ଯଦି ସେମାନେ ଏ କ୍ଷେତ୍ରରେ ବିଜ୍ଞାନ ସମ୍ମତ ମତ ଗୁଡିକ ସମ୍ପର୍କରେ ଜାଣିଥାନ୍ତେ ବା ଆଣ୍ଟୋନି ଫ୍ଲିଉ, କଟନର, ସନିନସ୍, ଏଡୱାର୍ଡ ରୋଜ୍ସ, ହନସ୍‌ଲେ ଇତ୍ୟାଦି ମନୋବିଜ୍ଞାନୀ ମାନଙ୍କର ବିଶ୍ଳେଷଣ ପଢୁଥାନ୍ତେ ତେବେ ସେମାନେ ନିଜ ମୃତ ପତ୍ନୀମାନଙ୍କର ସ୍ଥିତି ନଥିବା ଆତ୍ମା ସହିତ ସମ୍ବନ୍ଧ ସ୍ଥାପନ ନେଇ ଏପରି ସମୟ ବ୍ୟୟ କରୁନଥାନ୍ତେ ।

ରୋଡ୍ରିଗୋ ଓ ଏକ୍ସ ଯଦିବା ଅନ୍ୟ କ୍ଷେତ୍ରରେ ବେଶ୍ ସ୍ୱାଭାବିକ ଥିଲେ ତଥାପି "ଆତ୍ମା" ସଂକ୍ରାନ୍ତୀୟ ଭାବନା କ୍ଷେତ୍ରରେ ସେମାନଙ୍କର ବିକୃତି ଥିଲା । କେତେକ ବ୍ୟକ୍ତି ଅନ୍ୟ କ୍ଷେତ୍ରରେ ବେଶ୍ ସ୍ୱାଭାବିକ ହେଲେ ବି ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଉନ୍ମାଦଗ୍ରସ୍ତ ହୋଇଥାନ୍ତି । କୌଣସି ବିଷୟରେ ଅତ୍ୟଧିକ ଆବିଷ୍ଟ ହେବାଦ୍ୱାରା ଏକ ସ୍ନାୟବିକ ଅସନ୍ତୁଳନ ଅବସ୍ଥା ସୃଷ୍ଟି ହୋଇଥାଏ । ଏହି ଅବସ୍ଥାରୁ ମାନସିକ ଭୀତି ବା ଉନ୍ମାଦ ଅବସ୍ଥା ସାମୟିକ ଭାବେ ଆସିଥାଏ । ଅବଶ୍ୟ ଏହି ଅବସ୍ଥା ନଥିବାବେଳେ ବ୍ୟକ୍ତି ବେଶ୍ ସ୍ୱାଭାବିକ ହୋଇଥାଏ । କୋଭୁରଙ୍କ ମୁଣ୍ଡ ଚାରିପଟେ ଏକ ଆଲୋକର ଆବରଣ ଦେଖିବା ଏକ ଭ୍ରମ ପ୍ରତ୍ୟକ୍ଷ ଜନିତ ବିକୃତି (hallucination) ଅଟେ । ତାଙ୍କର ଏହି ଭ୍ରମ ପତ୍ୟକ୍ଷ ଜନିତ ବଳିଷ୍ଠ ଆବେଗ ଯୋଗୁଁ ଏକ୍ସ ଏକ ଫଟୋଚିତ୍ରକୁ ନିଜ ପତ୍ନୀ ଓ କାନ୍ଥକୁ ନୀଳ ଆକାଶ ବୋଲି ଦେଖୁଥିଲେ ।

ଏକ୍ସ ଆତ୍ମ-ବିସ୍ମୃତ ଅବସ୍ଥାରେ ତାଙ୍କ ପତ୍ନୀଙ୍କ ପାଖରୁ ଯେଉଁ ନିର୍ଦ୍ଦେଶ ପାଉଥିଲେ ବୋଲି ଭାବୁଥିଲେ ତାହା ପ୍ରକୃତରେ ତାଙ୍କ ନିଜ ମନରୁ ଆସୁଥିଲା । ପିଲାଟି ସମୟରୁ ନିଜ ପରିବାରରୁ ପାଇଥିବା ବିଶ୍ୱାସ ଅନୁଯାୟୀ ତାଙ୍କର ମନ ଖ୍ରୀଷ୍ଟଧର୍ମର ବିଶ୍ୱାସଦ୍ୱାରା ସର୍ତ୍ତବଦ୍ଧ ହୋଇଥିବାରୁ ତାଙ୍କର ଅନୁଭୂତି ତଦନୁରୂପ ହେଉଥିଲା । ଏହି ବିଶ୍ୱାସ ଯୋଗୁଁ ଇତର ଜୀବଙ୍କର ଆତ୍ମା ନାହିଁ ଓ ଆତ୍ମାପୁରରେ ଆତ୍ମାମାନେ ଖାଦ୍ୟ, ପାନୀୟ ଗ୍ରହଣ କରିଥାନ୍ତି ଇତ୍ୟାଦି ସେ କହିଥିଲେ । ଯଦି ତାଙ୍କର ମନ ହିନ୍ଦୁ ବିଶ୍ୱାସ

ଅନୁଯାୟୀ ସର୍ତ୍ତବଦ୍ଧ ହୋଇଥାନ୍ତା, ତେବେ ସେ ସମସ୍ତ ପ୍ରାଣୀଙ୍କର ଆତ୍ମା ରହିଥିବା ବିଶ୍ୱାସ ପୋଷଣ କରିଥାନ୍ତେ । ତାଙ୍କର ମୃତ୍ୟୁ ପରେ ସେ ତାଙ୍କ ପତ୍ନୀଙ୍କ ସହିତ ଆତ୍ମା ସ୍ତରରେ ପତି ପତ୍ନୀ ଭାବରେ ରହିବାର ଭାବନା ତାଙ୍କର ଏକ ମାନସିକ ଇଚ୍ଛାକୁ ସୂଚନା ଦିଏ । ସମ୍ଭବତଃ ସେ ଭୁଲି ଯାଇଥିଲେ ଯେ ଜୀବଦ୍ଦଶାରେ ତାଙ୍କର ଏକ ସମୟରେ ଏକ ପତ୍ନୀ ବିବାହ ଆଦର୍ଶ, ତାଙ୍କ ଦ୍ୱିତୀୟ ପତ୍ନୀଙ୍କର ମୃତ୍ୟୁପରେ ଆତ୍ମା ପୁରରେ ତାଙ୍କର ବହୁ-ପତ୍ନୀ ନେଇ ରହିବାର ପରିବେଶ ସୃଷ୍ଟି କରିବ ।

ତାଙ୍କର ମୃତ ଶ୍ୱଶୁର ଓ ସ୍ୱର୍ଗତ ପତ୍ନୀଙ୍କର ଫଟୋ ଯାହା ସେ ଇଂଲଣ୍ଡରେ ପାଇଥିଲେ, ତାହା ଯେ ଏକ ଠକାମି ଏହା କୁହାଯାଇପାରେ । ଇଂଲଣ୍ଡରେ ଏହିପରି କେତେକ ବୃତ୍ତିଗତ ଫଟୋ ଉଠାଣକାରୀ ଠକ ବ୍ୟକ୍ତି ମୃତଲୋକଙ୍କ ଆତ୍ମାମାନଙ୍କର ଛାୟାଚିତ୍ର ନେଇ ପାରିବେ କହି ସାଧାରଣ ଲୋକଙ୍କୁ ଠକିଥାନ୍ତି । ଏ ସମ୍ପର୍କରେ ଫ୍ରେଡ୍ ବାର୍ଲୋ ଓ ମେଜର ରାମ୍ପଲିଙ୍ଗ ରସ "ଆତ୍ମାର ଛାୟାଚିତ୍ର" (ଫଟୋ) କିପରି ଉଠାଯାଏ ଏ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରି ଏହି ଠକାମି ଜନିତ କୌଶଳକୁ ସେମାନଙ୍କ ପୁସ୍ତକ ମାନଙ୍କରେ ବିସ୍ତୃତ ଭାବରେ ସୂଚାଇଛନ୍ତି । ସେହିପରି ଆତ୍ମା ମାନଙ୍କର ଖାଦ୍ୟ, ଭାଷା, ଯୌନ ସମ୍ପର୍କ, ପୋଷାକ ଇତ୍ୟାଦି ନେଇ ଏକ୍ସଙ୍କର ଭାବନା ତାଙ୍କର ମାନସିକ କଳ୍ପନା ମାତ୍ର । ଆତ୍ମାମାନେ ସେମାନଙ୍କର ପାର୍ଥିବ ଶରୀରରେ ଯେ ଆବିର୍ଭୂତ ହୁଅନ୍ତି ଏହା କହିବାବେଳେ ମୃତ ଶରୀରର ନଷ୍ଟ ପରେ ଆତ୍ମାମାନେ ପୁଣି କେଉଁ ଉପାଦାନରେ ନିଜ ନିଜର ଶରୀରକୁ ପ୍ରସ୍ତୁତ କରିଥାନ୍ତି ବୋଲି ପ୍ରଶ୍ନର ଉତ୍ତର ସମ୍ଭବତଃ ମିଳିପାରିବ ନାହିଁ । ସୁତରାଂ ଏହି ପ୍ରକାର ଘଟଣା ଯାହା ଏକଦା ରହସ୍ୟାବୃତ ହୋଇ ରହିଥିଲା ମନୋବିଜ୍ଞାନର ବିକାଶହେତୁ ତାହା ବୈଜ୍ଞାନିକ ମାନଦଣ୍ଡରେ ସଂପ୍ରତି ବିଶ୍ଳେଷଣ ହେବା ସମ୍ଭବ ହୋଇପାରୁଛି ।

## ଆତ୍ମା କିପରି ଲାଗେ:

ଆପୁହାମି ହେଉଛନ୍ତି ଗାଲେ ଜିଲ୍ଲାର ଆକମିନାର ଜଣେ ଅଧିବାସୀ । ସେ ଗାଲେ ବଜାରରେ ଥିବା ଏକ ବ୍ୟବସାୟ କେନ୍ଦ୍ରରେ ବିକ୍ରେତା କାମ କରନ୍ତି । ସେ ପ୍ରତିଦିନ ସକାଳୁ ଘରୁ ଯାଇ ରାତି ନ'ଟାରେ ଘରକୁ ଫେରନ୍ତି । ଘରେ ତାଙ୍କର ବଡ ଝିଅ ଲୀଳାବତୀ ଓ ସାନ ଝିଅ ସିରିୟାବତୀ ରୁହନ୍ତି । ଲୀଳାବତୀର ବୟସ ଚବିଶ ଓ

ସିରିୟାବତୀର ବୟସ ଦଶ । ସେମାନେ ସାବତ ଭଉଣୀ । ଲୀଳାବତୀ ମା'ଙ୍କର ମୃତ୍ୟୁପରେ ଆବ୍ରହାମି ଦ୍ୱିତୀୟ ବାର ବିବାହ କରିଥିଲେ । ଦ୍ୱିତୀୟ ପତ୍ନୀ ମଧ୍ୟ ସିରିୟାବତୀକୁ ଜନ୍ମ ଦେବାର କେତୋଟି ମାସ ପରେ ମୃତ୍ୟୁବରଣ କଲେ । ଲୀଳାବତୀ ସାବତ ଭଉଣୀ ସିରିୟାବତୀର ପିଲାଟି ବେଳରୁ ଯତ୍ନ ନେଇ ଆସିଛନ୍ତି ।

ମିରା ଲେବେ ନାମକ ଜଣେ ଫେରିବାଲା ପ୍ରତି ବୁଧବାର ଦିନ ନକଲ-ଗହଣା ଜିନିଷ ବିକ୍ରି କରିବାକୁ ଅକମିନା ଗ୍ରାମକୁ ଆସେ । ଗହଣା ସହିତ ସେ କେତେକ ଲୁଗା ପଟା ମଧ୍ୟ ଆଣିଥାଏ । ସେ ଓ ତାର ସହଯୋଗୀ ଶରତ ଗହଣା ଓ ଲୁଗାପଟା ଧରି ପ୍ରତି ବୁଧବାର ଲୀଳାବତୀ ଘରକୁ ଆସନ୍ତି, କାରଣ ଲୀଳାବତୀ ପ୍ରତିଥର କିଛି କିଛି ଜିନିଷ କିଣିଥାଏ । ଗ୍ରାମର ବହୁ ସ୍ତ୍ରୀ ଲୋକ ଫେରି ଜିନିଷ ଦେଖିବାକୁ ଲୀଳାବତୀ ଘରେ ଗୁଣ୍ଡ ହୁଅନ୍ତି । ଲୀଳାବତୀ ପାଇଁ ଜନିଷ ବାଛିବା ଓ ସବୁ ଜିନିଷ ଦେଖିବା ସେମାନଙ୍କର ଲକ୍ଷ୍ୟ ଥାଏ । ଲୀଳାବତୀ ପ୍ରତିଥର ଜିନିଷ କିଣୁଥିବାରୁ ଗ୍ରାମର ମହିଳାମାନେ ତାକୁ ଶ୍ରଦ୍ଧାଜନିତ ଇର୍ଷା କରନ୍ତି ।

ଆବ୍ରହାମି ଯେଉଁ ଦୋକାନରେ ବିକ୍ରେତା ଭାବେ କାମ କରନ୍ତି, ସେହି ବ୍ୟବସାୟ କେନ୍ଦ୍ରରେ ସୋମପାଲ କିରାନି ଭାବରେ ଚାକିରୀ ଆରମ୍ଭ କଲେ । ସେତେବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥାଏ । ସୋମପାଲ ସୈନ୍ୟ ବିଭାଗରେ ଯୋଗଦେବାକୁ ନାମ ପଞ୍ଜୀକରଣ କରି ଦରଖାସ୍ତ କରିଥାନ୍ତି ।

ଏହା ଭିତରେ ସୋମପାଲ ସହିତ ଲୀଳାବତୀର ବିବାହ ପାଇଁ ଆବ୍ରହାମି ପ୍ରସ୍ତାବ ଦେଲେ ଓ ତାଙ୍କ ସମ୍ମତିରେ ଉଭୟଙ୍କର ବିବାହ ହୋଇଗଲା । ବିବାହ ପରେ ଲୀଳାବତୀ ଓ ସୋମପାଲ ଆବ୍ରହାମିଙ୍କ ଘରେ ମଧ୍ୟ ରହିଲେ । ବିବାହର ମାତ୍ର ଚାଳିଶ ଦିନ ପରେ ସୋମପାଲ ସୈନ୍ୟ ବିଭାଗରେ ଚାକିରୀ ପାଇଁ ନିଯୁକ୍ତି ପତ୍ର ପାଇଲେ । ସୈନ୍ୟ ବିଭାଗରେ ଯୋଗଦେବାକୁ ଆଗ୍ରହ ଥିବାରୁ ଲୀଳାବତୀ, ଆବ୍ରହାମି ଓ ଶିରିୟାବତୀ ସୋମପାଲଙ୍କୁ ଗାଲେ ରେଳ ଷ୍ଟେସନରେ ବିଦାୟ ଦେଲେ । ଲୀଳାବତୀ ନିଜର ତରୁଣ ସ୍ୱାମୀଙ୍କୁ ଛଳ ଛଳ ଆଖିରେ ଆବେଗଭରା ବିଦାୟ ଦେଇଥିଲେ ।

ସ୍ୱାମୀଙ୍କର ବିଚ୍ଛେଦ ଜନିତ ଦୁଃଖରେ ଲୀଳାବତୀ ମର୍ମାହତ ହେଉଥିଲେ । କିନ୍ତୁ ମଝିରେ ମଝିରେ ସୋମପାଲଙ୍କର ପତ୍ର ଓ ପ୍ରତି ମାସରେ ଡାକ ଯୋଗେ ଟଙ୍କା

ପାଇ ସେ ଖୁସି ହେବା ସହିତ ନିଜ ସ୍ୱାମୀଙ୍କର ସୈନିକ ବେଶର ଫଟୋ ଅନ୍ୟମାନଙ୍କୁ ଦେଖାଇ ଗର୍ବ ଅନୁଭବ କରୁଥିଲେ । ଫେରିବାଲା ମିରା ଲେବେ ଓ ତାର ସହଯୋଗୀ ଶରତର ସପ୍ତାହକୁ ଥରେ ଆସିବା ବ୍ୟତୀତ ତାଙ୍କ ଘରକୁ ଅନ୍ୟ କେହି ପୁରୁଷ ଲୋକ ଆସୁନଥିଲେ । ଲୀଳାବତୀ ଗ୍ରାମର ଅନ୍ୟ ମହିଳାମାନଙ୍କ ପରି ଗପୁଡି ନଥିଲେ । ସାନ ଭଉଣୀ ସିରିୟାବତୀଙ୍କୁ ଦିନ ଦଶଟାରେ ବିଦ୍ୟାଳୟକୁ ପଠାଇ ଦେଇ ଓ ଘରକାମ ଶେଷ କରି ସେ ସୂତାରେ ରୁମାଲ ଓ ତକିଆଖୋଳ ତିଆରି କରୁଥିଲେ । ସେସବୁ ଫେରିବାଲାକୁ ବିକ୍ରି କରି କିଛି ଆୟ ମଧ୍ୟ କରୁଥିଲେ ।

ନିଜ ସ୍ୱାମୀଙ୍କ ପାଖରୁ ପାଉଥିବା ପତ୍ରକୁ ସେ ବହୁ କଷ୍ଟରେ ପଢୁଥିଲେ ବି ଚିଠି ଖଣ୍ଡିଏ ଲେଖି ଜାଣୁ ନଥିଲେ । ଶରତ ସାହାଯ୍ୟରେ ସେ ଦୁଇଥର ସୋମପାଲଙ୍କ ପାଖକୁ ଚିଠି ଲେଖିଥିଲେ । ସୁତରାଂ ସ୍ୱାମୀଙ୍କ ପାଖରୁ ପତ୍ର ପାଇବା ବ୍ୟତୀତ ସେ ତାଙ୍କୁ କିଛ ହିଁ ଲେଖିପାରୁନଥିଲେ । ସୋମପାଲଙ୍କ ପାଖରୁ ଆସ୍ତେ ଆସ୍ତେ ଚିଠିପତ୍ର ଅନେକ ବ୍ୟବଧାନରେ ଆସିଲା ଓ ଶେଷରେ ପତ୍ର ଆସିବା ବନ୍ଦ ହୋଇଗଲା । ହେଲେ ପ୍ରତି ମାସରେ ନିୟମିତ ଟଙ୍କା ଆସୁଥିଲା ।

ସୋମପାଲଙ୍କଠାରୁ ପତ୍ର ନପାଇ ଲୀଳାବତୀ ମାନସିକ ଦୁଷ୍ଚିନ୍ତା ଭିତରେ ସମୟ କଟାଉଥାନ୍ତି । ଲୀଳାବତୀ ଏବେ ବିଶେଷ ଜିନିଷ ପତ୍ର ନରଖି ବରଂ ଫେରିବାଲା ମିରାଲେବେ ଓ ଶରତ ଆସିଲେ ସେମାନଙ୍କ ପାଖରେ ନିଜର ଦୁଃଖ ଜଣାନ୍ତି । ଥରେ ସେ ଶରତ ସାହାଯ୍ୟରେ ସ୍ୱାମୀଙ୍କ ପାଖକୁ ପତ୍ର ଲେଖି ସୋମପାଲ ଚିଠି ଦେବାକୁ ବିନୟ କରି ଜଣାଇଥିଲେ । ହେଲେବି ସ୍ୱାମୀଙ୍କ ପାଖରୁ କୌଣସି ପତ୍ର ପାଇଲେ ନାହିଁ । ଲୀଳାବତୀ ଜିନିଷ କିଣୁ ନଥିବା ହେତୁ ମିରାଲେବେ ବିକ୍ରି ପାଇଁ ତାଙ୍କର ସାପ୍ତାହିକ ପରିଦର୍ଶନ ବନ୍ଦ କରିଦେଲେ । ବ୍ୟବସାୟ ନେଇ ଆସିବା ବନ୍ଦ ହେବା ପରେ ଶରତ ପ୍ରାୟ ଲୀଳାବତୀ ପାଖକୁ ବୁଲି ଆସୁଥିଲେ । ଶରତ ମିରାଲେବେଙ୍କ ପାଖରେ ସକାଳ ଆଠଟାରୁ ସନ୍ଧ୍ୟା ପର୍ଯ୍ୟନ୍ତ କାମ କରୁଥିଲେ । ସନ୍ଧ୍ୟାରେ ଲୀଳାବତୀ ପାଖକୁ ଆସି ତାଙ୍କୁ ସାନ୍ତ୍ୱନା ଦେଉଥିଲେ । ଅତି ଭଲ ପିଲାମାନେ ବି ସୈନ୍ୟ ବିଭାଗରେ ଯୋଗ ଦେବାପରେ କିପରି ନଷ୍ଟ-ଚରିତ୍ରର ହୋଇଯାନ୍ତି ଓ ଦରମା ଟଙ୍କା ଖରାପ ସ୍ତ୍ରୀ ଲୋକଙ୍କ ପାଇଁ ବ୍ୟୟ କରନ୍ତି ସେ ବିଷୟରେ ନାନା କଥା ସେ ଲୀଳାବତୀଙ୍କୁ କହିଲେ । ଲିଳାବତୀ ବ୍ୟଥାଭରା ମନରେ ମତ ଦେଉଥିଲେ ଯେ ତାଙ୍କ ସ୍ୱାମୀ ସୈନ୍ୟ ବିଭାଗରେ

ଯୋଗ ନ ଦେଇ ଅଳ୍ପ ଦରମା ହେଲେ ବି କିରାନିଟିଏ ହୋଇ ରହିଥିଲେ ବରଂ ଭଲ ହୋଇଥାନ୍ତା ।

ଏହାପରେ ଲୀଳାବତୀଙ୍କ ଘରକୁ ଶରତ ପ୍ରାୟ ନିୟମିତ ଆସିବାକୁ ଲାଗିଲେ । ପ୍ରତିଦିନ ସନ୍ଧ୍ୟାରେ ଆସି ସେଠାରେ ସ୍ନାନ କରି ପୋଷାକ ବଦଳାଇ ସେ ରାତି ଆଠଟାରେ ଫେରି ଯାଉଥିଲେ । ଶରତଙ୍କର ଆସିବା ଯେତିକି ଅଧିକ ହେଲା ଲୀଳାବତୀଙ୍କର ନିଜ ସ୍ୱାମୀଙ୍କ ବିଷୟରେ ଦୁଷ୍ଚିନ୍ତା ସେତିକି ଅପସରି ଯିବାକୁ ଲାଗିଲା । ଏହା ଭିତରେ ଲୀଳାବତୀ ଅନ୍ତଃସତ୍ତ୍ୱା ହୋଇଗଲେ ଓ ଏହି ଘଟଣା ପରେ ଶରତ ବି ସେ ଗ୍ରାମରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ଆପ୍ପୁହାମି ସକାଳ ଆଠଟାରୁ ଯାଇ ରାତି ନ'ଟାରେ ଫେରୁଥିବାରୁ ତାଙ୍କ ଅନୁପସ୍ଥିତିରେ ଝିଅମାନେ କ'ଣ କରୁଛନ୍ତି ତାହା ଜାଣୁ ନଥିଲେ । ଲୀଳାବତୀ ଚରିତ୍ର ବିଷୟରେ କେବେ କିଛି ବି ସେ ଶୁଣିନଥିଲେ, ସୁତରାଂ ତାର ବିବାହ ପରେ ତା ପ୍ରତି ଦୃଷ୍ଟି ରଖିବା ନେଇ ସେ କେବେ ବି ଭାବି ନଥିଲେ । ପରେ ସମସ୍ତ ବିଷୟ ଜାଣି ସେ ଘଟଣା ପ୍ରବାହକୁ ଗ୍ରହଣ କରିବାକୁ ବାଧ୍ୟ ହେଲେ ।

ଅଗଷ୍ଟ ୧୯୪୬ରେ ଲୀଳାବତୀଙ୍କର ପୁଅଟିଏ ଜନ୍ମ ହେଲା । ଆପ୍ପୁହାମି ଗ୍ରାମର ଜ୍ୟୋତିଷଙ୍କର ପରାମର୍ଶ କରି ପିଲାର ଉଜ୍ଜ୍ୱଳ ଭବିଷ୍ୟତ ଜାଣିବାକୁ ପାଇଲେ । କିନ୍ତୁ ପ୍ରଥମ ପାଞ୍ଚ ବର୍ଷ ପିଲାଟିର ଶନି ଦଶା ଥିବା ଗଣକ କହିଥିଲେ । ଲୀଳବତୀ ମାତୃ ସ୍ନେହ ଓ ଯତ୍ନ ଦେଇ ପିଲାଟିର କଥା ବୁଝୁଥିଲେ ।

ସୈନ୍ୟ ବିଭାଗର ମୁଖ୍ୟ କାର୍ଯ୍ୟାଳୟରୁ ସୋମପାଲଙ୍କର ମୃତ୍ୟୁ ହୋଇଥିବା ଏକ ଟେଲିଗ୍ରାମ ଲୀଳାବତୀ ୧୯.୧୧.୪୬ରେ ପାଇଲେ । ଏହି ସମ୍ବାଦ ପାଇ ସେ ବିକଳ ହୋଇ କାନ୍ଦିଲେ । ଆପ୍ପୁହାମି ଖବର ପାଇ ଆସିଲେ ଓ ଗ୍ରାମର ଲୋକମାନେ ଆସି ସମବେଦନା ଜଣାଇଲେ । ଲୀଳାବତୀ କାନ୍ଦି କାନ୍ଦି ଦୁଃଖରେ ଭାଙ୍ଗି ପଡିଲେ ।

ପରଦିନ ଆପ୍ପୁହାମି ଓ କେତେକ ସମ୍ପର୍କୀୟ ଲୋକ ଘରେ ଥାନ୍ତି । ହଠାତ୍ ସନ୍ଧ୍ୟାରେ ଲୀଳାବତୀ ଛିଡା ହୋଇ ଆଖି ତରାଟି ଚାରିଆଡକୁ ଚାହିଁ, ଶରୀରକୁ ଦୃଢ କରି ଓ ହାତକୁ ଦେଖାଇ ଚଢାଗଳାରେ କହିବାକୁ ଲାଗିଲେ, "ମୁଁ ତୋତେ ଛାଡିବି ନାହିଁ । ତୁ ମୋର ସ୍ତ୍ରୀକୁ ଠକିଛୁ । ମୁଁ ତୋତେ ଓ ତୋର ପୁଅକୁ ମାରିଦେବି । ମୁଁ

ମଣିଷର ରକ୍ତ ଯୁଦ୍ଧ କ୍ଷେତ୍ରରେ ଦେଖିଛି । ମୁଁ ଯୁଦ୍ଧ କ୍ଷେତ୍ରରେ ଅନେକ ଲୋକଙ୍କୁ ଗୁଳି କରିଛି । ମୁଁ ଶରତ ଓ ତାର ପିଲାକୁ ମାରିବାପରେ ହିଁ ଯିବି ।" ଲୀଳାବତୀ ଏହାପରେ ମୂର୍ଚ୍ଛା ହୋଇ ପଡିଗଲେ ଓ ପନ୍ଦର ମିନିଟ୍ ନିଶ୍ଚଳ ହୋଇ ରହିଲେ ।

ଘରେ ଥିବା ଲୋକମାନେ ଏହି ଘଟଣାରେ ଆଶ୍ଚର୍ଯ୍ୟ ହେଲେ । ଲୀଳାବତୀର ଭାଷା, ସ୍ୱର ଓ ଭଙ୍ଗୀ ପୂରା ତାର ସ୍ୱର୍ଗତ ସ୍ୱାମୀ ସୋମପାଲଙ୍କ ସହିତ ମିଶି ଯାଉଥିଲା । ଏହାପରେ ପିଲାଟିର ନିରାପତ୍ତା ନେଇ ସମସ୍ତେ ଚିନ୍ତିତ ହେଲେ । କାରଣ ଆଶଙ୍କା ହେଲା ଯେ ସୋମପାଲର ଆତ୍ମା ପିଲାଟିକୁ ମାରିଦେବା ବିଚିତ୍ର ନୁହେଁ । ଏହି ପରିସ୍ଥିତିରେ ଆତ୍ମୁହାମି ପିଲାଟିକୁ ତାଙ୍କ ଭଉଣୀ ଘରକୁ ପଠାଇବାକୁ ସ୍ଥିର କଲେ, କିନ୍ତୁ ଲୀଳାବତୀ ଏଥିରେ ସମ୍ମତ ହେଲେ ନାହିଁ । ସେ ନିଜ ପୁଅକୁ ଅତ୍ୟନ୍ତ ଭଲ ପାଉଥିଲେ । କିନ୍ତୁ ଯେତେବେଳେ ସୋମପାଲଙ୍କର ଆତ୍ମା ତାଙ୍କ ଭିତରେ ପ୍ରବେଶ କରୁଥିଲା ସେତେବେଳେ ପିଲାଟିକୁ ହତାଦର କରି ତାକୁ ମାରିଦେବାକୁ ଚାହୁଁଥିଲେ ।

ଏହି ଘଟଣା ପରଠୁ ପ୍ରାୟ ପ୍ରତିଦିନ ସାନ୍ଧ୍ୟ ଭୋଜନ ପରେ ଲୀଳାବତୀ ଅସ୍ୱାଭାବିକ ବ୍ୟବହାର ପ୍ରଦର୍ଶନ କରୁଥିଲେ । ସେ ଘର ସାରା ଲେଫ୍ଟ, ରାଇଟ କହି ମାର୍ଚ୍ଚ କରି ବୁଲିବେ । ବେଳେବେଳେ ସେ ଶରତକୁ ମାରିଦେବାକୁ ଚଢାଗଳାରେ ଚିତ୍କାର କରିବେ, ଯଦିବା ଶରତ ସେଠାରେ ଉପସ୍ଥିତ ନଥାଏ ।

ଦିନବେଳେ ଲୀଳାବତୀ ପ୍ରାୟ ସ୍ୱାଭାବିକ ରହି ନିଜ ପୁଅର ଯତ୍ନ ନିଅନ୍ତି, କିନ୍ତୁ ସନ୍ଧ୍ୟା ପରେ ସେ ଅପ୍ରାକୃତିକ ବ୍ୟବହାର ଦେଖାଇ ତାଙ୍କ ସ୍ୱାମୀ ପରି ବ୍ୟବହାର କରନ୍ତି । ସୁତରାଂ ରାତ୍ରି ସମୟରେ ପିଲାଟିକୁ ଆତ୍ମୁହାମି ନିଜ ପାଖରେ ଧରି ଶୁଅନ୍ତି ।

ଏହାପରେ ଆତ୍ମୁହାମି ଲୀଳାବତୀ ଭିତରୁ ସୋମପାଲର ଆତ୍ମାକୁ ବାହାର କରିବାକୁ ଗୁଣିଆଁ ମାନଙ୍କ ସହିତ ପରାମର୍ଶ କଲେ । ଶେଷରେ ଜଣେ ବିଶିଷ୍ଟ ତାନ୍ତ୍ରିକ ତାଙ୍କର ଦଳ ସହ ଆସି ପହଞ୍ଚିଲେ । ତାନ୍ତ୍ରିକ ପୂଜା ଓ ମନ୍ତ୍ରପାଠ କରିବା ପରେ ଲୀଳାବତୀ ତାଙ୍କ ସହିତ ନାଚିବାକୁ ଲାଗିଲେ । ତାନ୍ତ୍ରିକ ତାଙ୍କର କପାଳକୁ ଏକ କାଉଁରୀ ହାତରେ ସ୍ପର୍ଶ କରି ତାଙ୍କୁ କେତେକ ପ୍ରଶ୍ନ ପଚାରିଲେ । ଲୀଳାବତୀ ଏହି ଉତ୍ତର ଦେଲେ- "ମୁଁ ହେଉଛି ସୋମପାଲ । ମୁଁ ଏକ ଜାହାଜରେ ଗାଲେ ସହରକୁ ଆସି ମୋର ପତ୍ନୀକୁ ଦେଖିବାକୁ ଆସିଲି । ଶରତ ମୋର ସ୍ତ୍ରୀକୁ ଠକିଛି । ତାର ପିଲାକୁ ମୋ

ସ୍ତ୍ରୀ ରଖିବା ମୁଁ ଚାହେଁ ନାହିଁ । ମୁଁ ଶରତ ଓ ତାର ପିଲାକୁ ମାରିଦେବି । ଯଦି ଦୁଇଟି ବଳି ମୋତେ ଦିଆଯାଏ ତେବେ ମୁଁ ବଗିଚାରେ ଥିବା ପଣସ ଗଛକୁ ଚାଲିଯିବି । ପଣସ ଗଛର ଡାଳକୁ ମୁଁ ହଲାଇବା ମୋର ସେଠାକୁ ଯିବାର ସଙ୍କେତ ଦେବ ।"

ନାଚ ଓ ଏହି ବକ୍ତବ୍ୟ ପରେ ଲୀଳାବତୀ ମୂର୍ଚ୍ଛା ହୋଇ ପଡିଗଲେ । ସୋମପାଳଙ୍କର ଆତ୍ମା ଚାହିଁବାରୁ ଦୁଇଟି କୁକୁଡାକୁ ତାନ୍ତ୍ରିକ ବଳିଦେଲେ । ଲୀଳାବତୀ ଭୂମିରେ ପଡିଥିବା ଅବସ୍ଥାରେ ତାନ୍ତ୍ରିକ ବାଡିର ପଣସ ଗଛ ପାଖକୁ ଗଲେ ଓ ତାଙ୍କ ପଛେ ପଛେ ସେଠାରେ ଜମା ହୋଇଥିବା ଲୋକସବୁ ବି ଗଲେ । ସେଠାକୁ ଯାଇ ଗଛକୁ ଚାହିଁ ସେ ଡାଳ ହଲାଇବାକୁ ସୋମପାଳର ଆତ୍ମାକୁ ନିର୍ଦ୍ଦେଶ ଦେଲେ । ଯଦିବା ଅନ୍ୟମାନେ ଗଛର ଡାଳ ହଲିବା ଦେଖିପାରି ନଥିଲେ ତାନ୍ତ୍ରିକ ସୂଚନା ଦେଲେ ଯେ ଡାଳ ହଲିବାର ସେ ଦେଖିଲେ । ସୁତରାଂ ସୋମପାଳର ଆତ୍ମା ବର୍ତ୍ତମାନ ଲୀଳାବତୀଠାରୁ ଚାଲିଆସିଲା ବୋଲି ଘୋଷଣା କଲେ ।

ଏହାପରେ ତାନ୍ତ୍ରିକ ଆସି ଲୀଳାବତୀକୁ ପ୍ରକୃତିସ୍ଥ କଲେ । ସମବେତ ଲୋକମାନଙ୍କୁ ତାନ୍ତ୍ରିକ କହିଲେ ଯେ ସୋମପାଳ ଯୁଦ୍ଧ ଭୂମିରେ ମରିଛନ୍ତି । ତାଙ୍କର ଶବ ସତ୍କାର ଠିକ୍ ଧର୍ମୀୟ ଧାରାରେ ସେଠାରେ ହୋଇନାହିଁ । ଏଣୁ ତାଙ୍କର ଅଶାନ୍ତ ଆତ୍ମା ଏତେ ଦୂରରୁ ତାଙ୍କ ପତ୍ନୀ ପାଖକୁ ଆସୁଛି । ତାଙ୍କର ଏହି ପୂଜା ଓ ଆତ୍ମା-ଶାନ୍ତି କାର୍ଯ୍ୟ ପରେ ସେ ଏବେ ଚାଲିଯିବେ ।

ଏହି ପୂଜା ପରେ ଦୁଇ ସପ୍ତାହ ଲୀଳାବତୀ ବେଶ୍ ସ୍ୱାଭାବିକ ରହିଥିଲେ । କିନ୍ତୁ ହଠାତ୍ ଦିନେ ସେହି ପଣସ ଗଛର କଠା ତରକାରୀ ଖାଇବା ପରେ ପୁନଶ୍ଚ ତାଙ୍କର ଅସ୍ୱାଭାବିକତା ଦେଖାଦେଲା । ସେ ପୂର୍ବପରି ପୁଣି ସୋମପାଳ ପରି ବ୍ୟବହାର କରିବାକୁ ଲାଗିଲେ ।

ଏହି ସମୟରେ କୋଭୁର ଗାଲେ ସ୍ଥିତ ରିଚମଣ୍ଡ ମହାବିଦ୍ୟାଳୟରେ ଅଧ୍ୟାପକ ଥାନ୍ତି । ଆପ୍ପୁହାମି ଯେଉଁ ବ୍ୟବସାୟ କେନ୍ଦ୍ରରେ ଚାକିରୀ କରୁଥିଲେ ତାର ମାଲିକ ପିୟଦସା କୋଭୁରଙ୍କ ବନ୍ଧୁ ଓ ତାଙ୍କ ସହିତ ବେଶ୍ ଜଣାଶୁଣା ଥିଲେ । ଫଳରେ ପିୟଦସା ଆପ୍ପୁହାମିଙ୍କୁ ନେଇ କୋଭୁରଙ୍କୁ ସାକ୍ଷାତ କରି ତାଙ୍କର ପରାମର୍ଶ ଲୋଡିଲେ । ଆପ୍ପୁହାମିଙ୍କଠାରୁ ସମସ୍ତ ବିବରଣୀ ଶୁଣିବାପରେ କୋଭୁର ତାଙ୍କୁ ବୁଝାଇଲେ ଯେ

ଲୀଳାବତୀ ଭିତରେ ତାଙ୍କ ସ୍ୱାମୀର ଆତ୍ମା ପ୍ରବେଶ କରିବାଦ୍ୱାରା ସେ ଏପରି ବ୍ୟବହାର କରୁଛନ୍ତି ବୋଲି ଭାବିବା ପଶ୍ଚାତରେ କୌଣସି ବିଜ୍ଞାନ ସମ୍ମତ କାରଣ ନାହିଁ । ବରଂ ଲୀଳାବତୀଙ୍କର ବିବେକର ଦଂଶନ ଓ ମାନସିକ ଅସନ୍ତୁଳନ ଦ୍ୱାରା ସେ ତାଙ୍କ ସ୍ୱାମୀଙ୍କ ପରି ବ୍ୟବହାର କରୁଛନ୍ତି । ଦୁର୍ବଳମନା ବ୍ୟକ୍ତିମାନେ ଏକ ମାନସିକ ଅସନ୍ତୁଳିତ ଅବସ୍ଥାକୁ ଆସିଲେ ମୃତଲୋକ ବା ମୃତ ବୋଲି ଭାବିଥିବା ଲୋକଙ୍କର ଭାଷା, ଠାଣି, ସ୍ୱର ଓ ଏପରିକି ବ୍ୟବହାରକୁ ଅନୁକରଣ କରିଥାନ୍ତି । ଏହି ମାନସିକ ବିକୃତିକୁ ଗ୍ଲୋସଲାଲିଆ କୁହାଯାଏ ଓ ସେହି ଲୋକଙ୍କର ଅସ୍ୱାଭାବିକ ବ୍ୟବହାରକୁ ଆମେ ଅଜ୍ଞତାବଶତଃ ମୃତ ଲୋକର ଆତ୍ମା-ପ୍ରବେଶ ବୋଲି ଭାବିଥାଉ । "କିନ୍ତୁ ଲୀଳାବତୀ କାହିଁକି ତା'ର ସ୍ୱାମୀ ପରି ବ୍ୟବହାର କରୁଛି" ବୋଲି ପ୍ରିୟଦସା ଜାଣିବାକୁ ଚାହିଁବାରୁ କୋଭୁର ତାର ଉତ୍ତରରେ କହିଲେ ଯେ ଲୀଳାବତୀର ମନ ଭିତରେ ମୃତଲୋକର ଆତ୍ମା ଅଛି ବୋଲି ବିଶ୍ୱାସ ପିଲାଟି ସମୟରୁ ରହିଛି । ତା'ପରେ ଶରତ ସହିତ ତାର ସମ୍ପର୍କରୁ ସେ ଏକ ସନ୍ତାନ ଜନ୍ମ କରିଛି । ସେ ସୋମପାଲ ଅପେକ୍ଷା ସୋମପାଲର ଆତ୍ମାକୁ ଅଧିକ ଭୟ କରୁଛି । କାରଣ ସେ ଭାବୁଛି ଯେ ଆତ୍ମା ଶରୀରରୁ ଚାଲିଯିବା ପରେ ସର୍ବଜ୍ଞ ହୋଇଯାଏ ଓ ଶରତ ସହିତ ତାର ସମ୍ପର୍କ ସୋମପାଲର ଆତ୍ମା ନିଶ୍ଚୟ ଜାଣି ପାରିଥିବ । ସୁତରାଂ ଲୀଳାବତୀର ମାନସିକ ଭୟ ଓ ବିବେକର ଦଂଶନ ଯୋଗୁଁ ସେ ଏପରି ଏକ ଭୂତ ଲାଗିଥିବା ବ୍ୟକ୍ତି ପରି ବ୍ୟବହାର କରୁଛି । ଯଦି ମୃତ ଲୋକର ଆତ୍ମା ନଥାଏ ବୋଲି ଧାରଣା ତା ମନରେ ଦୃଢ କରାଯାଇ ପାରିବ ତେବେ ସେ ସ୍ୱାଭାବିକ ମାନସିକ ଅବସ୍ଥାକୁ ଆସିବ ।

'ଯେତେଦୂର ସମ୍ଭବ ଲୀଳାବତୀକୁ ଏକୁଟିଆ ରହିବାକୁ' କୋଭୁର ଆପୁହାମିଙ୍କୁ ପରାମର୍ଶ ଦେଲେ । କାରଣ ମାନସିକ ବିକୃତି ଭୋଗୁଥିବା ବ୍ୟକ୍ତିମାନେ ଅନ୍ୟମାନଙ୍କର ଉପସ୍ଥିତିରେ ନିଜର ଅସ୍ୱାଭାବିକ ବ୍ୟବହାର ଦେଖାଇବାକୁ ଚାହିଁଥାନ୍ତି, ଅଥଚ ଏକା ଥିବାବେଳେ ସେସବୁ ପ୍ରଦର୍ଶନ କରିନଥାନ୍ତି । କୋଭୁରଙ୍କର ଏହି ବିଶ୍ଳେଷଣରେ ସମ୍ପୂର୍ଣ୍ଣ ସନ୍ତୁଷ୍ଟ ନ ହୋଇ ଆପୁହାମି ଓ ପିୟଦସା କୋଭୁରଙ୍କ ପାଖରୁ ବିଦାୟ ନେଲେ ।

ଏହି ସାକ୍ଷାତର ତିନି ସପ୍ତାହ ପରେ ଏକ ରବିବାରରେ ପିୟଦସାଙ୍କ ସାଙ୍ଗରେ କୋଭୁର ଆପୁହାମିଙ୍କ ଘରକୁ ଯାଇଥିଲେ । ସେଠାରେ ଲୀଳାବତୀ ଦୁଇ ସପ୍ତାହ ତଳେ ପୂର୍ଣ୍ଣ ସୁସ୍ଥ ହୋଇଥିବାର ସେ ଜାଣିବାକୁ ପାଇଲେ ।

ଏହାପରେ ଗାଲେସ୍ଥିତ ରିଚମଣ୍ଡ କଲେଜରୁ ବଦଳି ହୋଇ କୋଭୁର ୧୯୪୭ ଜାନୁଆରୀରେ ମାଉଣ୍ଟ ଲାଭିନିଆର ଥୋମାସ କଲେଜକୁ ଚାଲି ଆସିଲେ । ତାର ଦୁଇ ମାସ ପରେ ୧୯୪୭ ମାର୍ଚ୍ଚରେ ସେ ପିୟଦସାଙ୍କ ପାଖରୁ ଏକ ପତ୍ର ପାଇ ଜାଣିବାକୁ ପାଇଲେ ଯେ ସୋମପାଲ ଜୀବିତ ଅବସ୍ଥାରେ ଘରକୁ ଫେରି ଆସିଛନ୍ତି । ପ୍ରକୃତରେ ସେ ଶତ୍ରୁ ପକ୍ଷଦ୍ୱାରା ଧରାହୋଇ ଯୁଦ୍ଧ ବନ୍ଦୀଭାବରେ ରହିଥିଲେ । ଯୁଦ୍ଧ ପରେ ଓ ବନ୍ଦୀ ବିନିମୟ ଯୋଗୁଁ ସେ ଗାଲେ ଫେରି ଆସିଛନ୍ତି । ପାଞ୍ଚମାସ ତଳେ ଲୀଳାବତୀ ଯେଉଁ ଟେଲିଗ୍ରାମ ପାଇଥିଲେ ତାହା ଏକ ଭୁଲ ସମ୍ବାଦ ଥିଲା । ଶତ୍ରୁପକ୍ଷ ସହିତ ମୁକାବିଲା ପରେ ତାଙ୍କର ପତ୍ତା ନ ମିଳିବାରୁ ସେ ମୃତ ବୋଲି କର୍ତ୍ତୃପକ୍ଷ ଧରିନେଇ ତାଙ୍କର ଘରକୁ ଏହି ଟେଲିଗ୍ରାମ ପଠାଇଥିଲେ ।

ଏହା ଜାଣିବାପରେ ବ୍ୟଙ୍ଗ କରି କୋଭୁର ପିୟଦସାଙ୍କୁ ଲେଖିଥିଲେ ଯେ ଜୀବିତ ଲୋକର ଭୂତ ଦ୍ୱାରା ଆକ୍ରାନ୍ତ ହେବାବି ସମ୍ଭବ ହେଉଛି ।



# ମନୋବିଜ୍ଞାନ, ପରାମନୋବିଜ୍ଞାନ ଓ ଆତ୍ମା

ଯେକୌଣସି ପ୍ରାଣୀ ତାର ଇନ୍ଦ୍ରିୟ ସାହାଯ୍ୟରେ ନିଜର ପରିବେଶକୁ ଅବବୋଧ କରିଥାଏ । ଇନ୍ଦ୍ରିୟ ଜନିତ ଉଦ୍ଦୀପନ - ଅନୁକ୍ରିୟାକୁ (stimulus response) ପ୍ରତ୍ୟକ୍ଷ କୁହାଯାଏ । ପ୍ରତ୍ୟକ୍ଷଦ୍ୱାରା ପ୍ରତ୍ୟେକ ପ୍ରାଣୀ ତାର ପରିବେଷ୍ଟନୀ ଓ ବାହ୍ୟ ଜଗତ ବିଷୟରେ ଜାଣିବାର ଅବକାଶ ପାଏ । ଇନ୍ଦ୍ରିୟ ସାହାଯ୍ୟରେ ପ୍ରତ୍ୟକ୍ଷ ଯୋଗୁଁ ପରିବେଷ୍ଟନୀ ବିଷୟରେ ମନରେ ଧାରଣା ସବୁ ସୃଷ୍ଟି ହୋଇଥାଏ । ବ୍ୟକ୍ତି ବା ଯେକୌଣସି ପ୍ରାଣୀ ଇନ୍ଦ୍ରିୟ ଜନିତ ଅନୁଭବଦ୍ୱାରା ହିଁ କିଛି ଜାଣିବାର ସୁଯୋଗ ପାଇଥାଏ । ସକଳ ବିକଶିତ ପ୍ରାଣୀମାନଙ୍କର ଇନ୍ଦ୍ରିୟ ମାନଙ୍କୁ ସାଧାରଣତଃ ପାଞ୍ଚଟି ଶ୍ରେଣୀରେ ବିଭାଜିତ କରାଯାଏ । ସ୍ପର୍ଶ,ଘ୍ରାଣ, ଦୃଶ୍ୟ,ସ୍ୱାଦ ଓ ଶ୍ରବଣ ଜନିତ ଅନୁଭବ ଇନ୍ଦ୍ରିୟ ଯୋଗୁଁ ସମ୍ଭବ ହୋଇଥାଏ । ଛୁଇଁକରି, ସୁଙ୍ଘିକରି, ଦେଖିକରି, ଚାଖିକରି ବା ଶୁଣିକରି ଆମେ ସାଧାରଣତଃ ଆମ ପରିବେଶକୁ ଜାଣିବାକୁ ସମର୍ଥ ହୋଇଥାଏ । ବସ୍ତୁତଃ ପ୍ରତ୍ୟକ୍ଷ ହିଁ ଜ୍ଞାନର ଏକ ମୂଳ ଭିତ୍ତି ଯାହାର ଆଧାର ହେଉଛି ଆମର ଇନ୍ଦ୍ରିୟ । ସ୍ପର୍ଶେନ୍ଦ୍ରିୟ ବିଭିନ୍ନ କାର୍ଯ୍ୟ କରିପାରେ ବା ସ୍ପର୍ଶେନ୍ଦ୍ରିୟ ଦ୍ୱାରା ଲାଭ କରାଯାଉଥିବା ଉଦ୍ଦୀପନା ବିଭିନ୍ନ ପ୍ରକାରର ହୋଇପାରେ । ସେହିପରି ଘ୍ରାଣ ଜନିତ, ଦୃଶ୍ୟ ଜନିତ ବା ଯେକୌଣସି ଇନ୍ଦ୍ରିୟର କାର୍ଯ୍ୟ ବିଭିନ୍ନ ପ୍ରକାରର ହେବା ସମ୍ଭବ ହୋଇପାରେ । ଏକ ଇନ୍ଦ୍ରିୟରୁ ଲାଭ କରାଯାଉଥିବା ଉଦ୍ଦୀପନ - ପ୍ରତିକ୍ରିୟା ଭିନ୍ନ ଭିନ୍ନ ପ୍ରକାରର ହେବା ସମ୍ଭବ । ତେବେ ଆମର ସକଳ ପ୍ରତ୍ୟକ୍ଷ ଜନିତ ଜ୍ଞାନର ଆଧାର ଗୋଟିଏ ମାନଦଣ୍ଡରେ ପାଞ୍ଚଟି ଇନ୍ଦ୍ରିୟ ଦ୍ୱାରା ଉଦ୍ଭବ ହେବା ଅନୁମାନ କରାଯାଏ । ବସ୍ତୁତଃ ଇନ୍ଦ୍ରିୟ ଆଧାରିତ ଜ୍ଞାନ ହିଁ ପ୍ରତ୍ୟକ୍ଷ ଓ ପ୍ରତ୍ୟକ୍ଷ ସକଳ ବସ୍ତୁନିଷ୍ଠ ଜ୍ଞାନର ମୂଳଭିତ୍ତି । ଗଣିତ, ତର୍କଶାସ୍ତ୍ର ଇତ୍ୟାଦି ଆକାରନିଷ୍ଠ ଅଧ୍ୟୟନ (formal studies) କ୍ଷେତ୍ରରେ ବୁଦ୍ଧିବାଦକୁ ଜ୍ଞାନର ଅନ୍ୟ ଏକ ଆଧାର ଭାବରେ ନିଆଯାଏ । ପ୍ରତ୍ୟକ୍ଷ ଜନିତ ଅନୁଭବବାଦ (ଯାହା ଇନ୍ଦ୍ରିୟ ଆଧାରିତ) ଓ ବିଚାର ଜନିତ ତର୍କ-ବୁଦ୍ଧିବାଦ (ଯାହା ଚିନ୍ତା ଆଧାରିତ) ଜ୍ଞାନର ଦୁଇଟି ମୌଳିକ ଆଧାର ଓ ଏ ସମ୍ପର୍କରେ ଆମେ ଦ୍ୱିତୀୟ

ଅଧ୍ୟାୟରେ (ବିଜ୍ଞାନ ଓ ଦର୍ଶନ) କିଞ୍ଚିତ ଆଲୋଚନା କରିଛେ । ମଣିଷ ବା ବିକଶିତ ପ୍ରାଣୀମାନଙ୍କ ମଧ୍ୟରେ ଉପର ସୂଚିତ ଇନ୍ଦ୍ରିୟ ମାନ ରହିବା ଦେଖାଯାଏ । ତେବେ ଏପରି କେତେକ ପ୍ରାଣୀ ରହିଛନ୍ତି ଯେଉଁମାନଙ୍କ ପାଖରେ ଏକ ଷଷ୍ଠ ଇନ୍ଦ୍ରିୟ ଥିବା ଜଣାଯାଏ । ପାରା, ମହୁମାଛି, ଦେଶାନ୍ତର ଗମନ କରୁଥିବା କେତେକ ପକ୍ଷୀ, କୁକୁର, ପିମ୍ପୁଡି ଇତ୍ୟାଦି ପ୍ରାଣୀମାନେ ଗତିଜନିତ ଦିଗ ନିର୍ଣ୍ଣୟ କରିପାରନ୍ତି । ଗୋଟିଏ ସ୍ଥାନରୁ ବାହାରି ଅନ୍ୟ ଏକ ସ୍ଥାନରେ ପହଞ୍ଚିବା ବା ପୁନଶ୍ଚ ନିଜର ସ୍ଥାନକୁ ଫେରି ପାରିବାର ସାମର୍ଥ୍ୟ ଜନିତ ଦିଗ ଜାଣିବା କ୍ଷେତ୍ରରେ ସେମାନେ ଉଦ୍ଦୀପନା ଲାଭକରିଥାନ୍ତି । କୁକୁର, ମହୁମାଛି, ପିମ୍ପୁଡି ପରି ଜୀବମାନେ ସେମାନଙ୍କର ଘ୍ରାଣ ଶକ୍ତିଦ୍ୱାରା ଗୋଟିଏ ସ୍ଥାନ ବା ଦିଗକୁ ସ୍ଥିର କରିପାରନ୍ତି । ଦିଗ ନିର୍ଣ୍ଣୟ ଜନିତ ଅନୁଭବ କେତେକ ପ୍ରାଣୀ ସେମାନଙ୍କ ଇନ୍ଦ୍ରିୟଦ୍ୱାରା ଜାଣିପାରନ୍ତି । ପରିବେଶରେ ବିଭିନ୍ନ ପ୍ରାଣୀଙ୍କର ଇନ୍ଦ୍ରିୟ ଜନିତ ଉଦ୍ଦୀପନା ଭିନ୍ନ ଭିନ୍ନ ହୋଇଥାଏ । କେଉଁ ପ୍ରାଣୀ ପାଖରେ ଦୁଇଟି, ତିନୋଟି ଇନ୍ଦ୍ରିୟ ଥାଏ, ମଣିଷ କିନ୍ତୁ ମୁଖ୍ୟତଃ ପାଞ୍ଚଟି ଇନ୍ଦ୍ରିୟ ସାହାଯ୍ୟରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିଥାଏ । ଗୋଟିଏ ପ୍ରାଣୀର ଇନ୍ଦ୍ରିୟ ଜନିତ ଅନୁଭବ ନେଇ ସେ ପରିବେଶକୁ ପ୍ରତ୍ୟକ୍ଷ କରିବାକୁ ସମର୍ଥ ହୋଇଥାଏ । ମଣିଷ ତାର ପଞ୍ଚ ଜ୍ଞାନେନ୍ଦ୍ରିୟ ସାହାଯ୍ୟରେ ଯେଉଁ ଅନୁଭବ ଲାଭକରେ, ତାହା ହେଉଛି ତାର ପ୍ରତ୍ୟକ୍ଷ । ବସ୍ତୁତଃ ଇନ୍ଦ୍ରିୟ - ଆଧାରିତ ଜ୍ଞାନ ହେଉଛି ପ୍ରତ୍ୟକ୍ଷ । ପ୍ରତ୍ୟକ୍ଷ ମୁଖ୍ୟତଃ ପାଞ୍ଚ ଜ୍ଞାନେନ୍ଦ୍ରିୟ ଦ୍ୱାରା ସମାପିତ ହୋଇଥାଏ ।

ତେବେ ବ୍ୟକ୍ତି ଭିତରେ ଯେଉଁ ସାମର୍ଥ୍ୟ ଯୋଗୁଁ ସେ ବିଭିନ୍ନ କାର୍ଯ୍ୟ ସମ୍ପାଦନ କରିଥାଏ ତାହାକୁ କର୍ମେନ୍ଦ୍ରିୟ କୁହାଯାଏ । କର୍ମ କରୁଥିବା ଶାରୀରିକ ଅଙ୍ଗର ଶକ୍ତି ହେଲା କର୍ମେନ୍ଦ୍ରିୟ । ଯେପରି ପାଟି ସାହାଯ୍ୟରେ ମଣିଷ କଥା କହେ, ହାତ ସାହାଯ୍ୟରେ କାର୍ଯ୍ୟକରେ, ପାଦ ସାହାଯ୍ୟରେ ଚଳ ପ୍ରଚଳ କରେ, ମଳଦ୍ୱାର ସାହାଯ୍ୟରେ ଦେହରୁ ଅନାବଶ୍ୟକ ବସ୍ତୁ ନିଷ୍କାସନ କରେ ଓ ଯୌନାଙ୍ଗ ସାହାଯ୍ୟରେ ବଂଶ ବୃଦ୍ଧିକରିପାରେ । ପାଟି, ହାତ, ପାଦ, ଗୁହ୍ୟଦ୍ୱାର ଓ ଯୌନାଙ୍ଗରେ ଅନ୍ତର୍ନିହିତ ଥିବା ସାମର୍ଥ୍ୟ ଯୋଗୁଁ କର୍ମ କରିବା ସମ୍ଭବ ହୋଇଥାଏ । କେତେକ ଏହି ସବୁକୁ କର୍ମେନ୍ଦ୍ରିୟ କହିଥାନ୍ତି । ପରିବେଶକୁ ଜାଣିବାକୁ ଜ୍ଞାନେନ୍ଦ୍ରିୟର ପ୍ରୟୋଗ କରାଯାଉଥିବା ବେଳେ କାର୍ଯ୍ୟ ସମ୍ପାଦନ ପାଇଁ କର୍ମେନ୍ଦ୍ରିୟର ପ୍ରୟୋଗ ହୋଇଥାଏ ।

ଗୋଟିଏ ଦାର୍ଶନିକ ମତରେ ମଣିଷ ଯାହା ସାହାଯ୍ୟରେ ଚିନ୍ତାକରେ ତାହା ହେଲା ପ୍ରତ୍ୟୟ । ଆମ ମାନସର ବା ବୋଧ-ଶକ୍ତିରେ ଯାହା କିଛି ବିଷୟ ଆସେ ତାହା ହେଉଛି ପ୍ରତ୍ୟୟ ବା ଆଇଡିଆ । ଆମ ମନକୁ ଅନୁଭବରୁ ପ୍ରତ୍ୟୟମାନ ଆସନ୍ତି । ପ୍ରତ୍ୟକ୍ଷ ଜନିତ ଅନୁଭବଦ୍ୱାରା ଆମ ମନରେ ପ୍ରତ୍ୟୟ ସୃଷ୍ଟି ହୁଏ ଓ ଏହି ପ୍ରତ୍ୟୟ ଗୁଡିକ ଆମ ଜ୍ଞାନର ଆଧାର । ପୁନଶ୍ଚ ଆମର ସକଳ ଅନୁଭବକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ ଯଥା ଇନ୍ଦ୍ରିୟ - ଆଧାରିତ ଓ ଚିନ୍ତନ-ଆଧାରିତ ଯାହାକୁ ଦାର୍ଶନିକ ପରିଭାଷାରେ ସମ୍ବେଦନ (sensation) ଓ ସଚିନ୍ତନ (reflection) କୁହାଯାଏ । ଯାହା ଆମେ ଇନ୍ଦ୍ରିୟ ସାହାଯ୍ୟରେ ଲାଭକରେ ତାହା ହେଲା ସମ୍ବେଦନ । ସ୍ପର୍ଶକରି, ଘ୍ରାଣକରି, ଦେଖିକରି, ଚାଖିକରି ଓ ଶୁଣିକରି ଆମେ ନାନା ପ୍ରତ୍ୟୟ ଆମ ପରିବେଶ ସମ୍ପର୍କରେ ଲାଭ କରିଥାଏ । ସୁତରାଂ ଏହି ସମ୍ବେଦନ ଜନିତ ଇନ୍ଦ୍ରିୟାନୁଭବ ହେଉଛି ଆମ ଜ୍ଞାନର ଉତ୍ସ । ତେବେ ଆମେ ଇନ୍ଦ୍ରିୟ ସାହାଯ୍ୟରେ ଯେଉଁ ଅନୁଭବ ଲାଭକରୁ ସେ ସବୁକୁ ଯାହାଦ୍ୱାରା ଆମର ମାନସ ପଟରେ ସଜାଇକରଣ ଓ ଶୃଙ୍ଖଳିତ କରାଯାଏ ତାହା ହେଲା ସଚିନ୍ତନ । ଇନ୍ଦ୍ରିୟ-ଲବ୍ଧ ପ୍ରତ୍ୟୟ ମାନଙ୍କୁ ସମ୍ବନ୍ଧିତ ଓ ସଙ୍ଗଠିତ କରିବା ମନର କାର୍ଯ୍ୟ । ଇନ୍ଦ୍ରିୟ ଦ୍ୱାରା ପ୍ରାପ୍ତ ଉପାଦାନ ସକଳକୁ ନେଇ ମନ ଜ୍ଞାନର ନିର୍ମାଣ କରିଥାଏ । ପୁନଶ୍ଚ ସଚିନ୍ତନ ସାହାଯ୍ୟରେ ମଧ୍ୟ ଆମର ବିଭିନ୍ନ ପ୍ରତ୍ୟୟ ସୃଷ୍ଟି ହୋଇଥାଏ । ଆମେ ଆମର ମାନସିକ କ୍ରିୟା ବିଷୟରେ ସଚେତନ ହେବା, ବିଶ୍ୱାସ କରିବା, ଚିନ୍ତା କରିବା, ସୁଖ, ଦୁଃଖର ଅନୁଭବ ପାଇବା ଇତ୍ୟାଦି ସଚିନ୍ତନ ସାହାଯ୍ୟରେ ଲାଭ କରିଥାଏ । ସମ୍ବେଦନ ଯୋଗୁଁ ହେଉ, ସଚିନ୍ତନ ଯୋଗୁଁ ହେଉ ବା ଉଭୟ ସାହାଯ୍ୟରେ ହେଉ ଆମେ ଯେଉଁ ସବୁ ପ୍ରତ୍ୟୟ ଲାଭ କରିଥାଏ ତାହାକୁ ନେଇ ଆମର ଜ୍ଞାନ ଗଢିଉଠିଥାଏ । ମୋଟ ଉପରେ କହିଲେ ଆମର ସକଳ ଜ୍ଞାନ ପ୍ରତ୍ୟୟ-ଆଧାରିତ । ପ୍ରତ୍ୟୟ ମାନଙ୍କର ଉତ୍ସ ହେଉଛି ସମ୍ବେଦନ ଓ ସଚିନ୍ତନ ।

ଜ୍ଞାନର ଆଧାର, ସ୍ୱରୂପ,ବୈଧତା, ସୀମା ପ୍ରଶ୍ନ ଗୁଡିକ ବେଶ୍ ଜଟିଳ ଓ ଏସବୁ ଦର୍ଶନ ପରିସରରେ ଆଲୋଚିତ ହେବା ଦେଖାଯାଏ । ଏଥିପାଇଁ ଜ୍ଞାନମୀମାଂସାକୁ ନେଇ ନାନା ଜଟିଳ ସିଦ୍ଧାନ୍ତମାନ ଦର୍ଶନ ପରିସରରେ ରହିଛି ।

ମଣିଷ ନିଜର ଇନ୍ଦ୍ରିୟ ସାହାଯ୍ୟରେ ବସ୍ତୁନିଷ୍ଠ ଜ୍ଞାନ ଲାଭ କରିଥାଏ । ସକଳ ବୈଜ୍ଞାନିକ ଜ୍ଞାନ ବସ୍ତୁନିଷ୍ଠ; ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ହିଁ ଏହାର ମୂଳଭିତ୍ତି । ପ୍ରତ୍ୟକ୍ଷ

ଜନିତ ଜ୍ଞାନର ଉତ୍ସ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ । ତେବେ ବୈଜ୍ଞାନିକ ଜ୍ଞାନ ଜନିତ ଦୃଷ୍ଟିଭଙ୍ଗୀର ବିକାଶର ବହୁ ପୂର୍ବରୁ ମଣିଷ ନିଜର ଇନ୍ଦ୍ରିୟ ଲବ୍ଧ ଜ୍ଞାନ ଭିତରେ ସନ୍ତୁଷ୍ଟ ହୋଇନାହିଁ । ନିଜର ଭାଗ୍ୟ, ଭବିଷ୍ୟତ ତଥା ଅନ୍ୟର ମନର ଭାବନା ମଣିଷ ଜାଣିବାକୁ ଆଗ୍ରହୀ ହୋଇଛି, କିନ୍ତୁ ଏହି ଜ୍ଞାନ ତାର ଇନ୍ଦ୍ରିୟ ଆଧାର ଭିତରେ ସେ ଜାଣିବାକୁ ସମର୍ଥ ନୁହେଁ । ସୁତରାଂ କିଛି ଚତୁର ଓ କୌଶଳୀ ବ୍ୟକ୍ତି ଛଳନାତ୍ମକ ଭାବେ ନିଜର ଆଧିଭୌତିକ ସାମର୍ଥ୍ୟ ବିଷୟ କହି ଭବିଷ୍ୟବାଣୀ ଶୁଣାଇଛନ୍ତି । କୌଣସି ଦେବ-ଦେବୀ, ଈଶ୍ୱର ଇତ୍ୟାଦି ଅତୀନ୍ଦ୍ରିୟ ଶକ୍ତିଠାରୁ ସେମାନେ ଅଲୌକିକ ଶକ୍ତି ମାଧ୍ୟମରେ ଲୋକମାନଙ୍କର ଭାଗ୍ୟ ଓ ଆଗତ ଭବିଷ୍ୟତ ଘଟଣା ଜାଣିବାର ଅଭିନୟ କରିଛନ୍ତି । ଏପରିକି ଏହି ଚତୁର ଲୋକମାନେ ଲୋକମାନଙ୍କର ଅଜ୍ଞତା ଓ ମନସ୍ତତ୍ତ୍ୱକୁ ବୁଝି ସେହିପରି ଭବିଷ୍ୟତବାଣୀ କରିବାକୁ ପ୍ରୟାସ କରିଛନ୍ତି । ଏହାକୁ ଆଧାର କରି ଗୁହ୍ୟ ବିଦ୍ୟା (occultism) ଜନିତ ବିଶ୍ୱାସ ସମାଜରେ ସୃଷ୍ଟି ହୋଇଛି । ପୂଜକ, କାପାଳିକ, ତାନ୍ତ୍ରିକ, ଜ୍ୟୋତିଷୀ, ହସ୍ତରେଖା ପାଠକ ଇତ୍ୟାଦି ବହୁ ବ୍ୟକ୍ତି ଏବେ ସମାଜରେ ରହି ଲୋକମାନଙ୍କର ଆଗତ-ଭବିଷ୍ୟତ, ଶୁଭ-ଅଶୁଭ ଇତ୍ୟାଦି ବିଷୟରେ କହିବା ଆମେ ଦେଖେ । ସେମାନେ ଏସବୁ କିପରି ଜାଣୁଛନ୍ତି ବା ଏସବୁ ଘଟିବ ବୋଲି କିପରି କହିହେବ ବୋଲି ପ୍ରଶ୍ନ କଲେ ସେମାନେ ରାଶିଫଳ, ଜାତକ, ରହସ୍ୟମୟ ଗଣନା ଇତ୍ୟାଦି ନାନା ଗୁହ୍ୟ ବିଦ୍ୟା, ଐନ୍ଦ୍ରଜାଲିକ ତତ୍ତ୍ୱ ଇତ୍ୟାଦିର ଅବତାରଣା କରନ୍ତି । ତେବେ ଏସବୁର କୌଣସି ବୈଜ୍ଞାନିକ ଭିତ୍ତିନାହିଁ । କାରଣ ବୈଜ୍ଞାନିକ ଜ୍ଞାନ ଏକ ମୁକ୍ତ ଓ ସାର୍ବଜନୀନ ପ୍ରଣାଳୀ ମାଧ୍ୟମରେ ଲାଭ କରାଯାଏ । ବୈଜ୍ଞାନିକ ଜ୍ଞାନ ବସ୍ତୁନିଷ୍ଠ, ମୁକ୍ତ, ସାର୍ବଜନୀନ ଓ ପ୍ରଣାଳୀବଦ୍ଧ । ପୁନଶ୍ଚ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ ଓ ନୂତନ ଅନୁଭୂତି ବା ପର୍ଯ୍ୟବେକ୍ଷଣ ଆଧାରରେ ପରିବର୍ତ୍ତନ ସାପେକ୍ଷ । କିନ୍ତୁ ତନ୍ତ୍ର, ମନ୍ତ୍ର, ଜ୍ୟୋତିଷ, ସଂଖ୍ୟାତତ୍ତ୍ୱ,ହସ୍ତରେଖା ଇତ୍ୟାଦି ବିଷୟ ଗୁଡିକ କୌଣସି କାର୍ଯ୍ୟକାରଣ ନିୟମ, ପ୍ରାକୃତିକ ଶୃଙ୍ଖଳା ବା ବୈଜ୍ଞାନିକ ପଦ୍ଧତି ଉପରେ ଆଧାରିତ ନୁହେଁ ଓ ସେସବୁ ପ୍ରାଚୀନ ଯୁଗରୁ ଚଳି ଆସୁଥିବା କେତେକ ବିଶ୍ୱାସ ମାତ୍ର ।

## ମନୋବିଜ୍ଞାନ ଓ ପରାମନୋବିଜ୍ଞାନ

ମନୋବିଜ୍ଞାନ ଏକ ବିଜ୍ଞାନ ଭାବେ ବିଂଶ ଶତାବ୍ଦୀ ଆରମ୍ଭରୁ ବିକାଶଲାଭ କରିଛି । ବିଜ୍ଞାନ ବାହ୍ୟ ଜଗତର ଅସଂଖ୍ୟ ଘଟଣାବଳିକୁ ବର୍ଗୀକରଣକରି ତଥ୍ୟ ଗୁଡିକର ପର୍ଯ୍ୟବେକ୍ଷଣ ପୂର୍ବକ ସେସବୁକୁ ନିର୍ଦ୍ଦିଷ୍ଟ ପଦ୍ଧତିରେ ବ୍ୟାଖ୍ୟା କରିଥାଏ ।

ବସ୍ତୁ ଓ ଘଟଣା ସକଳକୁ ଆମର ପର୍ଯ୍ୟବେକ୍ଷଣ- ପରୀକ୍ଷଣ ଜନିତ ପ୍ରତ୍ୟକ୍ଷ ଆଧାରରେ ଶୃଙ୍ଖଳିତ ଭାବେ ବ୍ୟାଖ୍ୟା କରିବା ଓ ପ୍ରକୃତିରେ ନିହିତ ଥିବା ଶୃଙ୍ଖଳାକୁ ଆବିଷ୍କାର କରିବା ବିଜ୍ଞାନର ଏକ ମୁଖ୍ୟ ଉଦ୍ଦେଶ୍ୟ । ଏହା ବର୍ଣ୍ଣନାମୂଳକ ଓ ବ୍ୟାଖ୍ୟାମୂଳକ । ବୈଜ୍ଞାନିକ ପଦ୍ଧତି ସାର୍ବଜନୀନ ଓ ଶୃଙ୍ଖଳିତ ।

ମନୋବିଜ୍ଞାନ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ କରି ବ୍ୟକ୍ତିର ପରିବେଷ୍ଟନୀ ସହ ସମ୍ପର୍କକୁ ବ୍ୟାଖ୍ୟା କରିଥାଏ । ବ୍ୟକ୍ତିର ବିଭିନ୍ନ ଆଚରଣକୁ ଏହା ଅଧ୍ୟୟନ କରେ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବ୍ୟକ୍ତି ଯାହା କରେ ତାହା ତାର ଆଚରଣ । ପ୍ରତ୍ୟେକ ବିଜ୍ଞାନ ପରି ମନୋବିଜ୍ଞାନର ବିଷୟବସ୍ତୁ ସୁନିର୍ଦ୍ଦିଷ୍ଟ । ଜୀବିତ ପ୍ରାଣୀ ଓ ତାହାର ପାରିପାର୍ଶ୍ୱିକ ପରିବେଶ ସହିତ ତାର ସମ୍ବନ୍ଧକୁ ତଥ୍ୟଭିତ୍ତିକ ଆଧାରରେ ବ୍ୟାଖ୍ୟା କରିବା ମନୋବିଜ୍ଞାନର ଲକ୍ଷ୍ୟ । ମନୁଷ୍ୟ ଯେହେତୁ ଏକ ସାମାଜିକ ପ୍ରାଣୀ, ବ୍ୟକ୍ତିର ଆଚରଣ ଓ ବ୍ୟବହାର ସାମାଜିକ ପରିବେଶଦ୍ୱାରା ପ୍ରଭାବିତ ହୋଇଥାଏ । ବସ୍ତୁତଃ ମନୋବିଜ୍ଞାନ ବ୍ୟକ୍ତିର ଆଚରଣ, ପାରିପାର୍ଶ୍ୱିକ ପରିସ୍ଥିତି, ମାନସିକ ଆବେଗ, ଶାରୀରିକ କ୍ରିୟା ଇତ୍ୟାଦିର ବିଶ୍ଳେଷଣ କରିଥାଏ । ବ୍ୟକ୍ତିର ସାମାଜିକ ସମ୍ବନ୍ଧ ଅତି ଜଟିଳ ହୋଇଥିବାରୁ ପାରିପାର୍ଶ୍ୱିକ ପରିବେଶ ବ୍ୟକ୍ତି ଭିତରେ କି ପ୍ରକାରର ମାନସିକ ଆବେଗ, ପ୍ରତିକ୍ରିୟା ସୃଷ୍ଟିକରେ ସେସବୁ ମଧ୍ୟ ମନୋବିଜ୍ଞାନ ବିବେଚନା କରିଥାଏ । ଏକ ମାନସିକ ପ୍ରକ୍ରିୟା କିପରି ଓ କାହିଁକି ସୃଷ୍ଟି ହୁଏ, ତାର କାରଣ ଓ ପ୍ରଭାବକୁ ମଧ୍ୟ ଏଥିରେ ଆଲୋଚନାକୁ ନିଆଯାଏ । ଏହା ସହିତ ବ୍ୟକ୍ତିର ଅନୁଭୂତି କିପରି ବ୍ୟକ୍ତିର ସ୍ୱଭାବ, ସମ୍ବେଦନ, ଆଚରଣ ଇତ୍ୟାଦିକୁ ପ୍ରଭାବିତ କରିଥାଏ ତାହା ବି ଏହି ବିଜ୍ଞାନର ପରିସର ଭିତରକୁ ଆସିଥାଏ । ମାନସିକ ପ୍ରକ୍ରିୟା ସହିତ ଶରୀରତତ୍ତ୍ୱର ଘନିଷ୍ଠ ସମ୍ବନ୍ଧ ରହିଥିବାରୁ ଶରୀରତତ୍ତ୍ୱ ସହିତ ସଂପୃକ୍ତ ବିଷୟ ବି ଏହାର ପରିସର ଭିତରକୁ ଆସିଥାଏ । ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶରେ ସାମାଜିକ ପରିବେଷ୍ଟନୀର ପ୍ରଭାବ, ପାରିବାରିକ ପରିବେଶ, ବ୍ୟକ୍ତିର ସହଜାତ ପ୍ରବୃତ୍ତି କଣ ଭୂମିକା ନିଏ ସେସବୁ ଏହାର ଅଧ୍ୟୟନ ସ୍ତରକୁ ଆସିଥାଏ । ମୋଟ ଉପରେ କହିଲେ ମନୁଷ୍ୟର ଆଚରଣ, ବ୍ୟବହାର,ବ୍ୟକ୍ତିତ୍ୱ, ମାନସିକ ପ୍ରକ୍ରିୟା ଇତ୍ୟାଦିର ସମୀକ୍ଷାମୂଳକ ବିଶ୍ଳେଷଣ ମନୋବିଜ୍ଞାନର ବିଷୟ ଅଟେ । ପାରିପାର୍ଶ୍ୱିକ ପରିସ୍ଥିତିରେ ବ୍ୟକ୍ତିର ବ୍ୟବହାରର ସମୀକ୍ଷା କରିବା ସହିତ ଭବିଷ୍ୟତରେ ବ୍ୟକ୍ତିର ଆଚରଣ କିପରି ହେବାର ସମ୍ଭାବନା ଥାଏ ସେ ବିଷୟରେ

ସୂଚନା ଦେବା ବି ମନୋବିଜ୍ଞାନର ଅଧ୍ୟୟନ ପରିସରକୁ ଆସିଥାଏ । ତେବେ ମନୋବିଜ୍ଞାନ ଯେକୌଣସି ପ୍ରାକୃତିକ ବିଜ୍ଞାନପରି ଏସବୁକୁ ବ୍ୟାଖ୍ୟା କରେ ଓ ଏହି ଦୃଷ୍ଟିଭଙ୍ଗୀରେ ଏହା ଘଟଣାମାନଙ୍କୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ଉଚିତ ଅନୁଚିତର ପ୍ରଶ୍ନ ଉଠାଏ ନାହିଁ । ସୁତରାଂ ମନୋବିଜ୍ଞାନକୁ ଔଚିତ ଜନିତ ଅଧ୍ୟୟନ (normative study) କୁହାଯାଏ ନାହିଁ ।

ଏତଦବ୍ୟତୀତ ମନୁଷ୍ୟର ବ୍ୟବହାର ଓ ଆଚରଣର ସମୀକ୍ଷା କରିବା ପୃଷ୍ଠଭୂମିରେ ମନୋବିଜ୍ଞାନ ଗୋଷ୍ଠୀଗତ ବା ସାମାଜିକ ଜୀବନର ବିଭିନ୍ନ ଦିଗ ଉପରେ ସୂଚନା ଦେଇଥାଏ । ଶିଶୁ ମନୋବିଜ୍ଞାନକୁ ଅଧ୍ୟୟନ କରି ଶିକ୍ଷାନୁଷ୍ଠାନରେ କେଉଁ ପ୍ରକାରର ବ୍ୟବସ୍ଥାଦ୍ୱାରା ଶିଶୁ ମାନଙ୍କର ଭବିଷ୍ୟତ ବ୍ୟକ୍ତିତ୍ୱ ଭଲ ଦିଗରେ ବା ଶୃଙ୍ଖଳିତ ଦିଗରେ ଗଢ଼ିଉଠିପାରିବ ତାହା ବି ଏହି ଅଧ୍ୟୟନ ପରିସରକୁ ଆସିଥାଏ । ବ୍ୟକ୍ତିର ସାମାଜିକ ସମ୍ବନ୍ଧ ନାନା ଜଟିଳ ପରିସ୍ଥିତି ଦ୍ୱାରା ପ୍ରଭାବିତ ହେଉଥିବାରୁ ବାଲ୍ୟାବସ୍ଥାରୁ ପ୍ରତ୍ୟେକଙ୍କ ଭିତରେ ସୁସ୍ଥ ଦୃଷ୍ଟିଭଙ୍ଗୀର ବିକାଶ କିପରି ସମ୍ଭବ ହେବ ତାହା ବି ଏହା ଆଲୋଚନା କରିଥାଏ । ତାହାଦ୍ୱାରା ସୁସ୍ଥ ବ୍ୟକ୍ତିତ୍ୱର ବିକାଶ ସମ୍ଭବ ହେଉଥିବାରୁ ଶିଶୁ ମନୋବିଜ୍ଞାନ ଓ ଶିକ୍ଷା ମନୋବିଜ୍ଞାନ ମନୋବିଜ୍ଞାନର ପ୍ରମୁଖ ବିଷୟ ଅଟେ । ବ୍ୟକ୍ତିଗତ ସ୍ତରରେ ହେଉ ବା ପାରିବାରିକ, ଗୋଷ୍ଠୀଗତ ଓ ସାମାଜିକ ଜୀବନ ପୃଷ୍ଠଭୂମିରେ ହେଉ ସୁସ୍ଥ ବ୍ୟକ୍ତିତ୍ୱର ବିକାଶକୁ ମନୋବିଜ୍ଞାନର ଲକ୍ଷ୍ୟ ଭାବରେ ନିଆଯାଏ । ମନୋବିଜ୍ଞାନ ଜନିତ ଅଧ୍ୟୟନ ଉନ୍ନତ ବ୍ୟବହାର ଓ ବ୍ୟକ୍ତିତ୍ୱ ଗଠନରେ ସହାୟକ ହୋଇଥାଏ ।

ମନୋବିଜ୍ଞାନ ସାହାଯ୍ୟରେ ମାନସିକ ଅସୁସ୍ଥତାର ବିଶ୍ଳେଷଣ କରିବା ସମ୍ଭବ ହୋଇଥାଏ । ଅସୁସ୍ଥ ବ୍ୟକ୍ତିତ୍ୱ ବା ମାନସିକ ବ୍ୟାଧି ଗୁଡିକର କାରଣ ନିର୍ଣ୍ଣୟକରି ଅସୁସ୍ଥ ବ୍ୟକ୍ତିତ୍ୱକୁ ସୁପରାମର୍ଶଦ୍ୱାରା ସୁସ୍ଥ ବ୍ୟକ୍ତିତ୍ୱରେ ପରିବର୍ତ୍ତନ କରାଯାଇପାରେ । ଯେଉଁ ବ୍ୟକ୍ତିବିଶେଷ ଭୟ, ଉଦ୍‌ବେଗ, ମାନସିକ ଉତ୍ତେଜନା ବା ସେପରି କିଛି କାରଣ ଯୋଗୁଁ ବ୍ୟବହାର ସ୍ତରରେ ଅସ୍ୱାଭାବିକତା ପ୍ରଦର୍ଶନ କରୁଥାଏ ତାହାକୁ ଅନୁଶୀଳନ କରି ଅସୁସ୍ଥ ବ୍ୟକ୍ତିକୁ ଚିକିତ୍ସା କରାଯାଏ । ମାନସିକ ବ୍ୟାଧିର ଚିକିତ୍ସା ମନୋବିଜ୍ଞାନ ଜନିତ ଜ୍ଞାନ ଭିତରେ ସମ୍ଭବ ହୋଇଥାଏ । ସିଗମଣ୍ଡ ଫ୍ରଏଡ୍ ଓ ତାଙ୍କ ପରବର୍ତ୍ତୀ ବିଶିଷ୍ଟ ମନୋବିଜ୍ଞାନୀମାନେ ମନବିଶ୍ଳେଷଣ କ୍ଷେତ୍ରରେ ଯେଉଁ ଦିଗ୍‌ଦର୍ଶନ ଦେଇଛନ୍ତି

ତାହାଦ୍ୱାରା ବହୁ ମାନସିକ ରୋଗର ଚିକିତ୍ସା ସମ୍ଭବ ହୋଇପାରୁଛି । ଏହା ସାହାଯ୍ୟରେ ମାନସିକ ବିକୃତି ଭୋଗୁଥିବା ବ୍ୟକ୍ତିମାନଙ୍କର ବ୍ୟକ୍ତିତ୍ୱକୁ ଚିକିତ୍ସାଦ୍ୱାରା ସୁସ୍ଥ ବ୍ୟକ୍ତିତ୍ୱରେ ପରିବର୍ତ୍ତନ କରିବା ନେଇ ନୂଆ ଦିଗନ୍ତ ସୃଷ୍ଟି ହେବାରେ ଲାଗିଛି ଓ ଅତୀତରେ ହଜାର ହଜାର ମହିଳାଙ୍କୁ ଅଜ୍ଞତାବଶତଃ ଯେପରି ନାରକୀୟ ଭାବେ ଯନ୍ତ୍ରଣା ଦେବା ଓ ପୋଡି ମାରିଦେବାର ପରିବେଶ ଥିଲା ସେଥିରେ ଗୁଣାତ୍ମକ ପରିବର୍ତ୍ତନ ଆସିଛି । ଏସବୁ ମନୋବିଜ୍ଞାନର ବିକାଶ ଦ୍ୱାରା ସମ୍ଭବ ହୋଇପାରିଛି ।

ମୋଟ ଉପରେ କହିଲେ ମନୋବିଜ୍ଞାନ ଏକ ବିଜ୍ଞାନ ଓ ଏହାର ପରିସର ସୁନିର୍ଦ୍ଦିଷ୍ଟ । ଏହାର ଜ୍ଞାନ ଓ ସିଦ୍ଧାନ୍ତ ବସ୍ତୁନିଷ୍ଠ, ପ୍ରଣାଳୀବଦ୍ଧ, ବିଭାଗୀକୃତ ଓ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନ ସାପେକ୍ଷ । ଏହା ମୁଖ୍ୟତଃ ସାମାଜିକ ପରିବେଶରେ ମନୁଷ୍ୟର ବ୍ୟବହାର, ଆଚରଣ, ମାନସିକ କ୍ରିୟା, ସାମାଜିକ ଜୀବନଧାରା ଓ ସମସ୍ୟା, ମାନସିକ ବ୍ୟାଧିର ନିରାକରଣ ଇତ୍ୟାଦି ପ୍ରସଙ୍ଗ ସହିତ ସଂଶ୍ଲିଷ୍ଟ । ବିଜ୍ଞାନ ସମ୍ମତ ପଦ୍ଧତିରେ ଯେକୌଣସି ବ୍ୟକ୍ତି ବା ପ୍ରାଣୀର ସାମାଜିକ ପରିବେଶରେ ବ୍ୟବହାରକୁ ଅନୁଶୀଳନ କରିବା ମନୋବିଜ୍ଞାନର ମୌଳିକ ଆଭିମୁଖ୍ୟ ।

ବିଂଶ ଶତାବ୍ଦୀ ଆରମ୍ଭରୁ ମନୋବିଜ୍ଞାନ ଏକ ବିଜ୍ଞାନ ଭାବେ ଚିନ୍ତାରାଜ୍ୟରେ ଏକ ନୂତନ ଦିଗନ୍ତ ଉନ୍ମୋଚନ କଲା । ମନୋବିଜ୍ଞାନର ଅଭ୍ୟୁଦୟ ପୂର୍ବରୁ ମନୋବିଜ୍ଞାନ ଛାୟାରେ ପରାମନୋବିଜ୍ଞାନ ବା ପରାମନୋବିଦ୍ୟା (parapsychology) ଏକ ବିଷୟ ଭାବେ ରହିଥିଲା । ଅନ୍ୟ ମନର ନିଗୂଢ ରହସ୍ୟକୁ ଜାଣିବା ବା ଭବିଷ୍ୟତରେ କଣ ଘଟିବାକୁ ଯାଉଛି ସେସବୁ ବିଷୟରେ ଅବଗତ ହେବାପାଇଁ ମଣିଷ ମନରେ ନାନା କୌତୂହଳତା ରହିଛି । ଅତୀତରେ ଏସବୁ ଜାଣିବାପାଇଁ ଲୋକମାନେ ଭବିଷ୍ୟତ ବକ୍ତା,ତାନ୍ତ୍ରିକ,ଜ୍ୟୋତିଷମାନଙ୍କର ସାହାଯ୍ୟ ନେଉଥିଲେ । ସେମାନେ ସେଯୁଗର କେତେକ ଧାରଣାନୁଯାୟୀ ଲୋକମାନଙ୍କୁ ପରାମର୍ଶ ଦେଉଥିଲେ । ଏହା ସହିତ ନାନା ଧାର୍ମିକ ବିଶ୍ୱାସ, ଅଲୌକିକ ଶକ୍ତି, ଦୈବୀକୃପା ଇତ୍ୟାଦି ଭାବନା ସଂଶ୍ଳିଷ୍ଟ ହୋଇ ରହିଥିଲା । ସେହିପରି କୌଣସି ବ୍ୟକ୍ତିର କିଛି ଅସାଭାବିକ ବ୍ୟବହାର ଦେଖିଲେ ଲୋକମାନେ ଗୁଣିଆ,ତାନ୍ତ୍ରିକ ବା କାପାଳିକମାନଙ୍କର ସାହାଯ୍ୟ ନେଉଥିଲେ । ମନ୍ଦ ଆତ୍ମାର ପ୍ରବେଶ, ଭୂତ-ଡାହାଣୀର ପ୍ରଭାବ, ଗୁଣିଟୁଣିର ପରିଣାମ ଇତ୍ୟାଦି ଭାବନା ଆଧାରରେ ସେସବୁକୁ ସେତେବେଳେ ଲୋକମାନେ ବୁଝୁଥିଲେ । ଗୁଣିଆ ବା

ତାନ୍ତ୍ରିକମାନେ ଏଥିପାଇଁ କେତେ କେତେ ଉପଚାର ବତାଉଥିଲେ । ଏପରିକି ଅସ୍ୱାଭାବିକ ବ୍ୟବହାର ପ୍ରଦର୍ଶନ କରୁଥିବା ବ୍ୟକ୍ତିମାନଙ୍କୁ ଭୟଙ୍କର ଶାରୀରିକ ଯନ୍ତ୍ରଣା ଦିଆଯିବାସହ ମନ୍ଦ-ଆତ୍ମାକୁ ନଷ୍ଟ କରିବା ଉଦ୍ଦେଶ୍ୟରେ ଅଗଣିତ ମହିଳାଙ୍କୁ ଡାହାଣୀ ଭାବି ପୋଡି ମାରି ଦିଆଯାଉଥିଲା । ମାତ୍ର ଦୁଇ ଶହ, ତିନି ଶହ ବର୍ଷ ତଳେ ଏହି ପରିବେଶ ରହିଥିଲା ।

ଏହା ସହିତ କେତେକ ରହସ୍ୟମୟ ଘଟଣା, ଭବିଷ୍ୟ ବର୍ଣ୍ଣନା, ଅସ୍ୱାଭାବିକ ଅନୁଭୂତି, ସ୍ୱପ୍ନ ଇତ୍ୟାଦି ବିଷୟ ଗୁଡିକ ବୁଝିବା ପାଇଁ ମଣିଷ ମନରେ ନାନା କୌତୂହଳତା ରହିଥିଲା । ସେତେବେଳେ ସର୍ବବ୍ୟାପୀ ବିଶ୍ୱାସ ଥିଲା ଯେ ମଣିଷର ଆତ୍ମା ରହିଛି ଓ ମୃତ୍ୟୁରେ ତାର ଅବିନାଶୀ ଆତ୍ମା ରହିଥାଏ । ସେହି ଆତ୍ମାମାନେ ସମୟେ ସମୟେ ମଣିଷକୁ ଭବିଷ୍ୟ ସୂଚନା ଦିଅନ୍ତି । ସ୍ୱପ୍ନରେ ଆବିର୍ଭୂତ ହୋଇ କେତେକ ନିର୍ଦ୍ଦେଶ ଦିଅନ୍ତି । ସ୍ୱପ୍ନମାନଙ୍କର କାରଣ ବିଷୟରେ ଯେତେବେଳେ ଜଣା ନଥିଲା,ସ୍ୱପ୍ନମାନଙ୍କୁ ନାନା ରହସ୍ୟମୟ ଉପାୟରେ ମଣିଷ ବ୍ୟାଖ୍ୟା କରୁଥିଲା । କେତେକ ବ୍ୟକ୍ତି ନିଜର ଅଲୌକିକ ସାମର୍ଥ୍ୟ ଯୋଗୁଁ ଭବିଷ୍ୟତ ଯେ ଜାଣିପାରିବେ ଏହା ମଧ୍ୟ ବିଶ୍ୱାସ କରାଯାଇଥିଲା । କଳ୍ପିତ ଦେବ ଦେବୀ ବା ଈଶ୍ୱରୀୟ ନିର୍ଦ୍ଦେଶ ପାଇବାପାଇଁ ଲୋକମାନେ ବିଶ୍ୱାସର ଦିଅଁ ଦେବତା ପାଖରେ ଅଧିଆ ପଡୁଥିଲେ । ସେହିପରି କେତେକ ବ୍ୟକ୍ତି ଅତୀନ୍ଦ୍ରିୟ ପ୍ରତ୍ୟକ୍ଷଦ୍ୱାରା କଣ ହେବାକୁ ଯାଉଛି ସେସବୁ ଜାଣି ପାରୁଥିଲେ ବୋଲି ଲୋକବିଶ୍ୱାସ ଥିଲା । ସାଧନା ବଳରେ କୌଣସି ବ୍ୟକ୍ତି ସମାଧିସ୍ଥ ହୋଇ ଦିବ୍ୟ ଜ୍ଞାନର ଅଧିକାରୀ ହୋଇପାରିବ ବୋଲି ଧାରଣା ମଧ୍ୟ ସମାଜରେ ରହିଥିଲା । ମୃତ ବ୍ୟକ୍ତିର ଆତ୍ମାକୁ ଆବାହନ କରି ମୃତ ବ୍ୟକ୍ତିର ଆତ୍ମାଠାରୁ ନିର୍ଦ୍ଦେଶ ପାଇଁ କୌଶଳପୂର୍ଣ୍ଣ ଭାବେ ଲୋକମାନଙ୍କୁ ଜଣାଇବାକୁ କେତେକ ବ୍ୟକ୍ତି ନିଜକୁ ମାଧ୍ୟମ କରିଥିଲେ । ସେହିପରି ନିଜର ଚିନ୍ତାକୁ ଦୂରରେଥିବା ଅନ୍ୟପାଖକୁ ପ୍ରେରଣ କରାଯାଇପାରିବ ବୋଲି ମଧ୍ୟ ବିଶ୍ୱାସ ଥିଲା । ଗୋଟିଏ ସ୍ଥାନରେ ରହି ଅନ୍ୟ ସ୍ଥାନରେ କଣ ଘଟୁଛି ଆଧ୍ୟାତ୍ମିକ ସାଧନାଦ୍ୱାରା ଜାଣିହେବ ବୋଲି ଲୋକେ ବିଶ୍ୱାସ କରୁଥିଲେ । ଏହିସବୁ ଜ୍ଞାନ, ଚମତ୍କାରିତା, ଭବିଷ୍ୟ- ଦୃଷ୍ଟି, ପ୍ରାକ୍ ସଂଜ୍ଞାନ ଜନିତ ଅବଧାରଣା ଥିଲା ପରାମନୋବିଦ୍ୟାର (para-psychology) ପରିସରଭୁକ୍ତ ।

ବିଭିନ୍ନ ସଭ୍ୟତାରେ ଚମତ୍କାରିତା ବା ଐନ୍ଦ୍ରିଜାଲିକ ଯାଦୁବିଦ୍ୟାକୁ ସତ୍ୟ ବୋଲି ଗ୍ରହଣ କରାଯାଉଥିଲା । ବିଶ୍ୱାସ ଥିଲା ଯେ ଯୋଗ, ସାଧନା ଓ ତପସ୍ୟାଦ୍ୱାରା ଏହି ସବୁ ଅଲୌକିକ ବିଭୂତି ହାସଲ କରିହେବ । ଭାରତୀୟ ଦର୍ଶନର ଯୋଗ ସିଷ୍ଟମରେ ମଣିଷ ଯୋଗସାଧନା ଦ୍ୱାରା କି ପ୍ରକାର ଶକ୍ତିର ଅଧିକାରୀ ହୋଇପାରିବ ତାହାର ବିସ୍ତୃତ ଆଲୋଚନା ହୋଇଛି । ଯୋଗର ଯେଉଁ ସାଧନା ପଦ୍ଧତି ରହିଛି କେଉଁ ସ୍ତରରେ କି ପ୍ରକାରର ସିଦ୍ଧି ଆସିପାରିବ ତାହାର ବ୍ୟାଖ୍ୟା ହୋଇଛି । ଆସନଦ୍ୱାରା ଶରୀରକୁ ଏପରି ନିୟନ୍ତ୍ରଣ କରିବା ସମ୍ଭବ ଯାହାଦ୍ୱାରା ଆମର ଶରୀର ଯେତେ ଶୀତ ବା ଖରା ହେଉନା କାହିଁକି ତାହା ସହ୍ୟ କରିପାରିବ । ଯୋଗୀମାନେ ଖରାଦିନେ ଅଗ୍ନି ସମ୍ମୁଖରେ ବା ଶୀତ ଦିନେ ଜଳରେ ରହି ତପସ୍ୟା କରିବା ସମ୍ଭବ ବୋଲି ବିଶ୍ୱାସ ଥିଲା । ଧ୍ୟାନଦ୍ୱାରା ଯେକୌଣସି ବିଷୟରେ ପୂର୍ଣ୍ଣ ଜ୍ଞାନ ସମ୍ଭବ ବୋଲି ବିଶ୍ୱାସ କରାଯାଉଥିଲା । ସଂଯମଦ୍ୱାରା ଅନ୍ତଃପ୍ରଜ୍ଞାର ଉନ୍ମୀଳିତ ହୋଇଥାଏ ଓ କୌଣସି ବିଷୟ ବ୍ୟକ୍ତି ପାଖରେ ଅବୋଧ୍ୟ ରହେ ନାହିଁ । ଆଧିଭୌତିକ ଶକ୍ତି ବିଷୟରେ ଯୋଗୀ ଏହାଦ୍ୱାରା ଅକ୍ଲେଶରେ ଅବଗତ ହୋଇପାରେ । ସଂଯମ, ପ୍ରତ୍ୟାହାର ଓ ଧାରଣାଦ୍ୱାରା ଚାହିଁଲେ ଯେକୌଣସି ବ୍ୟକ୍ତିର ଭାବନାକୁ ସହଜରେ ଜଣାଯାଇ ପାରିବ । ସେହିପରି ନିଜ ମନର ଭାବନା ଖୁବ୍ ଅକ୍ଲେଶରେ ଜଣେ ଯୋଗୀ ଅନ୍ୟ ମନକୁ ପ୍ରେରଣ କରିପାରିବ । ବସ୍ତୁର ତ୍ରିବିଧ ଗୁଣ ଉପରେ ମନକୁ ସ୍ଥିରକରି ଧ୍ୟାନଦ୍ୱାରା ବ୍ୟକ୍ତି ସର୍ବଜ୍ଞାତା ହୋଇପାରିବ ଅର୍ଥାତ୍ ବର୍ତ୍ତମାନ, ଅତୀତ ଓ ଭବିଷ୍ୟତକୁ ଜାଣିପାରିବ । ଯୋଗୀ ଚାହିଁବାମାତ୍ରେ ସାଧନାଦ୍ୱାରା ଅଦୃଶ୍ୟ ହୋଇଯିବ । ନିଜର କର୍ମ ଉପରେ ମନକୁ ଆବଦ୍ଧ କରିବାଦ୍ୱାରା ସଂଯମୀ ଯୋଗୀ ବହୁ ପୂର୍ବରୁ ନିଜର ମୃତ୍ୟୁର ସମୟ ଜାଣିପାରିବ । ନିଜର ଆତ୍ମା ଓ ବାହ୍ୟ ଅସ୍ତିତ୍ୱ ଭିତରେ ପାର୍ଥକ୍ୟଦ୍ୱାରା ସାଧକ ପାଖରେ କୌଣସି କିଛି ଗୁପ୍ତ ରହିବ ନାହିଁ ଓ ସାଧକ ସକଳ ଜ୍ଞାନର ଅଧିକାରୀ ହୋଇପାରିବ । ଇନ୍ଦ୍ରିୟ-ଜ୍ଞେୟ ଜଗତର ଉର୍ଦ୍ଧ୍ୱରେ ଥିବା ସକଳ ରହସ୍ୟ ଓ ତତ୍ତ୍ୱକୁ ଯୋଗ ଜନିତ ସିଦ୍ଧିଦ୍ୱାରା ଜାଣିହେବ । ମନ୍ତ୍ର, ତପ ଓ ସାଧନାଦ୍ୱାରା ବ୍ୟକ୍ତି ଆଧ୍ୟାତ୍ମିକ ସ୍ତରକୁ ଯାଇ ସକଳ ରହସ୍ୟକୁ ଜାଣିପାରିବ ଓ ଅସମ୍ଭବ ଐଶ୍ୱରିକ ବିଭୂତିର ଅଧିକାରୀ ହୋଇପାରିବ । ଯୋଗୀ ବିଭିନ୍ନ ସ୍ତରରେ ବିଭିନ୍ନ ଶକ୍ତି ହାସଲ କରିବ । ଯେକୌଣସି ବ୍ୟକ୍ତି ବା ଜୀବକୁ ଅକ୍ଲେଶରେ ବଶୀଭୂତ କରିପାରିବ, ଯାହା ଚାହିଁବ ତାହା ଲାଭକରିପାରିବ, ତ୍ରିକାଳଦର୍ଶୀ ହୋଇପାରିବ, ଆଧିଭୌତିକ ଶକ୍ତିକୁ ଆବାହନ

କରିଆଣିପାରିବ । ବନ୍ଦଥିବା ଘରେ ଥାଇ ବାହାରର ସବୁ ଦେଖିପାରିବ, ଗୋଟିଏ ଆବଦ୍ଧ ଘରୁ ଅକ୍ଲେଶରେ ବାହାରି ଆସିପାରିବ, ଏକ ସମୟରେ ବିଭିନ୍ନ ସ୍ଥାନରେ ଆବିର୍ଭୂତ ହୋଇପାରିବ ଓ ଏହିପରି ବହୁ ଅଲୌକିକ ସାମର୍ଥ୍ୟ ଲାଭ କରିହେବ । ଏସବୁ ପତଞ୍ଜଳି ଯୋଗରେ ରହିଛି । ଏସବୁର ପ୍ରଭାବରେ ଯୋଗ, ସାଧନା, ତନ୍ତ୍ର ଇତ୍ୟାଦି ସ୍ତରରେ ବ୍ୟକ୍ତିର ଏହିସବୁ ଅଲୌକିକ ସାମର୍ଥ୍ୟ ବିଷୟରେ ଅବତାରଣା ଦେଖିବାକୁ ମିଳେ । ଆବ୍ରାହମ କୋଭୁର ଏହି ସବୁର ବାସ୍ତବତା ନେଇ ଜୀବନବ୍ୟାପୀ ଅନୁସନ୍ଧିତ୍ସୁ ଥିଲେ ଓ ଏହାର ଅସାରତା ନେଇ ନିଜର ଆତ୍ମପ୍ରତ୍ୟୟ ସୁଦୃଢ଼ ହେଲାପରେ ସେ ଚମତ୍କାରିତା ପ୍ରଦର୍ଶନ ପାଇଁ ତାଙ୍କର ଆହ୍ୱାନ ଦେଇଥିଲେ । ତାଙ୍କର ଏହି ଆହ୍ୱାନ ସମ୍ପର୍କରେ ଆମେ ଚତୁର୍ଥ ପରିଚ୍ଛେଦରେ ଆଲୋଚନା କରିଛେ ।

ତେବେ ପରାମନୋବିଜ୍ଞାନର କେତେକ ଦିଗ ଉପରେ ବହୁ ଗବେଷଣା ଅତୀତରେ ହୋଇଛି ଓ ଏ ନେଇ କେତେକ ଭାବନାର ସମ୍ଭାବନାକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରାଯାଇନାହିଁ । ଅବଶ୍ୟ ପରାମନୋବିଜ୍ଞାନର ବହୁ ଦିଗନ୍ତ ରହିଛି ଓ ଏ ସମ୍ପର୍କରେ ବିଜ୍ଞାନ ସମ୍ମତ ପଦ୍ଧତିରେ ଅନୁଶୀଳନ ହୋଇଛି । ପ୍ରଥମେ ପରାମନୋବିଜ୍ଞାନର ବିଭିନ୍ନ ଦିଗ ଉପରେ ସଂକ୍ଷିପ୍ତ ଆଲୋଚନା କରାଯାଉ ।

ପରାମନୋବିଜ୍ଞାନ ବା ପାରାସାଇକୋଲୋଜିର ବିସ୍ତୃତ କ୍ଷେତ୍ର ରହିଥିବା ପୃଷ୍ଠଭୂମିରେ ଏହାକୁ କେତେକ ଶ୍ରେଣୀରେ ବିଭକ୍ତ କରାଯାଏ । ତାହାର ଦୁଇଟି ପ୍ରମୁଖ କ୍ଷେତ୍ର ହେଲା ଜ୍ଞାନଭିତ୍ତିକ ପରାମନୋବିଜ୍ଞାନ ବା ବସ୍ତୁତାତ୍ତ୍ୱିକ ପରାମନୋବିଜ୍ଞାନ । ଜ୍ଞାନଭିତ୍ତିକ ପରାମନୋବିଜ୍ଞାନକୁ ସାଧାରଣତଃ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ (extra sensory perception ବା ESP କୁହାଯାଏ) କୁହାଯାଇଥାଏ । ପ୍ରତ୍ୟକ୍ଷ ଜନିତ ଜ୍ଞାନ ଇନ୍ଦ୍ରିୟ ଆଧାରିତ । ତେବେ କୌଣସି ଇନ୍ଦ୍ରିୟ ସଂଯୋଗ ନଥାଇ ଯେଉଁଠି ପ୍ରତ୍ୟକ୍ଷତୁଲ୍ୟ ଜ୍ଞାନ ହାସଲ ହେବାର ପରିବେଶ କଳ୍ପନା କରାଯାଏ ତାହା ହେଉଛି ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ । କୌଣସି ଇନ୍ଦ୍ରିୟ- ସଂଯୋଗ ନଥାଇ ମଧ୍ୟ ଯଦି କୌଣସି ବସ୍ତୁ, ଘଟଣା ବା ଚିନ୍ତନକୁ ଅନୁଭୂତିରେ ଅଣାଯାଇପାରେ ତାହାକୁ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ କୁହାଯାଏ । ଏହା ବିଭିନ୍ନ ଭାବରେ ଉତ୍ପନ୍ନ ହୋଇପାରେ ବୋଲି ଧାରଣା କରାଯାଏ । ସେହିପରି ମାନସିକ ଚିନ୍ତନ ଦ୍ୱାରା ଯଦି ବାହ୍ୟ ପରିବେଶରେ ପରିବର୍ତ୍ତନ ସୃଷ୍ଟି କରାଯାଏ, ଏହା ମଧ୍ୟ ପରାମନୋବିଜ୍ଞାନର ପରିସର ମଧ୍ୟରେ ଆସିଥାଏ । କୌଣସି ରହସ୍ୟମୟ ବା

ଗୂଢ଼ବିଦ୍ୟାଦ୍ୱାରା ବାହ୍ୟ ପରିବେଶରେ ପରିବର୍ତ୍ତନ ସୃଷ୍ଟିକରିବା, କୌଣସି ଅଶରୀର ବା ଅଦୃଶ୍ୟ ଶକ୍ତି ସାହାଯ୍ୟରେ କୌଣସି ଘଟଣା ସୃଷ୍ଟିକରି ଦେଇପାରିବା, ମାନସିକ ଶକ୍ତିର ପ୍ରଭାବରେ ପରିସ୍ଥିତିକୁ ବଦଳାଇ ଦେବା ବସ୍ତୁତାନ୍ତ୍ରିକ ପରାମନୋବିଦ୍ୟାର ପରିସରଭୁକ୍ତ ଅଟେ । ଏହାକୁ ମନଃପ୍ରଭାବ (Psychokinesis ବା PK) କୁହାଯାଏ ।

ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ପୁନଶ୍ଚ ବହୁ ପ୍ରକାରର ହୋଇପାରେ । କୌଣସି ଇନ୍ଦ୍ରିୟ ସଂଯୋଗ ନଥାଇ ମଧ୍ୟ ବସ୍ତୁ, ଘଟଣା ବା ଚିନ୍ତନକୁ ଯଦି ଜାଣି ହୋଇଯାଏ ତାହା ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ଅଟେ । ପରମନ ଜ୍ଞାନ ବା ଦୂର ସମ୍ବେଦନ (telepathy), ଅତୀନ୍ଦ୍ରିୟ ଦୃଷ୍ଟି (clairvoyance) ଓ ପୂର୍ବଜ୍ଞାନ ବା ପ୍ରାକ୍‌ସଂଜ୍ଞାନ (precognition) ଭାବନା ଗୁଡିକ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷର ପରିସରଭୁକ୍ତ ଅଟେ ।

ପରମନ ଜ୍ଞାନ ବା ଦୂର ସମ୍ବେଦନ ହେଉଛି ଅନ୍ୟର ମନର ଭାବନାକୁ ଜାଣିପାରିବା । ଜଣେ ବ୍ୟକ୍ତିର ମନରେ ଯେଉଁ ଭାବନା ଉଦ୍ରେକ ହେଉଛି, କୌଣସି ସଂଯୋଗ ନଥାଇ ସେହି ଭାବନା ଯଦି ଅନ୍ୟ ମନରେ ମଧ୍ୟ ସୃଷ୍ଟି ହୋଇପାରୁଛି ଏହାକୁ ଦୂରସମ୍ବେଦନ କୁହାଯାଏ ।

କୌଣସି ବାହ୍ୟିକ ସଂଯୋଗ ନଥାଇ ଯଦି ଦୁଇଜଣଙ୍କ ଭିତରେ ଭାବନାର ଆଦାନ ପ୍ରଦାନ ହୋଇପାରୁଛି କିମ୍ବା ଜଣେ ନିଜ ମନର ଭାବନା ଅନ୍ୟ ମନକୁ ପ୍ରେରଣ କରିପାରୁଛି ଏହାକୁ ଦୂର ସମ୍ବେଦନ କୁହାଯାଇଥାଏ । ସେହିପରି ଜଣଙ୍କ ମନର ଭାବନା ଯଦି ଦୂରରେ ଥିବା ଅନ୍ୟ ମନରେ ପ୍ରତିଫଳିତ ହେଉଛି ତାହା ମଧ୍ୟ ଏହାର ପରିସରରେ ଅନ୍ତର୍ଭୁକ୍ତ ହୋଇଥାଏ ।

ପୁନଶ୍ଚ କୌଣସି ଶାରୀରିକ ସଂଯୋଗ ନଥାଇ ଯଦି ଦୂରରେ ଥିବା କୌଣସି ବସ୍ତୁ ବା ଘଟଣା ଜଣେ ଜାଣିପାରୁଛି ବା ଦେଖିପାରୁଛି ତାହା ଅତୀନ୍ଦ୍ରିୟ ଦୃଷ୍ଟି (clairvoyance) ଭାବେ ପରିଗଣିତ ହୋଇଥାଏ । କୌଣସି ଶାରୀରିକ ବା ଇନ୍ଦ୍ରିୟଗତ ସମ୍ବନ୍ଧ ନଥାଇ ଦୂରରେ ଥିବା ବସ୍ତୁ ବା ଘଟଣା ବିଷୟରେ ଜଣେ ନିଜର ଅତୀନ୍ଦ୍ରିୟ ଦୃଷ୍ଟିଦ୍ୱାରା ବା ସେପରି କିଛି ରହସ୍ୟମୟ ସଂଯୋଗଦ୍ୱାରା ସେ ବିଷୟରେ ସଠିକ ଭାବେ କହିପାରୁଛି ତାହାକୁ ଅତୀନ୍ଦ୍ରିୟ ଦୃଷ୍ଟି କୁହାଯାଏ । କେତେକ ବ୍ୟକ୍ତି ଏହି ସାମର୍ଥ୍ୟ ରଖିଥିବା ବିଭିନ୍ନ ସଭ୍ୟତାରେ ବିଶ୍ୱାସ କରାଯାଏ ।

ସେହିପରି ଯେଉଁ ଘଟଣା ଆଗକୁ ଘଟିବାକୁ ଯାଉଛି ଅର୍ଥାତ୍ ଏକ ଭବିଷ୍ୟ ପରିବେଶକୁ କେହି ସ୍ପଷ୍ଟ ଭାବରେ ଦେଖିପାରୁଛି ତେବେ ଏହି ସଂକ୍ରାନ୍ତୀୟ ଜ୍ଞାନକୁ ପ୍ରାକ୍ ସଂଜ୍ଞାନ (precognition) କୁହାଯାଏ । ଏକ ଘଟଣା ଘଟିନାହିଁ, ଘଟଣାଟି ଘଟିବାର ବହୁ ପୂର୍ବରୁ ଯଦି ଜଣେ କେବଳ କଳ୍ପନା ନୁହେଁ ବରଂ ସ୍ପଷ୍ଟ ଭାବରେ ଏହା ଅନୁଭବ ବା ପ୍ରତ୍ୟକ୍ଷ କରିପାରୁଛନ୍ତି ତାହା ଏହି ପୂର୍ବଜ୍ଞାନ ବା ପ୍ରାକ୍ ସଂଜ୍ଞାନର ପରିସର ଭୁକ୍ତ । ଯଦି କୌଣସି ଘଟଣା ଘଟିବା ପୂର୍ବରୁ କେହି ସେହି ଘଟଣାର ପରିବେଶକୁ ସ୍ୱପ୍ନରେ, କୌଣସି ଦୈବୀବାଣୀ ଜରିଆରେ ବା ସେପରି କିଛି ଭାବରେ ଜାଣିବାକୁ ବା ପ୍ରତ୍ୟକ୍ଷ କରିବାକୁ ସମର୍ଥ ହେଉଛନ୍ତି ତେବେ ଏହା ପ୍ରାକ୍ ସଂଜ୍ଞାନ ବୋଲି ସୂଚିତ ହୋଇଥାଏ ।

ମୋଟ ଉପରେ କହିଲେ ଦୂର ସମ୍ବେଦନ,ଅତୀନ୍ଦ୍ରିୟ ଦୃଷ୍ଟି ଓ ପ୍ରାକ୍ ସଂଜ୍ଞାନ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷର ବିଭିନ୍ନ ଦିଗ ଓ ସେସବୁ ପରାମନୋବିଜ୍ଞାନର ପରିସର ଭୁକ୍ତ । ଏଗୁଡିକ ସମ୍ଭବ କି ଓଏହା କେତେଦୂର ସତ୍ୟ ତାର ଅନୁଶୀଳନ କରିବାକୁ ପ୍ରଥମେ ୧୮୮୨ରେ ଲଣ୍ଡନଠାରେ ପରାମାନସିକ ଗବେଷଣା ସଂସ୍ଥାନ (Society for Psychical Research, ଏସପିଆର ) ନାମରେ ଏକ ସଂଗଠନ ସୃଷ୍ଟି ହୋଇଥିଲା ।

ସମାଜରେ ଏହି ପ୍ରକାରର ବିଶ୍ୱାସ ବହୁଳଭାବେ ଥିବାରୁ ଏହା କେତେଦୂର ଯଥାର୍ଥ ତାର ପରୀକ୍ଷା ପାଇଁ ଏହା ଲକ୍ଷ୍ୟ ରଖିଥିଲା । ବୈଜ୍ଞାନିକ ଧାରାରେ ଏହି ପ୍ରକାରର ଘଟଣାମାନଙ୍କର ବିଶ୍ଳେଷଣ ଓ ଅନୁଶୀଳନ କରିବାକୁ ଏହା ଥିଲା ପ୍ରଥମ ପ୍ରୟାସ । ଏତଦ୍‌ବ୍ୟତୀତ ବିଭିନ୍ନ ଗୂଢବିଦ୍ୟା, ଆତ୍ମାର ସ୍ଥୁଳ ଆବିର୍ଭାବ, ମୃତ ବ୍ୟକ୍ତିର ଆତ୍ମାସହ ସଂଯୋଗ ସ୍ଥାପନ, ମାଧ୍ୟମ ଜରିଆରେ ଆତ୍ମାସହ ସଂଳାପ ଇତ୍ୟାଦି ପ୍ରସଙ୍ଗ ଗୁଡିକର ଯଥାର୍ଥତା ନେଇ ବିଭିନ୍ନ ଦାବି ଗୁଡିକର ବ୍ୟାଖ୍ୟା କରିବାକୁ ଉଦ୍ୟମ ହେଲା । ବହୁ ସମୟରେ ଲୋକମାନେ ପୂର୍ବକଳ୍ପିତ ଭାବନାମାନଙ୍କୁ କେତେ ରଙ୍ଗଦେଇ ପ୍ରକାଶ କରିଥାନ୍ତି । ଭୂତ, ପ୍ରେତର ନାନା କାହାଣୀ ବିଭିନ୍ନ ସମାଜରେ ବ୍ୟାପକ ଭାବେ ରହିଥିଲା । ସେହିପରି ଗଣମାଧ୍ୟମ, ସମ୍ବାଦପତ୍ର ଅନେକ ସମୟରେ ଶୁଣା କଥା ବା ମିଛକୁ ପ୍ରକାଶକରି ଲୋକମାନଙ୍କୁ ପ୍ରଭାବିତ କରିଥାନ୍ତି । ଏହିସବୁ ବିଶ୍ୱାସ ଅତି ବ୍ୟାପକ ଭାବରେ ରହିଥିବା ପୃଷ୍ଠଭୂମିରେ ଏସବୁର ଅନୁଶୀଳନ ପାଇଁ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ଗଭୀର ଭାବେ ପ୍ରୟାସ ହେଲା ।

ତେବେ ପ୍ରାଥମିକ ସ୍ତରରେ ପରାମାନସିକ ଗବେଷଣା ସଂସ୍ଥାନ ବା ଏସପିଆର ସହ ଯେଉଁମାନେ ସଂଶ୍ଳିଷ୍ଟ ରହିଥିଲେ ସେମାନେ ବହୁଭାବରେ ପରାମନୋବିଦ୍ୟାର ସମର୍ଥକ ଥିଲେ । ସେମାନେ ଗବେଷଣାକୁ ତଥ୍ୟଭିତ୍ତିକ ଓ ବୈଜ୍ଞାନିକ ପଦ୍ଧତିରେ ଅନୁଶୀଳନ ନକରି ସମାଜରେ ବ୍ୟାପକ ଥିବା ବିଶ୍ୱାସ ଗୁଡିକୁ ନେଇ ପରାମନୋବିଦ୍ୟାକୁ ସମର୍ଥନକରି ବିଭିନ୍ନ ଲେଖାମାନ ପ୍ରକାଶ କଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଯେଉଁମାନେ ଏସମ୍ପର୍କରେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଓ ଗବେଷଣା ଆରମ୍ଭ କଲେ  ସେମାନେ ଏସବୁ କିପରି ତଥ୍ୟ ସମର୍ଥିତ ନୁହେଁ ଓ କେବଳ ଲୋକ ବିଶ୍ୱାସ ସ୍ତରରେ ସୀମିତ ତାହା ପ୍ରକାଶ କଲେ । ସେହି ସମୟରେ ୧୮୮୪ ମସିହାରେ ଥିଓସଫିକାଲ ସୋସାଇଟି ମାଡାମ ବ୍ଲାଭାସ୍କିଙ୍କ ଦ୍ୱାରା ସ୍ଥାପିତ ହେଲା ଓ ଭାରତବର୍ଷରେ ମୃତଲୋକଙ୍କର ଆତ୍ମା ସହ ସମ୍ପର୍କ କିପରି ଏକ ସାଧାରଣ ବିଶ୍ୱାସ ସେସବୁର ନାନା କାହାଣୀ ସେ ଏସ.ପି.ଆର କୁ ଜଣାଇଲେ । ରିଚାର୍ଡ ହୋଡଗ୍‌ସନ ଏସବୁ ଘଟଣାର ସତ୍ୟାସତ୍ୟ ଅନୁସନ୍ଧାନ କରିବାକୁ ଭାରତ ଆସିଲେ ଓ କୌତୂହଳ ହୋଇ ଏହା ଜାଣିବାକୁ ଚାହିଁଲେ । ତେବେ ଏସବୁ କିପରି କାଳ୍ପନିକ କାହାଣୀ ଥିଲା ଓ ଥିଓସଫିକାଲ ସୋସାଇଟିର ପ୍ରତିଷ୍ଠାତା ଏସବୁ ମନଗଢା ଓ ଲୋକଶୁଣା କାହାଣୀକୁ ପ୍ରସାର କରିଥିଲେ ତାହା ଅନୁସନ୍ଧାନକରି ପ୍ରକାଶ କଲେ ।

ପରାମାନସିକ ଗବେଷଣା ସଂସ୍ଥାନ ବା ଏସ.ପି.ଆର କେବଳ ପର୍ଯ୍ୟବେକ୍ଷଣ ଜନିତ ଅନୁସନ୍ଧାନ ଭିତରେ ସୀମିତ ରହିଥିଲା । ପରାମନୋବିଦ୍ୟା ଜନିତ କାହାଣୀମାନଙ୍କ ସପକ୍ଷରେ ବିଭିନ୍ନ କାଳ୍ପନିକ ଓ ଆଧାରହୀନ ମନଗଢା କାହାଣୀମାନଙ୍କୁ ନେଇ ନାନା ସାହିତ୍ୟ ସୃଷ୍ଟିହେବାକୁ ଲାଗିଲା । ତେବେ ଯେଉଁମାନେ ଏସବୁକୁ ଆଧାରହୀନ ବୋଲି କହିଲେ ସେମାନେ ପ୍ରକାଶିତ ଘଟଣାମାନଙ୍କୁ ନାନା ଭାବରେ ବୈଜ୍ଞାନିକ ମାନଦଣ୍ଡରେ ପରୀକ୍ଷା କରିବାକୁ ଚାହିଁଲେ ଓ ଏହାର କୌଣସି ପରୀକ୍ଷିତ ସତ୍ୟତାର ପ୍ରମାଣ ନପାଇ ପରାମନୋବିଦ୍ୟାକୁ ବିରୋଧ କଲେ । ଏହି ସମୟରେ ଆମେରିକାର ଜଣେ ଜୀବବିଜ୍ଞାନୀ ଡକ୍ଟର ଜେ.ବି.ରାଇନ ୧୯୨୭ ମସିହାରେ ନର୍ଥ କରୋଲିନା ବିଶ୍ୱବିଦ୍ୟାଳୟରେ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷର ଥିଲେ ଜଣେ ବଡ ପ୍ରବକ୍ତା । ଏହା ପରୀକ୍ଷିତ ସତ୍ୟ ବୋଲି ସେ କେତେକ ଲେଖାରେ ପ୍ରକାଶ କଲେ । ସେ ମଧ୍ୟ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ଗବେଷଣା ପାଇଁ ଏକ ପରୀକ୍ଷଣ ପଦ୍ଧତି ବାହାର କଲେ ।

ଦୂର ସମ୍ବେଦନ ବା ଅତୀନ୍ଦ୍ରିୟ ଦୃଷ୍ଟି ଇତ୍ୟାଦିର ପରୀକ୍ଷା ପାଇଁ ଏକ ପରୀକ୍ଷଣ ପଦ୍ଧତିର ସେ ଅବତାରଣା କଲେ । ଗୋଟିଏ ପରୀକ୍ଷା ଥିଲା ଜଣେ ବ୍ୟକ୍ତି ଗୋଟିଏ କୋଠରୀ ଭିତରେ ବିଭିନ୍ନ ଛବି ଆଙ୍କିବାକୁ ପ୍ରୟାସ କରିବ । ସେ ନିଜର ଭାବନାକୁ ଅନ୍ୟ ଜଣଙ୍କ ମନକୁ ପ୍ରେରଣ କରିବା ଅବସରରେ ଅନ୍ୟ ଜଣଙ୍କୁ ମଧ୍ୟ ପ୍ରଥମ ବ୍ୟକ୍ତି ଯେଉଁ ଛବି ଆଙ୍କୁଛନ୍ତି ତାହା ଆଙ୍କିବାକୁ କୁହାଯାଏ । ଏହି ଆଧାରରେ ଭାବନାକୁ ପ୍ରେରଣ କରିବା ସମ୍ଭବ କି ନୁହେଁ ତାହାକୁ ବିଭିନ୍ନ କ୍ଷେତ୍ରରେ ସେ ପରୀକ୍ଷା କରିବାକୁ ଚାହିଁଲେ ।

ପୁନଶ୍ଚ ସେ ପାଞ୍ଚଟି ଚିହ୍ନ ଭିତରୁ ଗୋଟିଏ କାର୍ଡରେ ଗୋଟିଏ ଚିହ୍ନ ରଖି ପ୍ରତ୍ୟେକଥିରୁ ଦଶଟି କାଢି ଏହିପରି ୫୦ଟି କାର୍ଡନେଲେ । ପ୍ରତ୍ୟେକ ଚିହ୍ନର ଦଶଟି କାର୍ଡ ଓ ପାଞ୍ଚଟି ଚିହ୍ନର ୫୦ଟି କାର୍ଡ ନେଲେ । କ୍ରସ, ତାରା, ବୃତ୍ତ, ତରଙ୍ଗ ଓ ଆୟତକ୍ଷେତ୍ରର ଚିହ୍ନ କାର୍ଡ ମାନଙ୍କରେ ଥିଲା । କାର୍ଡମାନଙ୍କୁ ଫେଣ୍ଟି ଗୋଟିଏ କାର୍ଡ ନେଇ ତାହା ଉପରେ ନିଜର ଦୃଷ୍ଟି ଆବଦ୍ଧ ରଖିବାକୁ ଜଣକୁ ନେଲେ । ଅନ୍ୟ ଜଣଙ୍କୁ ସେ କେଉଁ କାର୍ଡଟି ଦେଖୁଛନ୍ତି ତାହା ଅନୁମାନକରି ଲେଖିବାକୁ କହିଲେ । ଯେହେତୁ ପାଞ୍ଚଟି କାର୍ଡ ଭିତରୁ ଜଣେ ଗୋଟିଏ ଲେଖିବ, ତେଣୁ ଏଠାରେ ସମ୍ଭାବନାର ପରିସର ୫:୧ ହେବ । କାର୍ଡ ମାନଙ୍କୁ କୌଣସି କ୍ରମରେ ନରଖି ପ୍ରତ୍ୟେକଥର ଫେଣ୍ଟି ପରୀକ୍ଷାଟି କରୁଥିଲେ ଓ ଏହି ଧାରାରେ କେତେ ପ୍ରତିଶତ ଠିକ୍ ହେଉଛି ତାହା ପରୀକ୍ଷା କରିବାକୁ ଚାହିଁଲେ । ଏହି ଧାରା ସେ ପ୍ରଥମେ ପ୍ରୟୋଗ କରିବାପରେ ଏହି କ୍ଷେତ୍ରରେ ନୂଆ ନୂଆ ପ୍ରଣାଳୀମାନ ବାହାର କରାଯାଇ ବିଭିନ୍ନ ଦେଶରେ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷର ସତ୍ୟା ସତ୍ୟ ନେଇ ନାନା ପରୀକ୍ଷା ଓ ଗବେଷଣା ଚାଲିଲା । ପ୍ରେରକ ଗୋଟିଏ ଚିହ୍ନ ବା ଛବି ଉପରେ ନିଜର ଦୃଷ୍ଟି ନିକ୍ଷେପ କରୁଥିଲେ ଓ ଅନ୍ୟ ଏକ ସ୍ଥାନରେ ଗ୍ରହଣକାରୀ ପ୍ରେରକ କେଉଁ ଛବିଟି ଉପରେ ନିଜର ଦୃଷ୍ଟି ଆବଦ୍ଧ କରିଛନ୍ତି ତାହା ଭାବିବାକୁ କୁହାଯାଇଥିଲା । ଏହି ଭଳି ପରୀକ୍ଷା ମାନଙ୍କଦ୍ୱାରା ଦୂର ସମ୍ବେଦନ ବା ପରମନ ଜ୍ଞାନ ବିଷୟକୁ ପରୀକ୍ଷା କରାଗଲା ।

ଦୂର ସମ୍ବେଦନ,ଅତୀନ୍ଦ୍ରିୟ ଦୃଷ୍ଟି, ପ୍ରାକ୍ ସଂଜ୍ଞାନ ଜନିତ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷର ସମ୍ଭାବନାକୁ ପରୀକ୍ଷା କଲାବେଳେ ପ୍ରଶ୍ନ ଆସିଲା ଯେଉଁଠି ଏଗୁଡିକର ସତ୍ୟତାର ଆଭାସ ମିଳୁଛି ସେଗୁଡିକ କେବଳ ଆକସ୍ମିକ ସଂଯୋଗ ଜନିତ ନା ସେସବୁକୁ କୌଣସି ସିଦ୍ଧାନ୍ତ ଜରିଆରେ ବୁଝାଇହେବ ? ବିଭିନ୍ନ ସମ୍ଭାବନା ଭିତରୁ ଗୋଟିକୁ

ଅନୁମାନ କରିବା ଓ ତାହା ଯଦି ସତ୍ୟ ବୋଲି ଜଣାପଡେ ତେବେ ତାହା ଏକ ଦୈବାତ୍ ଘଟଣା ଜନିତ କାକତାଳୀୟ ନ୍ୟାୟ ନା ତା ପଛରେ କିଛି ବୈଜ୍ଞାନିକ ଭିତ୍ତି ଦେଇହେବ ? ଦୂର ସମ୍ବେଦନ ହେଉ ବା ଜଣଙ୍କ ମନର ଭାବନା ଅନ୍ୟମନରେ ପ୍ରତିଫଳିତ ହେବା ହେଉ ଏ କ୍ଷେତ୍ରରେ କୌଣସି ବାହ୍ୟିକ ବିକିରଣ ହେଉନାହିଁ । ରେଡିଓ ଓ ଟେଲିଭିଜନ କ୍ଷେତ୍ରରେ ଗୋଟିଏ ସ୍ଥାନରୁ ଯେଉଁ ଶବ୍ଦ ବା ଶବ୍ଦ ଓ ଦୃଶ୍ୟ ପ୍ରେରଣ ହେଉଛି ତାହା ଅନ୍ୟ ସ୍ଥାନରେ ଗ୍ରହଣୀୟ ହେବା ପଛରେ ପଦାର୍ଥବିଜ୍ଞାନର ପ୍ରାକୃତିକ ନିୟମ ରହିଛି । ଶବ୍ଦର ପ୍ରେରଣ କ୍ଷେତ୍ରରେ ଶବ୍ଦ-ତରଙ୍ଗ କିପରି ପଠାଯାଉଛି ସେ ନେଇ ପ୍ରାକୃତିକ ନିୟମ ରହିଛି ଓ ଏହା ବିଜ୍ଞାନ ଆଧାରରେ ବ୍ୟାଖ୍ୟା କରାଯାଉଛି । କିନ୍ତୁ ଚିନ୍ତା, ଭାବନା ଗୋଟିଏ ମନରୁ ଅନ୍ୟ ମନକୁ ପ୍ରେରଣ କ୍ଷେତ୍ରରେ ଶକ୍ତି- ବିକିରଣ ହେବାର କୌଣସି ନିୟମ ନାହିଁ । ରେଡିଓ, ଟେଲିଫୋନ, ଟେଲିଭିଜନ ଇତ୍ୟାଦି କ୍ଷେତ୍ରରେ ଶବ୍ଦ, ଆଲୋକ କିପରି ତରଙ୍ଗରେ ଯାଉଛି ତାହାର ନିର୍ଦ୍ଦିଷ୍ଟ ବ୍ୟାଖ୍ୟା ଓ ସମୟ ଅତ୍ୟନ୍ତ ସ୍ପଷ୍ଟ ଓ ନିର୍ଭୁଲ ଯୋଗେ କରାଯାଇପାରୁଛି, କିନ୍ତୁ ଗୋଟିଏ ମନର ଭାବନା ଅନ୍ୟ ମନରେ ପ୍ରତିଫଳିତ ହେବାରେ ସ୍ଥାନର ଦୂରତ୍ୱସହ ସମୟର କୌଣସି ଆନୁପାତିକ ସମ୍ବନ୍ଧ ନାହିଁ । ରେଡିଓରେ ଶବ୍ଦ ପ୍ରେରଣ ବୈଜ୍ଞାନିକ ନିୟମ ଉପରେ ଆଧାରିତ, କିନ୍ତୁ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ କ୍ଷେତ୍ରରେ ଚିନ୍ତାର ପ୍ରେରଣ ଓ ଗ୍ରହଣ ଭିତରେ କୌଣସି ନିୟମ ବା ଶୃଙ୍ଖଳା ନାହିଁ ।

ଏହି ସମାଲୋଚନା ପୃଷ୍ଠଭୂମିରେ ଦୂର ସମ୍ବେଦନ ଓ ଦିବ୍ୟ ଦୃଷ୍ଟି ଜନିତ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷକୁ ଗ୍ରହଣ କରୁଥିବା ଚିନ୍ତକମାନେ ରେଡିଓ ବା ଟେଲିଭିଜନ ଜନିତ ସାଦୃଶ୍ୟ ଯୁକ୍ତିକୁ ପ୍ରତ୍ୟାଖ୍ୟାନ କରିଥାନ୍ତି । ଦୂର ସମ୍ବେଦନ ଜନିତ ଭାବନାର ଅର୍ଥ ନୁହେଁ ଯେ ଗୋଟିଏ ମନର କେତେକ ଭାବନାକୁ ଅନ୍ୟ ମନକୁ ସ୍ଥାନାନ୍ତରିତ କରିବା । ଜଣେ ପ୍ରେରକର ଚେତନାରୁ କୌଣସି ଭାବନା ବାହାରି ଜଣେ ଗ୍ରହୀତାର ମନରେ ପ୍ରବେଶ କରିବା ଏହାର ଅର୍ଥ ନୁହେଁ ବରଂ ଏହାର ଅର୍ଥ ହେବ ଜଣେ ବ୍ୟକ୍ତିଙ୍କ ମନରେ ଯେଉଁ ଭାବନା ଆସୁଛି ତାହାର ଏକ ଅବିକଳ ପ୍ରତିଧ୍ୱନି ଅନ୍ୟ ମନରେ ମଧ୍ୟ ସୃଷ୍ଟି ହେଉଛି । ତାହା ଆଂଶିକ ଭାବେ ବା ପୂର୍ଣ୍ଣ ଭାବେ ବିଭିନ୍ନ ସଙ୍କେତ ଦେଇ ଆସୁଛି, ଯେପରି ମନର ଭାବନା ସ୍ୱପ୍ନରେ ପ୍ରତିଧ୍ୱନିତ ହୋଇଥାଏ । ଏହି ମତରେ ଆମମାନଙ୍କର ସଚେତନ ମନ ପରସ୍ପରଠାରୁ ପୃଥକ ଓ ଗୋଟିଏ ମନର ଚିନ୍ତା ଅନ୍ୟ

ମନରେ ପ୍ରବେଶ କରିବା ନେଇ ଆମର ବ୍ୟକ୍ତି ଚେତନା ଅପରିବାହୀ (insulated) । ବିଦ୍ୟୁତ ଶକ୍ତିର ପ୍ରବାହ ପାଇଁ ମାଧ୍ୟମଟି ପରିବାହୀ ହେବା ଆବଶ୍ୟକ, ଏହା ଅପରିବାହୀ ହେଲେ ଏହା ବିଦ୍ୟୁତ ଶକ୍ତିର ପ୍ରବାହକୁ ପ୍ରତିବନ୍ଧକ ସୃଷ୍ଟି କରିବ । ଏହି ସାଦୃଶ୍ୟରେ ଅଚେତନ ସ୍ତରରେ ଆମର ମନ ବା ଚେତନା ଅତ୍ୟନ୍ତ ପରିବାହୀ, କିନ୍ତୁ ଯେତେବେଳେ ଆମେ ଏକ ବ୍ୟକ୍ତି ସତ୍ତା ଭାବେ ମାନସିକ କାର୍ଯ୍ୟ ସମ୍ପାଦନ କରୁଛେ ସେତେବେଳେ ଆମର ଚେତନା ଅପରିବାହୀ ହୋଇଯାଉଛି । ଅର୍ଥାତ୍ ଅଚେତନ ସ୍ତରରେ ଆମର ମନ ଅତ୍ୟନ୍ତ ପରିବାହୀ ଓ ଆମେ ପରସ୍ପରକୁ ସର୍ବଦା ପ୍ରଭାବିତ କରୁଛେ । ଦୂର ସମ୍ବେଦନ ବା ପର ମନର ଜ୍ଞାନ ଏହି ସ୍ତରରେ ସମ୍ପୂର୍ଣ୍ଣ କାର୍ଯ୍ୟ କରିଥାଏ । ଅଥଚ ସଚେତନ ବ୍ୟକ୍ତି ସତ୍ତାରେ ଏହା ଅବିକଳ କାର୍ଯ୍ୟ କରେ ନାହିଁ ।

ଏହି ମତଟି କେବଳ ଏକ କାଳ୍ପନିକ ଓ ତାତ୍ତ୍ୱିକ ମତ ଓ ଏହା ଏକ ବୈଜ୍ଞାନିକ ସିଦ୍ଧାନ୍ତ ନୁହେଁ । 'ଅଚେତନ ସ୍ତରରେ ଆମେମାନେ ପରସ୍ପରକୁ ଗଭୀର ଭାବେ ପ୍ରଭାବିତ କରୁଛେ' ସିଦ୍ଧାନ୍ତ ପଛରେ କୌଣସି ବୈଜ୍ଞାନିକ ଆଧାର ନାହିଁ । ତଥାପି ମଧ୍ୟ ଯଦି ଏହି ସମ୍ଭାବନା ବା ପ୍ରକଳ୍ପକୁ ନିଆଯାଏ ତେବେ ଏ କ୍ଷେତ୍ରରେ ମଧ୍ୟ ଏକ ଜଟିଳ ସମସ୍ୟା ସୃଷ୍ଟି ହେବ । ଜଣଙ୍କ ମନର ଭାବନା କିପରି ଅଗଣିତ ମଣିଷଙ୍କୁ ପ୍ରଭାବିତ କରୁଛି ତାହାର କିପରି ବ୍ୟାଖ୍ୟା କରାଯିବ ? କ ମନରେ ଖ ବିଷୟରେ ଭାବନା ଆସିଲାବେଳେ, ଖ ମନରେ କ ବିଷୟରେ ଭାବନା ସୃଷ୍ଟି ହେଉଛି – ଏକ ଦୂର ସମ୍ବେଦନ ଜନିତ ଉଦାହରଣ । ତେବେ ପ୍ରଶ୍ନ ହେବ କ ମନର ଭାବନା କାହିଁକି ଗ,ଘ,ଙ.... ଆଦିଙ୍କ ମନରେ ପ୍ରତିଧ୍ୱନିତ ହେଉନାହିଁ, କେବଳ ଖ ମନରେ ପ୍ରତିଧ୍ୱନିତ ହେଉଛି ? ଅତୀନ୍ଦ୍ରିୟ ପ୍ରତ୍ୟକ୍ଷକୁ ସମର୍ଥନ କରୁଥିବା ଭାବୁକ ଏହାର ଉତ୍ତର ଦେବେ ଯେ ଯେହେତୁ କ,ଖ ଭିତରେ ପୂର୍ବରୁ ଭାବଗତ ସମ୍ବନ୍ଧ ରହିଛି ବା ସେମାନେ ପରସ୍ପର ସହ ନିବିଡ ସମ୍ବନ୍ଧିତ ସୁତରାଂ କ ର ଭାବନା ଖ ପାଖରେ ବା ଖ ର ଭାବନା କ ପାଖରେ ପ୍ରତିଧ୍ୱନିତ ହୋଇଥାଏ । କ ଓ ଖ ପରସ୍ପର ସହିତ ନିବିଡ ସମ୍ପର୍କରେ ରହିଥିବାରୁ ସ୍ଥାନ ବା ଦୂରତ୍ୱ ନିର୍ବିଶେଷରେ ସେମାନେ ଅଚେତନ ସ୍ତରରେ ପରସ୍ପର ସହ ସଂଯୋଜିତ ଓ ଜଣଙ୍କର ଭାବନା ଅନ୍ୟ ମନରେ ବେଳେ ବେଳେ ପ୍ରତିଧ୍ୱନିତ ହେବା ସ୍ୱାଭାବିକ ।

କେବଳ ଯେ ପରସ୍ପର ସହିତ ସମ୍ପର୍କିତ ବ୍ୟକ୍ତିମାନଙ୍କ ଭିତରେ ଦୂର ସମ୍ବେଦନ ଜନିତ ଚିନ୍ତା ପ୍ରେରଣ ସମ୍ଭବ ହେଉଛି ତା ନୁହେଁ, ଏପରି କେତେକ ଉଦାହରଣ ବେଳେ ବେଳେ ଦିଆଯାଏ ଯେଉଁଥିରୁ ଜଣକ ମନର ଭାବନା ଅପରିଚିତ ବ୍ୟକ୍ତିର ମନରେ ମଧ୍ୟ ପ୍ରତିଧ୍ୱନିତ ହୋଇଥାଏ କିମ୍ବା ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ଭିତରେ ଆସିଥାଏ । ଏକ ଭ୍ରମ ପ୍ରତ୍ୟକ୍ଷ ଜନିତ ଘଟଣାରେ ମଧ୍ୟ ଦୂର ସମ୍ବେଦନ ସ୍ତରରେ ଭାବନାର ସ୍ଥାନାନ୍ତର ହୋଇପାରୁଛି । ଗୋଟିଏ ଚିତ୍ତାକର୍ଷକ ଉଦାହରଣ ଏ କ୍ଷେତ୍ରରେ ଦିଆଯାଇଥାଏ । ଜଣେ ଭଦ୍ର ମହିଳା ଏକ ହ୍ରଦ କୂଳରେ ନିରୋଳାରେ ବସିଥିଲେ । ଏହି ସମୟରେ ସେ ଦେଖିଲେ ଯେ ଜଣେ ବ୍ୟକ୍ତିର ଏକ ଛାୟା ହ୍ରଦ ଆଡକୁ ଦୌଡିକରି ଆସି ଗଭୀର ହ୍ରଦରେ ଡେଇଁ ପଡିଲା । ପ୍ରକୃତରେ ସେଠାରେ କୌଣସି ବ୍ୟକ୍ତି ନଥିଲେ ଓ ଏହା ଭଦ୍ର ମହିଳାଙ୍କର ଏକ ଭ୍ରମ ପ୍ରତ୍ୟକ୍ଷ ଥିଲା । କିନ୍ତୁ ଏହାର କେତୋଟି ଦିନ ପରେ ଜଣେ ବ୍ୟକ୍ତି ହ୍ରଦକୁ ଡେଇଁ ଆତ୍ମହତ୍ୟା କଲେ । ଏହି ଘଟଣାରେ ଭଦ୍ର ମହିଳାଙ୍କର ଏହି ପ୍ରାଗ୍‌ବୋଧ କିପରି ହେଲା ? ଘଟଣାଟି ଘଟିବା ପୂର୍ବରୁ ତାହା ତାଙ୍କର ଅନୁଭବକୁ କିପରି ଆସିଲା ? ଦୂର ସମ୍ବେଦନ ବ୍ୟାଖ୍ୟା ଅନୁଯାୟୀ ଭଦ୍ର ଲୋକ ହ୍ରଦକୁ ଡେଇଁବା ପୂର୍ବରୁ ଆତ୍ମହତ୍ୟା ନେଇ ଗଭୀର ଭାବେ ମାନସିକ ସ୍ତରରେ ଚିନ୍ତା କରୁଥିଲେ । ତାଙ୍କ ମନର ଏହି ଅବସ୍ଥା ଭଦ୍ର ମହିଳାଙ୍କ ମାନସଚକ୍ଷୁରେ ଦୂର ସମ୍ବେଦନ ମାଧ୍ୟମରେ ପ୍ରତିବିମ୍ବିତ ହୋଇଥିଲା । କୌଣସି ଘଟଣା ଘଟିବା ପୂର୍ବରୁ ସେହି ଘଟଣା ନେଇ କେତେକ ପ୍ରାକ୍ ସୂଚନା ମିଳିଥାଏ ଓ ଜଣେ ସମ୍ବେଦନଶୀଳ ବ୍ୟକ୍ତି ନିଜର ଅନୁଭବରେ ତାହା ଲାଭ କରିଥାନ୍ତି । ଜଣେ ସମ୍ବେଦନଶୀଳ ଗ୍ରହୀତା ନିଜର ଇନ୍ଦ୍ରାନୁଭୂତି ଭିତରେ ଆଗକୁ ଘଟିବାକୁ ଯାଉଥିବା ଘଟଣାର ଅସ୍ପଷ୍ଟ ଚିତ୍ର ପାଇଥାନ୍ତି । ସ୍ୱପ୍ନରେ, ଯେକୌଣସି ବାଣୀ ଜରିଆରେ, ଏକ ଅସ୍ପଷ୍ଟ ପ୍ରତ୍ୟକ୍ଷ ଭିତରେ ଆଗକୁ ଯାହା ଘଟିବ ତାହା କେତେକ ବ୍ୟକ୍ତି ଜାଣିବା ଅସମ୍ଭବ ନୁହେଁ । ଏହାର ବିଭିନ୍ନ ଦୃଷ୍ଟାନ୍ତମାନ ପରାମନୋବିଦ୍ୟା ସମର୍ଥକମାନେ ଦେଇଥାନ୍ତି ।

ଏହି ସବୁ ଯୁକ୍ତି ଓ ଘଟଣା ପୃଷ୍ଠଭୂମିରେ ପରାମନୋବିଦ୍ୟା ଉପରେ ବୈଜ୍ଞାନିକ ପଦ୍ଧତିରେ ଅନୁସନ୍ଧାନ କରୁଥିବା ବହୁ ଗବେଷକ ଏହାକୁ ଅସ୍ୱୀକାର କରିନାହାନ୍ତି କିମ୍ବା ଅତୀନ୍ଦ୍ରୀୟ ପ୍ରତ୍ୟକ୍ଷକୁ କୌଣସି ସିଦ୍ଧାନ୍ତ ଉପରେ ପ୍ରତିଷ୍ଠା କରିନାହାନ୍ତି । ତେବେ ଯେଉଁ କ୍ଷେତ୍ରରେ ଏହାର ସମ୍ଭାବନା କିଛିକୁ ସ୍ୱୀକାର କରାଯାଉଛି ତାହାକୁ କେବଳ ଆକସ୍ମିକ ସଂଯୋଗ ଭାବେ ନିଆଯାଇପାରେ ।

ଡକ୍ଟର ଡେନିସ ପାର୍ସନ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷର ଗବେଷଣା କ୍ଷେତ୍ରରେ ନୂତନ ବୈଜ୍ଞାନିକ କୌଶଳ ଜରିଆରେ ୨୪୦୦୦ଟି ପରୀକ୍ଷା କରିଥିଲେ। ଦୂର ସମ୍ବେଦନ, ଅତୀନ୍ଦ୍ରିୟ ଦୃଷ୍ଟି ଓ ପ୍ରାକ୍‌ସଂଜ୍ଞାନ କ୍ଷେତ୍ରରେ ସେ କୌଣସି ପ୍ରାମାଣିକ ଆଧାର ନପାଇଥିବା ଏସ.ପି.ଆର ପ୍ରୋସିଡିଙ୍ଗରେ ଛପାଇଥିଲେ । ପୂର୍ବରୁ ଡକ୍ଟର ଜେ.ବି.ରାଇନ ଓ ଅନ୍ୟ କେତେକ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷର ସମ୍ଭାବନା ନେଇ ଯେଉଁ କେତୋଟି ପରିସଂଖ୍ୟାନକୁ ଉଦାହରଣ ଭାବେ ନେଉଥିଲେ, ସେହି ପରୀକ୍ଷା ପଦ୍ଧତିରେ ରହିଥିବା ତ୍ରୁଟିକୁ ଅନ୍ୟମାନେ ଦର୍ଶାଇଲେ । ଜଣକ ମନର ଭାବନାକୁ କୌଣସି ଭାବରେ ଯେ ଅନ୍ୟର ମାନସିକ ସ୍ତରରେ ପ୍ରତିଧ୍ୱନିତ କରିହେବ ଏହାର କୌଣସି ବୈଜ୍ଞାନିକ ଆଧାର ନାନା ପରୀକ୍ଷା ସତ୍ତ୍ୱେ ବାହାର କରି ହୋଇନାହିଁ। ବର୍ଟ୍ରାଣ୍ଡ ରସେଲ, ଆନ୍ଟୋନିଫ୍ଲିଉ, କଲିନ ମାବଲ, ଉଇଜିନ ଆଡାମ, ଜନ ଇ.କୋଭୁର ଇତ୍ୟାଦି ଦାର୍ଶନିକ, ମନସ୍ତତ୍ତ୍ୱବିତ୍ ଓ ବୈଜ୍ଞାନିକମାନେ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ସହ ସଂଶ୍ଳିଷ୍ଟ ବିଭିନ୍ନ କ୍ଷେତ୍ର ଉପରେ ବହୁ ଗବେଷଣା ଦ୍ୱାରା ସିଦ୍ଧାନ୍ତକୁ ଆସିଛନ୍ତି ଯେ ଏହାର କୌଣସି ପରୀକ୍ଷିତ ଆଧାର ନାହିଁ। ଏହା କେବଳ ଆକସ୍ମିକ ସଂଯୋଗ ମାତ୍ର। କେଉଁଠି କିଛି ଆକସ୍ମିକ ସଂଯୋଗ ଜନିତ ଘଟଣାକୁ ଆମେ ଆଧାର ଭାବେ ନେଇଥାଉ କିନ୍ତୁ ଏ କ୍ଷେତ୍ରରେ ଅସଂଖ୍ୟ ନେଗେଟିଭ ଦୃଷ୍ଟାନ୍ତମାନଙ୍କୁ ଆମେ ଏଡାଇଯାଉ । କୌଣସି ନିୟମ ବା ସିଦ୍ଧାନ୍ତ ପାଇଁ ଏକ ବ୍ୟତିକ୍ରମବିହୀନ ଶୃଙ୍ଖଳା ରହିବା ଆବଶ୍ୟକ, ତାର ଅଭାବରେ କେବଳ ଆକସ୍ମିକ ଘଟଣାକୁ ଏକ ସିଦ୍ଧାନ୍ତ କରି ହେବନାହିଁ।

ପୁନଶ୍ଚ ଯେଉଁ ବ୍ୟକ୍ତି ନିଜର ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ସାହାଯ୍ୟରେ ପରମନର ଜ୍ଞାନକୁ ଜାଣି ପାରୁଛନ୍ତି, ନିଜର ଦିବ୍ୟ ଦୃଷ୍ଟିଦ୍ୱାରା ଦୂରର କୌଣସି ଘଟଣା ବା ବସ୍ତୁକୁ ପ୍ରତ୍ୟକ୍ଷ କରୁଛନ୍ତି କିମ୍ବା କୌଣସି ଘଟଣାର ପ୍ରାକ୍‌ସଂଜ୍ଞାନ ପାଉଛନ୍ତି ସେପରି ସ୍ତରରେ ତାହାର ପରୀକ୍ଷା ପାଇଁ ଆନ୍ତର୍ଜାତିକ ସ୍ତରରେ ମଧ୍ୟ ବହୁ ଆହ୍ୱାନ ରହିଛି । ବହୁ କ୍ଷେତ୍ରରେ ଗୁଡିଏ ସମ୍ଭାବନାର କଳ୍ପନା କରାଯାଏ। ପାରିପାର୍ଶ୍ୱିକ ପରିସ୍ଥିତି ଆଧାରରେ ଭବିଷ୍ୟ ନେଇ କେହି କିଛି କଳ୍ପନା କରିପାରନ୍ତି ଓ ଯଦିବି ସେହି କଳ୍ପନା ସତ୍ୟ ବୋଲି ପ୍ରମାଣିତ ହୁଏ, ଏଥିରୁ ଏକ ସିଦ୍ଧାନ୍ତର ଅବତାରଣା କରିହେବ ନାହିଁ। ପରୀକ୍ଷିତ ଆଧାର ଅଭାବରେ ଦୂର ସମ୍ବେଦନ, ଦିବ୍ୟ ଦୃଷ୍ଟି, ପ୍ରାକ୍‌ସଂଜ୍ଞାନ ଜନିତ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ନେଇ ଯେତେସବୁ କାହାଣୀ ଲୋକ ବିଶ୍ୱାସ ସ୍ତରରେ ରହିଛି ସେ ସବୁର ବୈଜ୍ଞାନିକ

ଆଧାର ଅତ୍ୟନ୍ତ ଅସ୍ପଷ୍ଟ । ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ଜନିତ ବସ୍ତୁନିଷ୍ଠ ଗବେଷଣା ଏସବୁକୁ ଏକ ସିଦ୍ଧାନ୍ତ ରୂପରେ ପ୍ରତିଷ୍ଠା କରିପାରୁ ନାହିଁ । ସ୍ଥଳ ବିଶେଷରେ ଏସବୁକୁ ଆକସ୍ମିକ ସଂଯୋଗ ବା ଦୈବାତ୍ ଘଟଣା ଭାବେ ଯାହା କଳ୍ପନା କରାଯାଉଛି । ପରାମାନସିକ ଗବେଷଣା ସଂସ୍ଥାନ ବା ଏସ.ପ.ଆର ଶତାଧିକ ବର୍ଷର ଗବେଷଣା ଓ ଅନୁଶୀଳନ ଭିତରେ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷକୁ କୌଣସି ସିଦ୍ଧାନ୍ତ ରୂପରେ ପ୍ରତିଷ୍ଠା କରିପାରିନାହିଁ, ଅଧିକନ୍ତୁ ଅନେକ ମିଥ୍ୟା ବା ଫ୍ରଡକୁ ଏହା ପଦାରେ ପକାଇଛି ।

ପରାମନୋବିଦ୍ୟାର ଅନ୍ୟ ଏକ କ୍ଷେତ୍ର ହେଉଛି ମନଃପ୍ରଭାବ (Psychokinesis ବା PK କୁହାଯାଏ) । ଏହାର ମଧ୍ୟ ବିଭିନ୍ନ କ୍ଷେତ୍ର ରହିପାରେ । ଗୋଟିଏ ବିଶ୍ୱାସ ହେଉଛି କୌଣସି ସିଦ୍ଧ ବା ଯୋଗୀ ଚାହିଁଲେ ନିଜ ଶରୀରକୁ ଗୋଟିଏ ସ୍ଥାନରେ ରଖି ତାର ଆତ୍ମାକୁ ବାହାର କରି ଅନ୍ୟ ସ୍ଥାନରେ ଆବିର୍ଭାବ ହୋଇପାରିବ । ଏପରିକି ଜଣେ ବ୍ୟକ୍ତି ଏକ ସମୟରେ ବିଭିନ୍ନ ସ୍ଥାନରେ ଉପସ୍ଥିତ ରହିପାରିବ ବୋଲି ଯୋଗରେ ଓ ଲୋକ ବିଶ୍ୱାସରେ ରହିବା ଜଣାଯାଏ । କେତେକ ବିଶିଷ୍ଟ ବ୍ୟକ୍ତି ମଧ୍ୟ ଏହାକୁ ବିଶ୍ୱାସ କରନ୍ତି ଓ ଏ ସମ୍ପର୍କରେ ନିଜର ଅନୁଭୂତିରୁ ଲେଖିଛନ୍ତି । ଏଠାରେ ଦୁଇଟି ଉଦାହରଣକୁ ନିଆଯାଉ ।

ଥିଓସଫିକାଲ ସୋସାଇଟିର ପ୍ରତିଷ୍ଠାତା ମାଡାମ ବ୍ଲାଭାସ୍କି ଇଂଲଣ୍ଡର ପରାମାନସିକ ଗବେଷଣା ସଂସ୍ଥାନ ବା ଏସ.ପି.ଆରରେ ଯାଇ କହିଲେ ଯେ ଭାରତବର୍ଷରେ କେତେକ ଥିଓସଫିଷ୍ଟ ରହିଛନ୍ତି ଯେଉଁମାନେ ନିଜ ଶରୀରରୁ ଆତ୍ମାକୁ ବାହାର କରିପାରିବେ ଓ ଅନ୍ୟ ପାଖରେ ଆଧ୍ୟାତ୍ମିକ ଶରୀର ନେଇ ଅଭିବ୍ୟକ୍ତ ହେବେ । ଏପରିକି କୌଣସି ମାଧ୍ୟମ ଜରିଆରେ ଅନ୍ୟ ସହିତ ସମ୍ବନ୍ଧ ମଧ୍ୟ ରକ୍ଷାକରିପାରିବେ । ଏସ.ପି.ଆର ଆରମ୍ଭ କାଳରେ ଏହି ସଙ୍ଗଠନ ପରାମନୋବିଦ୍ୟାକୁ ଗ୍ରହଣ କରୁଥିଲା ଓ ଏହାକୁ ଏକ ବୈଜ୍ଞାନିକ ଆଧାର ଦେଇ ପ୍ରତିଷ୍ଠା କରିବାକୁ ଚାହୁଁଥିଲା । ସେ ସମୟରେ ଏହି ବିଶ୍ୱାସ ଥିଲା ଯେ ଆତ୍ମାମାନେ ରହିଛନ୍ତି ଓ ବ୍ୟକ୍ତିର ଆତ୍ମା ଶରୀରରୁ ବାହାରି ପାରିବ ବା ଜଣେ ବ୍ୟକ୍ତି ଏକ ସମୟରେ ନାନା ସ୍ଥାନରେ ମଧ୍ୟ ଉପସ୍ଥିତ ହୋଇପାରିବ । ବ୍ଲାଭାସ୍କିଙ୍କର ଏହି ବିବରଣୀ ଉପରେ ଅନୁସନ୍ଧାନ କରିବାକୁ ରିଚାର୍ଡ ହିଡ୍‌ଗସନ ଭାରତବର୍ଷ ଆସି ବହୁ ଥିଓସଫିଷ୍ଟଙ୍କୁ ସାକ୍ଷାତ କଲେ ଓ ଏହାର ସତ୍ୟାସତ୍ୟ ଜାଣିବାକୁ ଚାହିଁଲେ । ପୁନଶ୍ଚ ଥିଓସଫିକାଲ ସୋସାଇଟି ସହ

ସଂପୃକ୍ତ ନଥିବା ସେପରି କୌଣସି ସିଦ୍ଧ ବ୍ୟକ୍ତିଙ୍କର ପରିଚୟ ଚାହିଁଲେ ଯେ ଏହା ବାସ୍ତବରେ କରିପାରୁଛନ୍ତି । ସେ ବହୁ ବ୍ୟକ୍ତିଙ୍କୁ ସାକ୍ଷାତ କଲେ, ସମସ୍ତଙ୍କ ପାଖରୁ ଏହି ଘଟଣା ସତ୍ୟ କି ବୋଲି ଜାଣିବାକୁ ଚାହିଁଲେ ।  ନଚେତ୍ ଏପରି କେଉଁ ବିଦ୍ୟାଦ୍ୱାରା ଏହା ପରୀକ୍ଷା କରିହେବ ତାହାର ମଧ୍ୟ ଅନୁସନ୍ଧାନ କଲେ । ତେବେ ଭାରତରେ ଯେତେ ସ୍ଥାନ ବୁଲିଲେ, ଯେତେ ଯୋଗୀ, ସାଧୁ ଓ ଥିଓସଫିଷ୍ଟଙ୍କୁ ସାକ୍ଷାତ କଲେ କେହି ବି ତାଙ୍କୁ ଏହା ସତ୍ୟ ବୋଲି ପରୀକ୍ଷା ଦେଲେ ନାହିଁ । ବହୁ ଅନୁସନ୍ଧାନ କରି ଗୋଟିଏ ବି ବାସ୍ତବ ଘଟଣାର ପରିଚୟ ନପାଇ ସେ ଇଂଲଣ୍ଡ ଫେରିଗଲେ । ଶେଷରେ ଏସ.ପି.ଆର ମୁଖପତ୍ରରେ ସେ ଲେଖିଲେ ଯେ ବ୍ଲାଭାସ୍କିଙ୍କର ବକ୍ତବ୍ୟ ସମ୍ପୂର୍ଣ୍ଣ ଆଧାରହୀନ, ମନଗଢା ଓ ମିଥ୍ୟା । ସାଧାରଣ ଜନମାନସକୁ  ବିଭ୍ରାନ୍ତ କରିବାକୁ ସେ ଏପ୍ରକାରର ମିଥ୍ୟା ଘଟଣା ବିନା ପରୀକ୍ଷାରେ ଲେଖିଛନ୍ତି ।

ଅବ୍ରାହମ କୋଭୁର ମଧ୍ୟ ଏହି ପ୍ରକାରର ଏକ ଉକ୍ତିର ପରୀକ୍ଷା ୧୯୬୬-୬୭ ରେ କରିଥିଲେ । ତାମିଲ ସମ୍ବାଦପତ୍ର ଥିନାକରଣରେ ୪.୧୧.୬୬ରେ ସତ୍ୟସାଇବାବା ସଙ୍ଗଠନର ସଭାପତି ଡାକ୍ତର ଟି.ନଲାଇନାଥନ ଏକ ପ୍ରବନ୍ଧରେ ଲେଖିଥିଲେ ଯେ ଜଣେ ବ୍ୟକ୍ତି ଏକ ସମୟରେ ବିଭିନ୍ନ ସ୍ଥାନରେ ଆବିର୍ଭାବ ହୋଇପାରିବ । ସେ ଉଲ୍ଲେଖ କରିଥିଲେ ଯେ ୧୯୬୫ ମସିହାରେ ସାଇବାବା ସେ ଶ୍ରୀଲଙ୍କାରେ ଥିବାବେଳେ ଥରେ ତାଙ୍କ ପାଖରେ ଅଫିସରେ ଆବିର୍ଭୂତ ହେଲେ ଓ ତାଙ୍କ ସହିତ ୪୫ ମିନିଟ୍ ଅତିବାହିତ କରିଥିଲେ । ଏପରିକି ଅଫିସ ଗୃହରେ ବାବା କେତେକଙ୍କ ସହ ତାମିଲ ଭାଷାରେ କଥା ହୋଇଥିଲେ ଯେଉଁ ଭାଷା ସାଇବାବା ଜାଣିବାର ଅବକାଶ ନଥିଲା ।  ଏହା ଯେ ଯୋଗୀମାନଙ୍କ ପାଇଁ ଏକ ସାଧାରଣ ଘଟଣା ଓ ଏହି ଘଟଣା ସିରିଡି ସାଇବାବା ବି କରୁଥିଲେ ବୋଲି ଡକ୍ଟର ନଲାଇନାଥନ ଉଲ୍ଲେଖ କରିଥିଲେ ।

କୋଭୁର ଏହି ଲେଖା ପଢିବାପରେ ନାଲାଇନାଥନଙ୍କୁ ପତ୍ର ଲେଖି ସାଇବାବା କେଉଁଦିନ କେଉଁ ଅଫିସ ପରିସରରେ ଆବିର୍ଭୂତ ହୋଇଥିଲେ ତାହା ଜଣାଇବାକୁ ଅନୁରୋଧ କରିଥିଲେ ।  ତାଙ୍କ ପାଖକୁ ଓ ସମ୍ବାଦପତ୍ରକୁ ମଧ୍ୟ ଏହାର ସତ୍ୟାସତ୍ୟ ଜାଣିବାକୁ ଲେଖିଲେ ବି କେହି ତାଙ୍କର ପ୍ରଶ୍ନର ଉତ୍ତର ଦେଲେ ନାହିଁ ।

ଘଟଣାଟିର ବିଶ୍ଳେଷଣ କରି କୋଭୁର ଏକ୍ଷେତ୍ରରେ ଦୁଇଟି ସମ୍ଭାବନାର ବିଷୟ ଉଲ୍ଲେଖ କରିଛନ୍ତି । ଡଃ. ଟି. ନାଲାଇନାଥନ ଲେଖିଥିବା ଘଟଣା ତାଙ୍କର ଏକ ବ୍ୟକ୍ତିନିଷ୍ଠ ଅନୁଭୂତି ହେବା ସମ୍ଭବ । ତେବେ ଏହା ଏକ ମତିଭ୍ରମ ଜନିତ ପ୍ରତ୍ୟକ୍ଷ ଓ କେତେକ ମାନସିକ ବିକୃତିରୁ ଏହା ହୋଇପାରେ । କେତେକ ମାନସିକ ବିକୃତିରୁ ଗୋଟିଏ ଘଟଣା ନଘଟି ମଧ୍ୟ କେତେକ ବ୍ୟକ୍ତି ତାହାକୁ ପ୍ରତ୍ୟକ୍ଷ କରିବାର ଅନୁଭୂତି ଲାଭ କରିଥାନ୍ତି । ଅନ୍ୟ ସମ୍ଭାବନାଟି ହେଉଛି କେତେକ ମିଥ୍ୟାକୁ ମଧ୍ୟ ଲୋକମାନେ ଜାଣିଶୁଣି ଏକ ବାସ୍ତବ ଘଟଣାର ଚିତ୍ର ଦେଇ ପ୍ରକାଶ କରିଥାନ୍ତି । ମନ୍ଦ ଉଦ୍ଦେଶ୍ୟରେ କପୋଳକଳ୍ପିତ ଘଟଣାକୁ ସମ୍ବାଦପତ୍ରରେ ଲେଖିବା ମଧ୍ୟ କିଛି ବ୍ୟକ୍ତିଙ୍କର ସ୍ଵଭାବଗତ ପ୍ରବୃତ୍ତି । ବିନା ପରୀକ୍ଷାରେ ମନଗଢା କାହାଣୀ ଶୁଣିକରି ଲେଖନ୍ତି ବା ନିଜେ ମନରୁ କାହାଣୀ ସୃଷ୍ଟି କରନ୍ତି ।

ସାଇକୋକାଇନେସିସ (Psychokinesis କୁ ସଂକ୍ଷେପରେ PK ପିକେ କୁହାଯାଏ) ର ତାତ୍ପର୍ଯ୍ୟ ହେଉଛି ମାନସିକ ଚିନ୍ତନ ଦ୍ଵାରା ବାହ୍ୟ ଜଗତରେ ପ୍ରଭାବ ସୃଷ୍ଟିକରିବା । ପୂର୍ବ ସୂଚିତ ଘଟଣା ଯେପରି ପିକେର ଏକ ଦିଗ, ସେହିପରି ଏହାର ଅନ୍ୟାନ୍ୟ ଦିଗନ୍ତ ବିଷୟରେ ଚର୍ଚ୍ଚା ହୋଇଥାଏ । ତେବେ ପିକେ ବା ସାଇକୋକାଇନେସିସ ଏକ ଶ୍ରେଣୀଗତ ଭାବନା ଯାହା ନାନା ଘଟଣାକୁ ସୂଚିତ କରିଥାଏ । ଏହା ଏକ ନିର୍ଦ୍ଦିଷ୍ଟ ଘଟଣା ବା ବିଶେଷ କ୍ରିୟାକୁ ନବୁଝାଇ ଏକ ଶ୍ରେଣୀ ବା ସାମାନ୍ୟ ପ୍ରତ୍ୟୟଭାବେ ନାନା ଘଟଣାମାନଙ୍କୁ ସୂଚାଇଥାଏ । ତେବେ ପ୍ରତ୍ୟେକ କ୍ଷେତ୍ରରେ ମାନସିକ କ୍ରିୟାକୁ କାରଣଭାବେ ନିଆଯାଏ ଓ ଏହାଦ୍ଵାରା ବିଭିନ୍ନ କାର୍ଯ୍ୟ ଯେ ଉଦ୍ଭବ ହୁଏ ଏହା ହିଁ ଏହାର ତାତ୍ପର୍ଯ୍ୟ ଅଟେ । ବିଶେଷକରି ପରାମନୋବିଦ୍ୟାରେ ବିଶ୍ଵାସ କରୁଥିବା ବ୍ୟକ୍ତିଗଣ ଏଥିରେ ଆସ୍ଥା ସ୍ଥାପନ କରିଥାନ୍ତି । ପରାମନୋବିଜ୍ଞାନର ଦୁଇଟି ଦିଗ ଯଥା ଅତିନ୍ଦ୍ରିୟ ପ୍ରତ୍ୟକ୍ଷ (ଯାହାର ସୂଚନା ପୂର୍ବରୁ ଦିଆ ଯାଇଛି) ଓ ସାଇକୋକାଇନେସିସ ବା ପିକେ । ଏଠାରେ ପିକେ ସମ୍ବନ୍ଧରେ କେତେକ ସୂଚନାକୁ ଆଲୋଚନା କରାଯାଉ ।

ମାନସିକ କ୍ରିୟାଦ୍ଵାରା ଶରୀର ଉପରେ ପୂର୍ଣ୍ଣ ନିୟନ୍ତ୍ରଣ ଆଣି ଜଣେ ଚାହିଁଲେ ଶୂନ୍ୟରେ ଶରୀରକୁ ରଖିପାରିବ ବୋଲି ଭାବନା ରହିଛି । ଅତୀନ୍ଦ୍ରିୟ ଯୋଗଦ୍ଵାରା ଶରୀର ଶୂନ୍ୟରେ ଭାସିପାରିବ ଓ ବିନା ସମର୍ଥନରେ ଜଣେ ଶୂନ୍ୟକୁ ଉଠିପାରିବ

ବୋଲି କେତେକ ବିଶ୍ୱାସ କରିଥାନ୍ତି । ଏହାକୁ ସେଲଫ୍ ଲେଭିଟେସନ (self-levitation) କୁହାଯାଇଥାଏ । ସେହିପରି ଏକ ଭାବନା ରହିଛି ଯେ ଜଣେ ଆଧ୍ୟାତ୍ମିକ ଶକ୍ତି ବା ମାନସିକ ଚିନ୍ତାର ପ୍ରୟୋଗକରି ଅନ୍ୟ ଜଣଙ୍କ ଜୀବନର ବା କୌଣସି ଘଟଣାର ମୋଡ ପରିବର୍ତ୍ତନ କରିଦେଇ ପାରିବେ । କୌଣସି ଖେଳରେ ନିଜର ମାନସିକ ଶକ୍ତିର ପ୍ରଭାବରେ ଗୋଟିଏ ଦଳକୁ ଜିତାଇ ଦେଇପାରିବେ । ଜଣେ ବ୍ୟକ୍ତିଙ୍କୁ ନିର୍ବାଚନରେ ବିଜୟୀ କରାଇଦେବେ ବା ଜଣକୁ ମୃତ୍ୟୁ ମୁଖରୁ ବଞ୍ଚାଇ ଦେବେ । ଏପରିକି ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ମହାପ୍ରତାପୀ ହିଟଲରଙ୍କର ବିଜୟକୁ ଜଣେ ଯୋଗୀ ତାଙ୍କର ଆଧ୍ୟାତ୍ମିକ ଶକ୍ତିଦ୍ୱାରା ପ୍ରତିହତ କରି ଯୁଦ୍ଧର ଗତିପଥକୁ ପରିବର୍ତ୍ତନ କରିଦେଇଥିଲେ ବୋଲି ତାଙ୍କର ଅନୁଗତ ଭକ୍ତମାନେ କହିଥାନ୍ତି । ଗୋଟିଏ ଆବଦ୍ଧ କୋଠରୀ ଭିତରେ ରହି ମାନସିକ ଶକ୍ତିର ପ୍ରଭାବରେ ବାହ୍ୟ ଜଗତର ଘଟଣାବଳୀକୁ ନିୟନ୍ତ୍ରଣ କରିହେବ ବୋଲି ଯେଉଁ ବିଶ୍ୱାସ ରହିଛି ତାହା ପିକେର ଅନ୍ତର୍ଭୁକ୍ତ ।

ସେହିପରି ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ମଧ୍ୟ କେତେକ ବିଶ୍ୱାସ କରନ୍ତି ଯେ ମାନସିକ ଶକ୍ତିର ପ୍ରୟୋଗରେ ଜଣଙ୍କର ଦୁସାଧ୍ୟ ରୋଗକୁ ଭଲ କରିହେବ । ତନ୍ତ୍ର, ମନ୍ତ୍ର ଦ୍ୱାରା ବା ଦେବୀଙ୍କୁ ସାଧନା କରି ଜଣେ ଏପରି ଶକ୍ତି ହାସଲ କରିପାରିବ ଯାହାଦ୍ୱାରା ସେ ଅନ୍ୟର ରୋଗକୁ ଭଲ କରିପାରିବ । ବାଇଲୋଜିକାଲ ହିଲିଂ, ସାଇକିକ୍ ସର୍ଜରି ଇତ୍ୟାଦି ଭାବନା ଏହି ଶ୍ରେଣୀର । ଅନ୍ୟର ରୋଗକୁ ମାନସିକ ଶକ୍ତି ପ୍ରୟୋଗକରି ଆରୋଗ୍ୟ କରିପାରିବା ଓ ହସ୍ତଚାଳନା ଜନିତ ଅସ୍ତ୍ରୋପଚାର କରି ଶରୀରରୁ ରୋଗ ଭଲ କରିବାର ସାମର୍ଥ୍ୟ ସେମାନଙ୍କର ରହିଛି ବୋଲି ସେମାନେ ଭାବିଥାନ୍ତି । ଏଥିପାଇଁ ମନ୍ତ୍ର, ତନ୍ତ୍ରର ପ୍ରୟୋଜନ କେତେକ କରିଥାନ୍ତି ଏହି ବିଶ୍ୱାସରେ ଯେ ଏହାଦ୍ୱାରା ଏପରି ଶକ୍ତି ସୃଷ୍ଟି ହୁଏ ଯାହାଦ୍ୱାରା ଅନ୍ୟର ରୋଗ ଭଲ କରିହେବ ।

ପୁନଶ୍ଚ ଦୂରରେ ରହି କେତେକ ବସ୍ତୁରେ ପରିବର୍ତ୍ତନ କରିହେବ । ଜଣେ ମାନସିକ ଶକ୍ତି ବଳରେ ଗୋଟିଏ ଗାଡିର ଗତିକୁ ବନ୍ଦ କରିପାରିବ, ଏକ ମେସିନର କାର୍ଯ୍ୟକାରିତାକୁ ନଷ୍ଟ କରିହେବ ଓ ଏପରିକି କୌଣସି ପରିବାରରେ ନାନା ଅଘଟଣ ସୃଷ୍ଟି କରିପାରିବ । ଏବେ ବି ବିଶ୍ୱାସ ରହିଛି ଯେ କେଉଁ ଲୋକର ଦୃଷ୍ଟି ଯୋଗୁଁ ରୋଷାଇରେ ବିଭ୍ରାଟ ହେଲା ବା କେହି ମନ୍ତ୍ର, ତନ୍ତ୍ର ପ୍ରୟୋଗ କରିଥିବାରୁ କାହାର

ଝାଡା ହେଲା ବା ରକ୍ତ ବାନ୍ତି ହେଲା । ମାନସିକ ଶକ୍ତି, ମନ୍ତ୍ର, ତନ୍ତ୍ରର ପ୍ରୟୋଗ ଜନିତ କାର୍ଯ୍ୟଦ୍ୱାରା ବାହ୍ୟ ବସ୍ତୁରେ ପ୍ରଭାବ ସୃଷ୍ଟି କରିବାର ଭାବନା ପରାମନୋବିଦ୍ୟା ପିକେର ଅନ୍ତର୍ଭୁକ୍ତ । ପୁନଶ୍ଚ ଏହା ବି ଦୁଇ ପ୍ରକାରର । ଯଦି ଏହି ପ୍ରଭାବ ଅତି ସୂକ୍ଷ୍ମସ୍ତରରେ କରାଯାଏ ତାହାକୁ ମାଇକ୍ରୋ ପିକେ କୁହାଯାଏ, ଯଦି ଏହାକୁ ବଡ ବସ୍ତୁ କ୍ଷେତ୍ରରେ ପ୍ରୟୋଗ କରାଯାଏ (ମେସିନ ନ ଚାଲିବା, ଗାଡି ବନ୍ଦ କରିଦେବା, କ୍ୟାମେରାରୁ ଫଟୋ ଉଭେଇଯିବା) ତେବେ ଏହା ମାକ୍ରୋପିକେ ବୋଲି ନିଆଯାଏ ।

ପୁନଶ୍ଚ ପିକେ କ୍ଷେତ୍ରରେ ବସ୍ତୁର ସ୍ୱରୂପରେ ପରିବର୍ତ୍ତନ ଆଣିହେବ ବୋଲି ମଧ୍ୟ ବିଶ୍ୱାସ ରହିଛି । ସାମାନ୍ୟ ଖାଦ୍ୟରୁ ଅସରନ୍ତି ଖାଦ୍ୟ ସୃଷ୍ଟିକରିବା, ଜଳକୁ ମଦରେ ପରିବର୍ତ୍ତନ କରିବା ଇତ୍ୟାଦି କାର୍ଯ୍ୟ ସମ୍ଭବ ହେବ ବୋଲି ବିଶ୍ୱାସ ତନ୍ତ୍ର, ମନ୍ତ୍ରରେ ରହିଛି । ଏପରିକି ଏହା ମଧ୍ୟ ବିଶ୍ୱାସ ରହିଛି ଯେ ଆଧ୍ୟାତ୍ମିକ ଶକ୍ତିଦ୍ୱାରା ଶୂନ୍ୟରୁ ବସ୍ତୁ ସୃଷ୍ଟି କରିହେବ । କେତେକ ବାବା ହାତରୁ ବିଭୂତି ସୃଷ୍ଟି କରିବା, ହାତକୁ ଶୂନ୍ୟରେ ହଲାଇ ବସ୍ତୁ ବାହାର କରିବା ଧାରଣାରୁ ଅଗଣିତ ବ୍ୟକ୍ତି ବାବାମାନଙ୍କର ଭକ୍ତ ହେବା ସାଧାରଣ ଘଟଣା ଅଟେ ।

ଗୋଟିଏ ସ୍ଥାନରୁ ଉଭେଇ ଯାଇ ଅନ୍ୟ ସ୍ଥାନରେ ବାହାରିବା, ଏକ ସମୟରେ ବିଭିନ୍ନ ସ୍ଥାନରେ ଉପସ୍ଥିତ ରହିବା, ଶରୀରରୁ ଆତ୍ମାକୁ ବାହାର କରିପାରିବା ଇତ୍ୟାଦି ଭାବନା ସକଳ ପିକେ ଭିତରେ ମଧ୍ୟ ଅନ୍ତର୍ଭୁକ୍ତ । ସେହିପରି ମାନସିକ ଶକ୍ତିଦ୍ୱାରା କିଛି ବସ୍ତୁ ସୃଷ୍ଟି କରିପାରିବା ଯାହାକୁ ଅନ୍ୟମାନେ ପ୍ରତ୍ୟକ୍ଷ କରିପାରିବେ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ସାଇକୋକାଇନେସିସ ପରିଭାଷାରେ ଏହାକୁ ଥଟୋଗ୍ରାଫି କୁହାଯାଏ ।

ପରାମନୋବିଜ୍ଞାନ ଜନିତ ସାଇକୋକାଇନେସିସ ବା ପିକେରେ ଏସବୁ ବିଶ୍ୱାସ ଜନିତ ଭାବନା ସମ୍ପୃକ୍ତ । ଏସବୁର ବିଶ୍ୱାସ ବହୁ ସମାଜରେ ରହିଛି । କେତେକ ବିଶ୍ୱାସ ପ୍ରାକୃତିକ ନିୟମର ବିରୋଧି ହେଲେ ମଧ୍ୟ ସେସବୁରେ ଲୋକମାନେ ଆସ୍ଥା ସ୍ଥାପନ କରିଥାନ୍ତି । ପୁନଶ୍ଚ ଏସବୁକୁ ଭାବନା ଧର୍ମଗ୍ରନ୍ଥ ବା ଧାର୍ମିକ ବିଶ୍ୱାସ ସ୍ତରରେ ରହିଛି । ଏହି ସବୁ ଚମତ୍କାରିତା ଜନିତ ବିଶ୍ୱାସ ବହୁ ଅତୀତରୁ ସମାଜରେ ରହିଆସିଛି ଓ ଏବେ ବି ଅନେକ ବ୍ୟକ୍ତିଙ୍କର ଏଥିରେ ପ୍ରଗାଢ ଆସ୍ଥା ରହିଛି । ବିଜ୍ଞାନ, ମନୋବିଜ୍ଞାନ ଉର୍ଦ୍ଧ୍ୱରେ ଏପରି ଏକ ପରାଜଗତର ଘଟଣା ରହିଛି ଯାହା କେବଳ ଯୋଗୀ, ସାଧୁ,

ତାନ୍ତ୍ରିକମାନେ ଜାଣିପାରିବେ । ପରାମନୋବିଦ୍ୟାକୁ ବିଜ୍ଞାନର ଅପହଞ୍ଚ ଦୂରରେ ରଖି ବିଶ୍ୱାସ କରିବାର ମାନସିକତା ସମାଜରେ ରହିଛି ।

ଆମେରିକା ଭଳି ଅତି ଉନ୍ନତ ଦେଶମାନଙ୍କରେ ବି ପରାମନୋବିଦ୍ୟା ଜନିତ ଗବେଷଣା ଓ ବିଶ୍ୱାସ କେତେକ ବ୍ୟକ୍ତି କରିଥାନ୍ତି । ଜେ.ବି.ରାଇନ ଆମେରିକାରେ ପରାମନୋବିଦ୍ୟାର ଜଣେ ବିଶିଷ୍ଟ ଗବେଷକ ଓ ଏହାର ସତ୍ୟତା ନେଇ କେତେକ ପୁସ୍ତକ ରଚନା କରିଛନ୍ତି । ତେବେ ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କର ପରୀକ୍ଷା ପଦ୍ଧତି ଯେ ସମ୍ପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ ଓ ନିଜର ବିଶ୍ୱାସମାନଙ୍କୁ ସେ ବୈଜ୍ଞାନିକ ପରିଭାଷା ଦେଇ ବ୍ୟକ୍ତ କରିଛନ୍ତି ବୋଲି ବହୁ ଗବେଷକ ମତ ପୋଷଣ କରିଛନ୍ତ । ତଥାପି ପରାମନୋବିଦ୍ୟା ଜନିତ ପିକେଦ୍ୱାରା ପ୍ରକୃତରେ ବାହ୍ୟ ଘଟଣାକୁ ନିୟନ୍ତ୍ରଣ କରାଯାଇପାରିବ କି ବୋଲି ଆମେରିକାର ଏକାଡେମି ଅଫ ସାଇନ୍ସ ଦ୍ୱାରା ବହୁ ଅନୁସନ୍ଧାନ କରାଯାଇଥିଲା । ଯଦି ପିକେଦ୍ୱାରା ଅନ୍ୟ ଦେଶର ସାମରିକ ଯନ୍ତ୍ରପାତିକୁ ଅକାମୀ କରିହେବ ବା ସେସବୁର କାର୍ଯ୍ୟକାରିତାକୁ ପ୍ରତିହତ କରିଦେଇ ହେବ ତେବେ ସରକାର ଏକ୍ଷେତ୍ରରେ ଗବେଷଣାକୁ ସମସ୍ତ ପ୍ରାଧାନ୍ୟ ଦେବେ । ବସ୍ତୁତଃ ଆମେରିକା ଏକାଡେମି ଅଫ ସାଇନ୍ସ ଏ କ୍ଷେତ୍ରରେ ବହୁ ଅନୁସନ୍ଧାନ, ପରୀକ୍ଷା ଓ ଗବେଷଣା ଦ୍ୱାରା ଏହା ସମ୍ଭବ ନୁହେଁ ବୋଲି ୧୯୮୭ରେ ନିଜର ମତାମତ ପ୍ରକାଶ କଲେ । ପରାମନୋବିଦ୍ୟା ବା ପିକେ ଯେ କୌଣସି ବୈଜ୍ଞାନିକ ସିଦ୍ଧାନ୍ତ ଉପରେ ଆଧାରିତ ନୁହେଁ ଏହାହିଁ ଗ୍ରହଣ କରାଗଲା ।

ଏହି ପୃଷ୍ଠଭୂମିରେ ଚମତ୍କାର ମ୍ୟାଜିକ କଳା ଦେଖାଇ ପାରୁଥିବା ବିଶ୍ୱବିଖ୍ୟାତ ଯାଦୁକର ଜେମସ୍ ରାଣ୍ଡି (ଜନ୍ମ ୧୯୨୮)ଙ୍କର ଆହ୍ୱାନ ପ୍ରଣିଧାନ ଯୋଗ୍ୟ । ସର୍ବସାଧାରଣରେ ବହୁ ଚମତ୍କାର ଯାଦୁ ଦେଖାଇ ପାରୁଥିବା ଏହି ବିଶିଷ୍ଟ ଲେଖକ, ଗବେଷକ ଓ ସମାଲୋଚକ ୧୦ ଲକ୍ଷ ଡଲାରର ଏକ ଆହ୍ୱାନ ଆନ୍ତର୍ଜାତିକ ସ୍ତରରେ ରଖିଛନ୍ତି । ଯଦି କୌଣସି ବ୍ୟକ୍ତି ଗୋଟିଏ ଆଧିଭୌତିକ ଘଟଣା ଦେଖାଇପାରିବ ଯାହା ବୈଜ୍ଞାନିକ ପ୍ରଣାଳୀରେ ପରୀକ୍ଷିତ ହୋଇପାରିବ ତେବେ ସେ ତାଙ୍କର ଏହି ଅର୍ଥ ନେଇପାରିବେ । ପରାମନୋବିଜ୍ଞାନ ସ୍ତରରେ ଯହି କେହି ମାନସିକ କ୍ରିୟା ପ୍ରୟୋଗକରି ବାହ୍ୟ ଜଗତର କୌଣସି ଘଟଣା ସୃଷ୍ଟି କରିପାରିବେ କିମ୍ବା ଭୂତ, ପ୍ରେତ, ଆତ୍ମା, ଦେବଦୂତ ସୃଷ୍ଟିକରି ଦେଖାଇ ପାରିବେ ତେବେ ତାଙ୍କ ପାଇଁ ଏହି ଆହ୍ୱାନ

ଖୋଲା ରହିବ । ଆବ୍ରାହମ କୋଭୁର ୧୯୬୪ରେ ଯେଉଁ ଆହ୍ୱାନ ଯୋଗୀ, ସାଧୁ, ତାନ୍ତ୍ରିକ, କାପାଳିକ, ଆଧ୍ୟାତ୍ମିକ ସାଧକମାନଙ୍କୁ ଦେଇଥିଲେ ଜେମସ ରାଣ୍ଡିଙ୍କଦ୍ୱାରା ସ୍ଥାପିତ ଜେମସ ରାଣ୍ଡି ଏଡୁକେସନାଲ ଫାଉଣ୍ଡେସନ ସେହି ପ୍ରକାର ଚାଲେଞ୍ଜ ଆନ୍ତର୍ଜାତିକ ସ୍ତରରେ ରଖିଛି । ବିଶେଷକରି ପରାମନୋବିଜ୍ଞାନ ସ୍ତରରେ ଯେଉଁମାନେ କିଛି ଅତୀନ୍ଦ୍ରିୟ ଚମତ୍କାରିତା ଦେଖାଇ ପାରିବାକୁ ଦାବି କରିଛନ୍ତି ସେମାନଙ୍କ ପାଇଁ ଜେମସ ରାଣ୍ଡି ଏହି ଆହ୍ୱାନ ରଖିଛନ୍ତି । କହିବା ନିଷ୍ପ୍ରୟୋଜନ ଯେ ତଥାକଥିତ ପରାମନୋବିଜ୍ଞାନର ପୃଷ୍ଠପୋଷକମାନେ କେହି ନିର୍ଦ୍ଧାରିତ ପଦ୍ଧତି ଆଧାରରେ ନିଜର ଆଧ୍ୟାତ୍ମିକ ଶକ୍ତି ଓ ଅଧିଦୈବିକ ସାମର୍ଥ୍ୟର ପରିଚୟ ଦେଇ ନାହାନ୍ତି ।

ଏକଦା ପରାମନୋବିଜ୍ଞାନ କ୍ଷେତ୍ର ନେଇ ଅନେକ ବିଶ୍ୱାସ ସମାଜରେ ରହିଥିଲା । ପୁନଶ୍ଚ ପରାମନୋବିଜ୍ଞାନର ପରିସର ଅତି ବ୍ୟାପକ ବୋଲି ଗ୍ରହଣ କରାଯାଉଥିଲା । ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ଓ ମାନସିକ ଶକ୍ତି ଚଳନ ଯେପରି ପରାମନୋବିଜ୍ଞାନର ପରିସରଭୁକ୍ତ ଥିଲା, ସେହିପରି ଅଶରୀର ଶକ୍ତିର ପ୍ରଭାବ, ଦେବଦୂତର କାର୍ଯ୍ୟ, ଅଭୌତିକ ଶକ୍ତିର ଫଳ ଇତ୍ୟାଦି ମଧ୍ୟ ଏହାର ଅନ୍ତର୍ଗତ ଥିଲା । ଭୂତ, ପ୍ରେତ (Poltergeist) ଇତ୍ୟାଦି ରହିଛନ୍ତି ଓ ସେମାନେ ବିଭିନ୍ନ ଭୌତିକ କାଣ୍ଡ ସୃଷ୍ଟି କରିପାରନ୍ତି ବୋଲି ଧାରଣା ବିଭିନ୍ନ ସମାଜରେ ରହିଥିଲା । ସାହିତ୍ୟ ପରିସରରେ ଏସବୁକୁ ଆଧାର କରି ନାନା କାହାଣୀ ରହିଛି । ପରାମନୋବିଜ୍ଞାନ ଜନିତ ଘଟଣା, ଭୂତ, ଅଶରୀର ସତ୍ତା ଇତ୍ୟାଦିକୁ ନେଇ ନାନା ଚଳଚିତ୍ର ବି ନିର୍ମାଣ କରାଯାଇଛି । କେତେ କେତେ ଟିଭି ସିରିଏଲ ମାନଙ୍କରେ ଅଦୃଶ୍ୟ ଶକ୍ତି, ଅଭୌତିକ ସତ୍ତାର ନାନା କାହାଣୀ ପ୍ରଚାର କରାଯାଉଛି । ଅସଂଖ୍ୟ ଲେଖା ବିଭିନ୍ନ ପତ୍ର, ପତ୍ରିକାରେ ଏ ବିଷୟରେ ପ୍ରକାଶ ପାଉଛି । କେବଳ ସେତିକି ନୁହେଁ କେତେକ ଦେଶରେ କେତେକ ବୈଜ୍ଞାନିକ ବି ଏସବୁରେ ଆସ୍ଥା ସ୍ଥାପନକରି ଏହା ଉପରେ ବହି ଲେଖିଛନ୍ତି । ଇଂଲଣ୍ଡର ସୋସାଇଟ ଫର ସାଇକିକାଲ ରସର୍ଚ୍ଚ ଏକଦା ଏଥିପାଇଁ ସ୍ଥାପିତ ହୋଇଥିଲା । ଆମେରିକାର ଜଣେ ଜୀବବିଜ୍ଞାନୀ ଜେ.ବି.ରାଇନ ପରାମନୋବିଜ୍ଞାନରେ ଗଭୀର ଆସ୍ଥା ସ୍ଥାପନକରି ଏହାକୁ ବୈଜ୍ଞାନିକ ଆଧାର ଦେବାପାଇଁ ପ୍ରୟାସ କରିଥିଲେ । ତେବେ ପ୍ରକୃତରେ ଏସବୁର କିଛି ସତ୍ୟତା ଅଛିକି ବୋଲି ଅନେକ ମନୋବିଜ୍ଞାନୀ, ହେତୁବାଦୀ ଓ ବୈଜ୍ଞାନିକ

ଅନୁସନ୍ଧିତ୍ସୁ ହୋଇ ଏହାର ପରୀକ୍ଷା ବୈଜ୍ଞାନିକ ପଦ୍ଧତିରେ କରିବାକୁ ପ୍ରୟାସ କରିଛନ୍ତି । ସକାରାତ୍ମକ ଭାବରେ ଏହାର ବୈଜ୍ଞାନିକ ଆଧାର ଥିବା କେବେହେଲେ ପ୍ରତିଷ୍ଠା ହୋଇନାହିଁ । ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ଜନିତ ଘଟଣାମାନଙ୍କୁ ନାନା ପରୀକ୍ଷା କଲାବେଳେ ଏହା କୌଣସି ଭାବରେ ପ୍ରତିଷ୍ଠିତ ହୋଇପାରୁନାହିଁ । ପୁନଶ୍ଚ ଭୂତ, ପ୍ରେତ, ଅଶରୀର ଇତ୍ୟାଦିର କୌଣସି ଭିତ୍ତିଥିବା କେବେ ବି ଜଣା ପଡିନାହିଁ । ସାଇକୋକାଇନେସିସ କ୍ଷେତ୍ରରେ ଯାହାସବୁ ବିଶ୍ୱାସ ରହିଛି ତାହା କେତେ ଦୂର ବାସ୍ତବ ? ବିଭିନ୍ନ ପରୀକ୍ଷା ପରେ ଏସବୁର କୌଣସି ବୈଜ୍ଞାନିକ ଆଧାରଥିବା କେବେ ଜଣାପଡିନାହିଁ । ଏହି ପୃଷ୍ଠଭୂମିରେ ଏସବୁ ଯେ ଭିତ୍ତିହୀନ ଏହା ବିଜ୍ଞାନ ସ୍ତରରେ ଜଣା ପଡିବାପରେ ଅନ୍ତର୍ଜାତିକ ସ୍ତରରେ ପାରଲୌକିକ ଘଟଣାର ବୈଜ୍ଞାନିକ ଅନୁସନ୍ଧାନ କମିଟି (Committee for Scientific Investigation of Claims of the Paranormal-CSICOP) ଏଥିପାଇଁ ଆହ୍ୱାନ ରଖିଛି । ପାରଲୌକିକ ଘଟଣାର ପ୍ରମାଣ ଦେଲେ ସେଥିପାଇଁ ବିପୁଳ ଅର୍ଥ ଦେବାର ଆହ୍ୱାନ ରଖାଯାଇଛି । ବିଭିନ୍ନ ଦେଶରେ ଥିବା CSICOP ଅନୁଷ୍ଠାନ ତରଫରୁ ନାନା ତଥାକଥିତ ପାରଲୌକିକ ଘଟଣାମାନଙ୍କୁ ଅନୁସନ୍ଧାନ କରାଯାଇ ତାହା ପଛର ରହସ୍ୟକୁ ଉନ୍ମୋଚନ କରାଯାଇଛି । ପରାମନୋବିଜ୍ଞାନ ନେଇ ଯେତେସବୁ ରହସ୍ୟମୟ କାହାଣୀ ଗୁଡିକ ଏକଦା ବେଶ୍ ଚିତ୍ତାକର୍ଷକ ଥିଲା ବୈଜ୍ଞାନିକ ଆହ୍ୱାନ ପୃଷ୍ଠଭୂମିରେ ସେସବୁ ଯେ ମିଥ୍ୟା ଓ ମନଗଢା ଗପ ବା ମିଥ୍ ତାହା କାଳକ୍ରମେ ବୌଦ୍ଧିକ ସ୍ତରରେ ପ୍ରତିଷ୍ଠା ହୋଇଛି ।

ତଥାପି ସାଧାରଣ ଲୋକଙ୍କ ଭିତରେ, ଏହାକୁ ନେଇ ବିଶ୍ୱାସ ରହିଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବରେ ଏସବୁ ଜନମାନସକୁ ବେଶ୍ ପ୍ରଭାବିତ କରିପାରୁଛି । ଏହି ସବୁକୁ ପ୍ରସାର କରି ଜନମାନସକୁ ବିଭ୍ରାନ୍ତ କରିବାରେ ଗଣମାଧ୍ୟମ ବି ନକାରାତ୍ମକ ଭୂମିକା ନେଇଛି ।

## ଆତ୍ମା ଓ ପୁନର୍ଜନ୍ମ :

ଅଧିକାଂଶ ଧର୍ମର ବିଶ୍ୱାସ ହେଉଛି ଯେ ପ୍ରତ୍ୟେକ ବ୍ୟକ୍ତିର ଏକ ଆତ୍ମା ରହିଛି । ପୁନଶ୍ଚ ଏହା ମଧ୍ୟ ବିଶ୍ୱାସ ରହିଛି ଯେ ମୃତ୍ୟୁ ପରେ ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ଅଶରୀର ସ୍ଥିତିରେ ରହେ । ତେବେ ଏ କ୍ଷେତ୍ରରେ ଧର୍ମମାନଙ୍କ କ୍ଷେତ୍ରରେ ଦୁଇଟି ମୌଳିକ

ପାର୍ଥକ୍ୟ ରହିଛି । ଇସଲାମ, ଜୁଡାଇଜିମ, ଖ୍ରୀଷ୍ଟଧର୍ମ ଇତ୍ୟାଦି ପାଶ୍ଚାତ୍ୟ ଭୂଖଣ୍ଡର ଧର୍ମମାନଙ୍କର ବିଶ୍ୱାସ ଅନୁଯାୟୀ କେବଳ ମଣିଷର ଆତ୍ମା ରହିଛି, ଇତର ପ୍ରାଣୀଙ୍କର ଆତ୍ମା ନାହିଁ । ଅପରପକ୍ଷରେ ହିନ୍ଦୁଧର୍ମ, ଜୈନଧର୍ମ ଇତ୍ୟାଦି ଧର୍ମମାନଙ୍କର ବିଶ୍ୱାସ ଅନୁଯାୟୀ ଜୀବନ ଥିବା ପ୍ରତ୍ୟେକ ପ୍ରାଣୀର ଏକ ଆତ୍ମା ରହିଛି । ଆତ୍ମା ହେଉଛି ଏକ ସଚେତନ ସତ୍ତା ଓ ଏହି ସତ୍ତା ଶରୀରଠାରୁ ପୃଥକ୍ ହୋଇପାରିବ । ଧର୍ମମାନଙ୍କର ବିଶ୍ୱାସ ଅନୁଯାୟୀ ମଣିଷ ହେଉଛି ଦୁଇଟି ପୃଥକ ସତ୍ତାର ସଂଯୋଗ, ଯଥା ଶରୀର ଓ ଆତ୍ମା । ଏହି ପ୍ରତ୍ୟେକ ସତ୍ତାର ସତନ୍ତ୍ର ଅସ୍ତିତ୍ୱ ରହିଛି । ମୃତ୍ୟୁପରେ ଶରୀରରୁ ଆତ୍ମା ଚାଲିଯାଏ ଓ ଏହା ଏକ ଭିନ୍ନ ସ୍ଥିତିରେ ଅବସ୍ଥାନ କରେ ।

ଏହି ପୃଷ୍ଠଭୂମିରେ ଧର୍ମମାନଙ୍କ ମଧ୍ୟରେ ଏକ ମୌଳିକ ପାର୍ଥକ୍ୟ ରହିଛି । ଖ୍ରୀଷ୍ଟଧର୍ମ, ଇସଲାମ ଧର୍ମ ମାନଙ୍କରେ ପୁନର୍ଜନ୍ମର ଭାବନା ନାହିଁ । ମଣିଷ ଥରଟିଏ ଜନ୍ମ ଗ୍ରହଣ କରେ । ମୃତ୍ୟୁପରେ ବ୍ୟକ୍ତିର ଆତ୍ମା ରହେ ଓ ଈଶ୍ୱର ତାର ଭଲ ମନ୍ଦ ମୂଲ୍ୟାୟନ କରି ଆତ୍ମାକୁ ସ୍ୱର୍ଗକୁ ବା ନର୍କକୁ ପଠାଇବେ । ଭଲ ଆତ୍ମା ସବୁଦିନ ପାଇଁ ସ୍ୱର୍ଗରେ ରହିବ ଓ ମନ୍ଦ ଆତ୍ମା ସବୁଦିନ ପାଇଁ ନର୍କରେ ରହିବ । ଏହାହିଁ ଈଶ୍ୱରୀୟ ନିୟମ ଓ ଏହା ଅଲଂଘ୍ୟ ବୋଲି ଖ୍ରୀଷ୍ଟଧର୍ମ ଓ ଇସଲାମ ଧର୍ମରେ ରହିଛି ।

ହିନ୍ଦୁଧର୍ମ, ଜୈନ ଧର୍ମ, ବୌଦ୍ଧ ଧର୍ମ ଇତ୍ୟାଦି ଭାରତ ଭୂଖଣ୍ଡର ଧର୍ମମାନଙ୍କର ବିଶ୍ୱାସ ଅନୁଯାୟୀ ପୁନର୍ଜନ୍ମ ରହିଛି । ଜନ୍ମପରେ ମୃତ୍ୟୁ, ମୃତ୍ୟୁପରେ ଜନ୍ମ ଏହା ଚକଭଳି ଘୂରୁଥାଏ । ମୋକ୍ଷ ବା ନିର୍ବାଣ ନପାଇବା ପର୍ଯ୍ୟନ୍ତ ଜନ୍ମ ମୃତ୍ୟୁ ଚକ୍ରରେ ଆତ୍ମା ଘୂରି ବୁଲୁଥାଏ ।

ପାଶ୍ଚାତ୍ୟ ଦେଶମାନଙ୍କରେ ପୁନର୍ଜନ୍ମର ଭାବନା ନଥିବା ହେତୁ ବିଶ୍ୱାସ ଥିଲା ଯେ ମୃତ ଲୋକମାନଙ୍କର ଆତ୍ମା ଏକ ଭିନ୍ନ ଜଗତରେ ଅବସ୍ଥାନ କରେ । ସେହି ଆତ୍ମାମାନଙ୍କୁ ଚାହିଁଲେ ଆବାହନ କରାଯାଇ ପାରିବ । ଏଥିପାଇଁ ବିଂଶ ଶତାବ୍ଦୀ ମଧ୍ୟ ଭାଗ ପର୍ଯ୍ୟନ୍ତ ଆତ୍ମାମାନଙ୍କୁ କିପରି ଆବାହନ କରାଯାଇପାରିବ ସେ ପାଇଁ ଅନେକ ସଂସ୍ଥା ସୃଷ୍ଟି ହୋଇଥିଲା । କୌଣସି ବ୍ୟକ୍ତି ଚାହିଁଲେ ନିଜ ପରିବାରର କୌଣସି ମୃତ ବ୍ୟକ୍ତିଙ୍କ ସହ ଯୋଗାଯୋଗ କରିବେ ବୋଲି କେତେକ ସଂସ୍ଥା ବିଭିନ୍ନ ମିଡିଅମମାନଙ୍କୁ ସତନ୍ତ୍ର ତାଲିମ ଦେଇ ନିଯୁକ୍ତ କରୁଥିଲେ । ମିଡିଅମ ବା ମାଧ୍ୟମମାନଙ୍କ ଜରିଆରେ

ଜଣେ କୌଣସି ମୃତ ବ୍ୟକ୍ତିଙ୍କ ସହ କିଛି ସମୟ ପାଇଁ କଥା ହେଉଥିଲେ । ଆଗ୍ରହୀ ବ୍ୟକ୍ତିଙ୍କୁ ଏକ ସ୍ୱତନ୍ତ୍ର କୋଠରୀ ଭିତରକୁ ନିଆଯାଉଥିଲା । ସ୍ୱତନ୍ତ୍ରଭାବେ ନିର୍ମିତ ଏକ କୋଠରୀରେ ଏକ ସମ୍ମୋହିତ ଅବସ୍ଥାରେ ସେ ଚାହୁଁଥିବା ମୃତ ବ୍ୟକ୍ତିଙ୍କୁ ଦେଖି ପାରୁଥିଲେ ବା ତାଙ୍କଠାରୁ ନିର୍ଦ୍ଦେଶ ପାଉଥିଲେ । ଜଣେ ବ୍ୟକ୍ତି ଯାହା ପ୍ରଶ୍ନ ପଚାରୁଥିଲା ତାର ଉତ୍ତର ଆତ୍ମା ମିଡିଅମ ମାଧ୍ୟମରେ ଦେଉଥିଲା । ଏପରିକି ସେ ଚାହିଁଲେ ଆତ୍ମାକୁ କେତୋଟି ମୁହୂର୍ତ୍ତ ପାଇଁ ଛୁଇଁ ପାରୁଥିଲା । ମୃତ ଲୋକର ଆତ୍ମାକୁ ଦେଖିବା, କେତୋଟି ମୁହୂର୍ତ୍ତ ପାଇଁ ସଂଳାପ କରିବା ବା ତାଙ୍କ ପାଖରୁ କିଛି ନର୍ଦ୍ଦେଶ ଲାଭ କରିବାକୁ ସିଏନସ (seance) କୁହାଯାଉଥିଲା । ଏସବୁ ଥିଲା ପରାମନୋବିଜ୍ଞାନ ଜନିତ ଆପାରିସନ (apparition) ଯାହାଦ୍ୱାରା ମୃତ ବ୍ୟକ୍ତିର ଆତ୍ମା ସହ ସଂଯୋଗ ସ୍ଥାପନ କରାଯାଉଥିଲା ।

ମନୋବିଜ୍ଞାନର ବିକାଶ ସହ ଏସବୁ କିପରି ଠକାମି ବା ଫ୍ରଡ ଥିଲା ତାହା କାଳକ୍ରମେ ସ୍ପଷ୍ଟ ହେବାକୁ ଲାଗିଲା । ମଣିଷ ମନର ଅବଚେତନ ମନରେ ଅନେକ କଥା ଗୋପନ ହୋଇ ରହିଥାଏ । ଆମର ସଚେତନ ମନ ଯେତିକି ଜାଣେ ତାଠାରୁ ବହୁ ଅଧିକ ଆବେଗ,ଭାବନା ଓ ବିଶ୍ୱାସ ଆମର ଅବଚେତନ ମନରେ ଲୁକାୟିତ ହୋଇ ରହିଥାଏ । ସାମାଜିକ ପରିବେଶରେ ରହିଥିବା ବିଶ୍ୱାସ ଗୁଡିକୁ ଆମର ମନରେ ଗଭୀର ପ୍ରଭାବ ପକାଇଥାଏ । ସେହିପରି ପରିବାରରୁ ବା ଅନ୍ୟ ସ୍ତରରୁ ଆମେ ଯେଉଁ ସବୁ କାହାଣୀ, ଗଳ୍ପ ଇତ୍ୟାଦି ଶୁଣିଥାଉ ସେସବୁ ଆମର ଅବଚେତନ ସ୍ତରରେ ରହିଥାଏ । ମିଡିଅମମାନେ ଏକ ସ୍ୱତନ୍ତ୍ର କୋଠରୀକୁ ବ୍ୟକ୍ତିକୁ ନେଉଥିଲେ ଓ ବ୍ୟକ୍ତିର ବିଶ୍ୱାସ ଯୋଗୁଁ ତାକୁ ସହଜରେ ଏକ ସମ୍ମୋହିତ ମାନସିକ ସ୍ଥିତି ଭିତରକୁ ନେଇ ପାରୁଥିଲେ । ଫଳରେ ବ୍ୟକ୍ତି ସମ୍ମୋହିତ ଅବସ୍ଥାରେ ଯାହା ଦେଖୁଥିଲା ବା ସ୍ପର୍ଶ କରୁଥିଲା ତାହାକୁ ଆତ୍ମାର ଆବିର୍ଭାବ ବୋଲି ମନେ କରୁଥିଲା । ସେହିପରି ନିଜ ଅବଚେତନ ମନରୁ ଅନେକ ଉତ୍ତର ସେ ମନ ଭିତରକୁ ଆଣି ପାରୁଥିଲା । ତେବେ ଏସବୁ କିପରି କରାଯାଉଛି ତାହାର ଏକ ବୈଜ୍ଞାନିକ ବିଶ୍ଳେଷଣ ମନୋବିଜ୍ଞାନ କରିପାରିଲା । ପ୍ରକୃତରେ କୌଣସି ଆତ୍ମାର ଆବିର୍ଭାବ ହେଉନଥିଲା । ଏହା ସବୁ ଏକ ସ୍ୱତନ୍ତ୍ର ପରିବେଶରେ ମିଡିଅମମାନେ ମାନସିକ ସ୍ତରରେ ସୃଷ୍ଟି କରୁଥିଲେ ଫଳରେ ବ୍ୟକ୍ତି ବ୍ୟକ୍ତିନିଷ୍ଠ ଭ୍ରମାତ୍ମକ ଅନୁଭୂତି ଲାଭ କରୁଥିଲା । ଏସବୁକୁ

ମନୋବିଜ୍ଞାନ ବିଶ୍ଳେଷଣ କରିବାଦ୍ୱାରା seance, apparition ଓ ମିଡିୟମ ଜନିତ ମୃତଲୋକ ସହ ସମ୍ବନ୍ଧ ଆସ୍ତେ ଆସ୍ତେ ୟୁରୋପରୁ ବନ୍ଦ ହେଲା । ମାନସିକ ବିକାରଗ୍ରସ୍ତ ବ୍ୟକ୍ତି କୌଣସି ମିଡିୟମ ପାଖକୁ ନଯାଇ ସାଇକିଆଟ୍ରିଷ୍ଟ ବା ମାନସିକ ରୋଗ ଚିକିତ୍ସକଙ୍କ ପାଖକୁ ଯାଉଛନ୍ତି । ଆତ୍ମାକୁ ଡାକିବା, ଆତ୍ମାକୁ ସ୍ପର୍ଶ କରିବା, ଦେଖିବା ବା ଆତ୍ମାଠାରୁ ପ୍ରଶ୍ନର ଉତ୍ତର ପାଇବା ଯେ ବସ୍ତୁନିଷ୍ଠ ଭାବେ ସତ୍ୟ ନୁହେଁ ଓ ଏସବୁ ନିୟନ୍ତ୍ରିତ ପରିବେଶ ଭିତରେ ବ୍ୟକ୍ତିର ଭ୍ରମାତ୍ମକ ଅନୁଭୂତି ଏହା ମନୋବିଜ୍ଞାନଦ୍ୱାରା ପ୍ରମାଣ କରାଗଲା । ଫଳତଃ ଏସବୁ ଏବେ ୟୁରୋପୀୟ ସମାଜରେ ପ୍ରାୟ ବନ୍ଦ ହୋଇଗଲାଣି ।

ଭାରତ ଭୂଖଣ୍ଡରେ ସୃଷ୍ଟି ହୋଇଥିବା ବିଭିନ୍ନ ଧର୍ମମାନଙ୍କ ଭିତରେ ଓ ବିଶେଷତଃ ଭାରତୀୟ ଦର୍ଶନର ବିଭିନ୍ନ ସିଷ୍ଟମମାନଙ୍କରେ ପୁନର୍ଜନ୍ମର ଭାବନା ରହିଛି । କେବଳ ଲୋକାୟିତ ଦର୍ଶନକୁ ବାଦ୍ ଦେଲେ ଅନ୍ୟ ସବୁ ଦାର୍ଶନିକ ପରମ୍ପରାରେ ଓ ହିନ୍ଦୁଧର୍ମରେ ଆତ୍ମାକୁ ଅବିନାଶୀ ବୋଲି ନିଆଯାଇ ପୁନର୍ଜନ୍ମର ପରିକଳ୍ପନା କରାଯାଇଛି । ଏହା ଅଧିକାଂଶ ହିନ୍ଦୁ ଶାସ୍ତ୍ର ମାନଙ୍କରେ ବେଶ୍ ଭାବୋଦ୍ଦୀପକ ଭାବରେ କୁହାଯାଇଛି ଯେ ଆତ୍ମା ଜନ୍ମ-ମୃତ୍ୟୁର ଚକ୍ରରେ ଘୂରି ବୁଲେ । ଆତ୍ମା ଏକ ସ୍ୱତନ୍ତ୍ର ସତ୍ତା, ମୃତ୍ୟୁରେ ଏହା ଗୋଟିଏ ଶରୀରକୁ ଛାଡି ଅନ୍ୟ ଶରୀରକୁ ଯାଏ । ଏହି ଧାରା ଆତ୍ମା ପାଖରେ ଅବ୍ୟାହତ ରହେ, ଯେ ପର୍ଯ୍ୟନ୍ତ ଆତ୍ମା ମୋକ୍ଷ ପ୍ରାପ୍ତି ନହୋଇଛି । ମୋକ୍ଷର ସ୍ୱରୂପ କଣ- ଯେହେତୁ ଏକ ବୈଜ୍ଞାନିକ ଅନୁଶୀଳନର ପରିସରଭୁକ୍ତ ନୁହେଁ, ଏହା ନେଇ ବିଭିନ୍ନ ଦାର୍ଶନିକ ପରମ୍ପରାରେ ନାନା କଳ୍ପନାର ସୂତ୍ରପାତ ହୋଇଛି । ସେସବୁର ଏକ ତୁଳନାତ୍ମକ ଅଧ୍ୟୟନରୁ ସେସବୁ କିପରି ପରସ୍ପର ଅସଂଯୋଜିତ ଓ ଏପରିକି ପରସ୍ପର ବିରୋଧୀ ତାହା ଜଣାପଡେ । ତେବେ ସେହି ପ୍ରସଙ୍ଗଟିକୁ ନଯାଇ ଆମେ ପରାମନୋବିଜ୍ଞାନ ପୃଷ୍ଠଭୂମିରେ ପୁନର୍ଜନ୍ମର ଭାବନାଟିକୁ ବିଶ୍ଳେଷଣ କରିବା ।

କେତେକ ସମୟରେ ଶୁଣାଯାଏ ଯେ କେହି କେହି ବାଳୁତ ଅବସ୍ଥାରେ ସେମାନଙ୍କର ପୂର୍ବଜନ୍ମର କାହାଣୀକୁ ସ୍ମରଣ କରିପାରୁଛନ୍ତି । ଏହା ମଧ୍ୟ ବିଶ୍ୱାସ କରାଯାଏ ଯେ କେହି ଯୋଗୀ ବା ସିଦ୍ଧ ବ୍ୟକ୍ତି ସେମାନଙ୍କର ଆଧ୍ୟାତ୍ମିକ ସାଧନା ବଳରେ ତାଙ୍କର ପୂର୍ବ ଜନ୍ମମାନଙ୍କର ଇତିହାସକୁ ନିଜର ଅତୀନ୍ଦ୍ରିୟ ପ୍ରତ୍ୟକ୍ଷଦ୍ୱାରା ଜାଣିପାରନ୍ତି ବା ସେସବୁକୁ ସ୍ମୃତି ଭିତରକୁ ସହଜରେ ଆଣିପାରନ୍ତି । ପତଞ୍ଜଳିଙ୍କ ଯୋଗ

ସିଷ୍ଟମରେ ଯାହାକୁ ସେ ସଙ୍କଳିତ କରିଥିଲେ, ଅନେକ ଅଲୌକିକ ଆଧ୍ୟାତ୍ମିକ ବିଭୂତିର ବର୍ଣ୍ଣନା ରହିଛି ଯାହାର ସୂଚନା ପୂର୍ବରୁ ଦିଆଯାଇଛି ।

ଆତ୍ମା ଓ ପୁନର୍ଜନ୍ମର ଭାବନା ଭାରତୀୟ ସମାଜରେ ଅତି ବ୍ୟାପକ ଭାବେ ରହିବା ଦେଖାଯାଏ । ପୁନର୍ଜନ୍ମ ଯେ ଏକ ବାସ୍ତବ ଘଟଣା ଏହା ବି କେତେକ ବିଶ୍ୱାସ କରନ୍ତି । ଏକଦା ଏଚ.ଏନ.ବାନାର୍ଜୀ ପୁନର୍ଜନ୍ମ ଜନିତ ଘଟଣାକୁ ବିଜ୍ଞାନ ସମ୍ମତ ପରୀକ୍ଷିତ ବ୍ୟାପାର ବୋଲି ବିଭିନ୍ନ ଲେଖା ମାନଙ୍କରେ ପ୍ରକାଶ କରି ଅନେକଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଏଚ.ଏନ.ବାନାର୍ଜୀ ଗଙ୍ଗାନଗରସ୍ଥିତ ଏକ କଲେଜରେ ଦର୍ଶନ ପଢାଉଥିଲେ । ବାନାର୍ଜୀ ପରାମନୋବିଜ୍ଞାନ ପ୍ରତି ଆକର୍ଷିତ ହେଲେ ଓ ଏଥିପାଇଁ କେତେକ ବ୍ୟକ୍ତିଙ୍କର ସହଯୋଗ ନେଲେ । ଡକ୍ଟର ସମ୍ପୂର୍ଣ୍ଣାନନ୍ଦ ଯେ ସେତେବେଳେ ରାଜସ୍ଥାନ ରାଜ୍ୟପାଳ ଥିଲେ ବାନାର୍ଜୀ ତାଙ୍କ ସହିତ ପରିଚିତ ଥିଲେ ଓ ପରାମନୋବିଜ୍ଞାନ ଉପରେ ନାନା ଗବେଷଣା ଓ ଅଧ୍ୟୟନ କରୁଥିବା ତାଙ୍କୁ ଜଣାଇଥିଲେ । ସମ୍ପୂର୍ଣ୍ଣାନନ୍ଦ ରାଜସ୍ଥାନ ବିଶ୍ୱବିଦ୍ୟାଳୟର କୁଳପତି ଭାବେ ବାନାର୍ଜୀଙ୍କୁ ରାଜସ୍ଥାନ ବିଶ୍ୱବିଦ୍ୟାଳୟରେ ପରାମନୋବିଜ୍ଞାନ ଜନିତ ଗବେଷଣା ପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ କହିଲେ । ଫଳରେ ବାନାର୍ଜୀ ରାଜସ୍ଥାନ ବିଶ୍ୱବିଦ୍ୟାଳୟ ଯାଇ ସେଠାରେ ପରାମନୋବିଜ୍ଞାନ ଗବେଷଣା ବିଭାଗ ସ୍ଥାପନକରି ସେଠାରେ ଗବେଷଣାରେ ଲିପ୍ତ ହେଲେ । ମସ୍ତିଷ୍କରେ ସ୍ମୃତି ବା ମେମୋରି କିପରି ରହୁଛି ଓ ମୃତ୍ୟୁପରେ ମଧ୍ୟ ସ୍ମୃତି ସବୁ କିପରି ଆତ୍ମାରେ ରହେ ଏହା ଉପରେ ସେ ଗମ୍ଭୀର ଭାବେ ଅନୁଧ୍ୟାନ କରୁଥିବା ପ୍ରକାଶ କଲେ । ଏହା ସହିତ ସେ ଦାବି କଲେ ଯେ ସେ ବହୁ ଘଟଣାକୁ ଅନୁଧ୍ୟାନ କରି ପୁନର୍ଜନ୍ମ ଯେ ସତ୍ୟ ଏହା ବିଜ୍ଞାନ ସମ୍ମତ ଭାବରେ ପରୀକ୍ଷା କରି ଜାଣିପାରୁଛନ୍ତି । ଏହିପରି ସାତ ସହ ଘଟଣା ସେ ଜାଣନ୍ତି ଓ ସେଥିରୁ ତିରିଶଟି ଘଟଣା ପରୀକ୍ଷାକରି ଏହା ସତ୍ୟ ବୋଲି ଜାଣି ପାରିଛନ୍ତି ବୋଲି କହିଲେ । ସେ ବିଭିନ୍ନ ପତ୍ର ପତ୍ରିକା ମାଧ୍ୟମରେ ନିଜର ଅନୁସନ୍ଧାନକୁ ପ୍ରକାଶ କଲାପରେ ଏସବୁ ବ୍ୟାପାରକୁ ନେଇ ବିଭିନ୍ନ ବିତର୍କର ସୂତ୍ରପାତ ହେଲା । ଯେଉଁମାନଙ୍କର ପୂର୍ବଜନ୍ମର ଘଟଣା ସ୍ମୃତିରେ ଥିବା କୁହାଯାଇଛି ସେମାନଙ୍କୁ କେତେକ ସାଇକାଟ୍ରିକ ଚିକିତ୍ସାଦ୍ୱାରା ସେମାନଙ୍କର ମାନସିକ ଅସୁସ୍ଥତା ଥିବା ଦର୍ଶାଇ ହେବ ବୋଲି କେତେକ ସାଇକାଟ୍ରିଷ୍ଟ ମତ ପୋଷଣ କଲେ । ଏହିପରି ବାଦ ବିବାଦ ଭିତରେ ବିଶ୍ୱବିଦ୍ୟାଳୟ ଅନୁଦାନ

ଆୟୋଗ ବା ୟୁଜିସି (University Grants Commission) ବାନାର୍ଜୀଙ୍କର ପ୍ରକାଶିତ ବକ୍ତବ୍ୟର ସତ୍ୟାସତ୍ୟ ଅନୁସନ୍ଧାନ କରିବା ପାଇଁ ଏକ କମିଟି ଗଠନ କଲା । ସେହି କମିଟିରେ ଭେଙ୍କେଟେଶ୍ୱର ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନର ଭୂତପୂର୍ବ ପ୍ରଫେସର ଏସ.ପାର୍ଥସାରଥୀ, ଉତ୍କଳ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗର ପ୍ରଫେସର ରାଧାନାଥ ରଥ ଓ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର ଏସ.ସି. ଗାଙ୍ଗୁଲି ରହିଲେ । ଏହି କମିଟି ଯାଇ ବାନାର୍ଜୀଙ୍କର ପୁନର୍ଜନ୍ମ ଗବେଷଣା ବିଷୟରେ ଅନୁସନ୍ଧାନ କଲେ । କମିଟିର ମତ ଥିଲା ଯେ ପୁନର୍ଜନ୍ମର ଘଟଣା ଯାହା ବାନାର୍ଜୀଙ୍କର ଲେଖାରେ ପ୍ରକାଶିତ ହୋଇଛି ତାହା ସତ୍ୟ ହୋଇଥିଲେ ମନୋବିଜ୍ଞାନ କ୍ଷେତ୍ରରେ ଏହା ନୂତନ ଦିଗନ୍ତ ଉନ୍ମୋଚିତ କରିବ ଓ ବାନାର୍ଜୀଙ୍କର ଏହି ପରୀକ୍ଷା ଆନ୍ତର୍ଜାତିକ ସ୍ତରରେ ଜ୍ଞାନର ବିକାଶ କ୍ଷେତ୍ରରେ ମାଇଲଖୁଣ୍ଟ ହେବ । କିନ୍ତୁ ବାନାର୍ଜୀ ମହାଶୟ କୌଣସି ଘଟଣାର କୌଣସି ପରୀକ୍ଷା କରିଥିବା ନେଇ କିଛି ତଥ୍ୟ ଦେଇପାରିଲେ ନାହିଁ । କେବଳ ଶୁଣା କଥା, ଖବର କାଗଜରେ କେଉଁଠି କିଛି ବାହାରିଥିବା ଘଟଣା ଓ ଲୋକପ୍ରିୟତା ପାଇଁ ମନଗଢା କାହାଣୀମାନ ସୃଷ୍ଟି କରିଥିବା ଅନୁସନ୍ଧାନରୁ ଜଣାପଡିଲା । କମିଟି ବାନାର୍ଜୀଙ୍କୁ ସମସ୍ତ ସୁଯୋଗ ଦେଲେ ତାଙ୍କର ଗବେଷଣା ଓ ଅନୁସନ୍ଧାନ ବିଷୟରେ ଯାହା ତଥ୍ୟ ସେ ସଂଗ୍ରହ କରିଛନ୍ତି ତାହା ଜଣାଇବାକୁ । କିନ୍ତୁ ବାନାର୍ଜୀ ଯେ କେବଳ କାହାଣୀମାନ ସଂଗ୍ରହକରି କୌଣସିଟିର ସତ୍ୟାସତ୍ୟର ଅନୁସନ୍ଧାନ ନକରି ଗପ ଲେଖିବା ଭଳି ଏସବୁ ଲେଖିଛନ୍ତି ତାହା ଜଣାପଡିଲା । କମିଟିର ସଭ୍ୟମାନେ ବାନାର୍ଜୀଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ ମଧ୍ୟ ତାଙ୍କଠାରୁ କୌଣସି ଘଟଣାର ସତ୍ୟାସତ୍ୟର ପ୍ରମାଣ ନପାଇ ତାଙ୍କର ରିପୋର୍ଟ ୟୁଜିସିକୁ ପ୍ରଦାନ କଲେ । ଏହା ପରେ ପରେ ବାନାର୍ଜୀଙ୍କ ବିଷୟରେ ବିଶ୍ୱବିଦ୍ୟାଳୟ ଅନୁସନ୍ଧାନରୁ ଜଣା ପଡିଲା ଯେ ସେ ଆମେରିକାରୁ ଡକ୍ଟରେଟ୍ ପାଇଥିବା ନେଇ ଯାହା ବିଶ୍ୱବିଦ୍ୟାଳୟକୁ ଜଣାଇଥିଲେ ତାହା ମଧ୍ୟ ମିଛ ଥିଲା । ରାଜସ୍ଥାନ ବିଶ୍ୱବିଦ୍ୟାଳୟର ପ୍ରଫେସର ଓ ପରାମନୋବିଜ୍ଞାନର ନିର୍ଦ୍ଦେଶକ ବୋଲି ନିଜର ପରିଚୟ ଦେଇ ସେ ବିଭିନ୍ନ ସ୍ଥାନରୁ ସାହାଯ୍ୟ ପାଇବାକୁ ପ୍ରୟାସ କରୁଥିଲେ । ଏସବୁ ଘଟଣା ଜଣାପଡିବା ପରେ ରାଜସ୍ଥାନ ବିଶ୍ୱବିଦ୍ୟାଳୟରୁ ବାନାର୍ଜୀ ମହାଶୟ ନିଲମ୍ବିତ ହେଲେ ଓ ବିଶ୍ୱବିଦ୍ୟାଳୟ ଏହି ବିଭାଗ ବନ୍ଦ କଲେ । ଏହା ବିଂଶ ଶତାବ୍ଦୀର ସତୁରୀ ଦଶକର ଘଟଣା ଥିଲା ।

ଦର୍ଶନଶାସ୍ତ୍ର ପରିସରରେ ଆତ୍ମା ପ୍ରତ୍ୟୟଟି ଆଲୋଚିତ ହୋଇଥାଏ । ପାଶ୍ଚାତ୍ୟ ଦର୍ଶନରେ ହେଉ ବା ଭାରତୀୟ ଦର୍ଶନରେ ହେଉ ଆତ୍ମା ଭାବନା ବହୁ ଅତୀତରୁ ଚିନ୍ତା ସ୍ତରକୁ ଆସିଛି । ନୃତତ୍ତ୍ୱବିତମାନେ ଏହି ଭାବନା ସଭ୍ୟତାର ଆରମ୍ଭ କାଳରୁ ନାନା ମନସ୍ତାତ୍ତ୍ୱିକ କାରଣରୁ କିପରି ସୃଷ୍ଟି ହୋଇଥିଲା ତାହାର ଉଲ୍ଲେଖ କରିଛନ୍ତି । ପାଶ୍ଚାତ୍ୟ ଦର୍ଶନ ଇତିହାସରେ ପିଥାଗୋରାସ (ଖ୍ରୀ.ପୂ.୫୮୦-୫୦୦) ପ୍ରଥମେ ଆତ୍ମାର ଅମରତ୍ୱ ଓ ଏହା ଏକ ଶରୀରରୁ ଅନ୍ୟ ଶରୀରକୁ ଯାଇଥାଏ ବୋଲି କଳ୍ପନା କରିଥିଲେ । ତେବେ ଦାର୍ଶନିକ ପ୍ଲେଟୋ (ଖ୍ରୀ.ପୂ.୪୨୮-୩୪୮) ଏକ ତାତ୍ତ୍ୱିକ ସିଦ୍ଧାନ୍ତର ଅବତାରଣା ଭିତରେ ଆତ୍ମାର ସ୍ଥିତି ଓ ସ୍ୱରୂପ ନେଇ କେତେକ ଦାର୍ଶନିକ ଯୁକ୍ତିର ଅବତାରଣା କରିଥିଲେ । ପ୍ଲେଟୋଙ୍କ ଦାର୍ଶନିକ ଯୁକ୍ତି ପରବର୍ତ୍ତୀ ସମୟରେ ଖ୍ରୀଷ୍ଟିୟାନ ଧର୍ମରେ ଆତ୍ମାର ସ୍ୱରୂପ ନେଇ ପଥ ଦେଖାଇଥିବା ଅନୁମାନ କରାଯାଇଥାଏ । ଯଦିବା ପ୍ଲେଟୋଙ୍କ ମତ ଓ ଖ୍ରୀଷ୍ଟଧର୍ମୀୟ ମତ ଭିତରେ ଆତ୍ମାର ଅବସ୍ଥିତି ନେଇ ମୌଳିକ ପାର୍ଥକ୍ୟ ରହିଛି, ତଥାପି ଆତ୍ମାର ସ୍ୱରୂପ ନେଇ ପ୍ଲେଟୋଙ୍କ ମତ ସହ ଖ୍ରୀଷ୍ଟଧର୍ମ ମତର ସାମଞ୍ଜସ୍ୟ ରହିଛି । ଗୋଟିଏ ବିଚାର ଧାର୍ମିକ ଭାବନା ଭିତରେ ଏକ ମୁଖ୍ୟ ସ୍ଥାନ ନେବା ପରେ ତାହାର ଯୁକ୍ତିଶୀଳ ଆଧାର ପାଇଁ ଦର୍ଶନରେ ପ୍ରୟାସ ହୋଇଥାଏ । ଦର୍ଶନ ଏହି ପରିପ୍ରେକ୍ଷୀରେ ଗୋଟିଏ ଯୁଗର ମୌଳିକ ଭାବନା ସକଳକୁ ଯୁକ୍ତିଶୀଳ ଆଧାର ଦେବାକୁ ପ୍ରୟାସ କରିବା ଜଣାଯାଏ । ମଧ୍ୟଯୁଗୀୟ ପରମ୍ପରାରେ ଧାର୍ମିକ ଭାବନା ସକଳକୁ ଯୁକ୍ତିଦ୍ୱାରା ପ୍ରତିପାଦନ କରିବାର ପ୍ରୟାସ ହୋଇଥିଲା । ପାଶ୍ଚାତ୍ୟ ଦର୍ଶନରେ ଆତ୍ମା ବିଷୟରେ ଏକ ତାତ୍ତ୍ୱିକ ସିଦ୍ଧାନ୍ତ ଆଧୁନିକ ଯୁଗର ବିଶିଷ୍ଟ ଦାର୍ଶନିକ ରେନ ଦେକାର୍ତ (୧୫୯୬-୧୬୫୦) ଦେଇଥିଲେ ।

ତାଙ୍କ ମତ ଥିଲା ଯେ ପ୍ରତ୍ୟେକ ବ୍ୟକ୍ତି ଦୁଇଟି ପୃଥକ ସତ୍ତାର ସମାହାର । ମଣିଷ ହେଉଛି ଏକ ଶରୀର ଓ ଏକ ମନର (ଦେକାର୍ତ ମନ ଓ ଆତ୍ମାକୁ ସମାନ ଭାବେ ପ୍ରୟୋଗ କରୁଥିଲେ) ସମନ୍ୱୟ । ଦେକାର୍ତଙ୍କ ମତରେ ଶରୀର ହେଉଛି ଜଡ ଓ ଅଚେତନ, କିନ୍ତୁ ମନ ହେଉଛି ଚେତନ । ଯାହା ଜଡ, ତାହାର ମୌଳିକ ଲକ୍ଷଣ ହେଉଛି ବିସ୍ତୃତି । ମନର ମୌଳିକ ସ୍ୱରୂପ ହେଉଛି ଚେତନା । ଯାହା ଚେତନଯୁକ୍ତ ତାହାର ବିସ୍ତୃତି ନାହିଁ, ଯାହାର ବିସ୍ତୃତି ଅଛି ତାହା ଅଚେତନ । ବସ୍ତୁତଃ ବ୍ୟକ୍ତି ପାଖରେ ଶରୀର ଓ ମନ ଦୁଇଟି ପୃଥକ୍ ସତ୍ତାର ସମନ୍ୱୟ ଦେଖିବାକୁ ମିଳେ ।

ଭାରତୀୟ ଦର୍ଶନ ପରମ୍ପରାରେ ଲୋକାୟତ ଦର୍ଶନକୁ ଛାଡିଦେଲେ ସବୁ ସିଷ୍ଟମରେ ବିଶ୍ୱାସ ରହିଛି ଯେ ମଣିଷର (ଇତର ପ୍ରାଣୀଙ୍କର ମଧ୍ୟ) ଆତ୍ମା ରହିଛି ଓ ଏହି ଆତ୍ମା ମୃତ୍ୟୁପରେ ରହିଥାଏ । ତେବେ ଆତ୍ମାର ସ୍ୱରୂପ କଣ ? ଯେହେତୁ ଆତ୍ମା ଏକ ପ୍ରତ୍ୟକ୍ଷ ଜନିତ ବା ଅନୁଭୂତି- ଆଧାରିତ ଭାବନା ନୁହେଁ ଓ ଏହା ମୁଖ୍ୟତଃ ଏକ ତାତ୍ତ୍ୱିକ କଳ୍ପନା, ସେହେତୁ ଏହାର ସ୍ୱରୂପ ନେଇ ଦର୍ଶନରେ ନାନା ଭାବନା ବ୍ୟକ୍ତ ହୋଇଛି । ବୌଦ୍ଧ ଦର୍ଶନାନୁଯାୟୀ ଆତ୍ମା ଏକ ମୌଳିକ ସତ୍ତା ନୁହେଁ, ଏହା ଚେତନାର ଏକ ଅବାରିତ ଧାରା, ଏକ ଗତିଶୀଳ ପ୍ରବାହ । ଏହା ମାନସିକ ପ୍ରବୃତ୍ତିମାନଙ୍କର ଏକ ସମଷ୍ଟି । ନଦୀର ଜଳଧାରା ବା ଏକ ପ୍ରଜ୍ୱଳିତ ଦୀପର ଶିଖା ଭଳି ଏହା ଅବିରତ ପରିବର୍ତ୍ତନଶୀଳ । ନ୍ୟାୟ ଦର୍ଶନ ଅନୁଯାୟୀ ପ୍ରତ୍ୟେକ ପ୍ରାଣୀର ଆତ୍ମା ରହିଛି । ତେବେ ଆତ୍ମା ସ୍ୱରୂପରେ ଚେତନଶୀଳ ନୁହେଁ ଏହା ଜଡ, ଅର୍ଥାତ୍ ଚେତନଶୀଳତା ଆତ୍ମାର ମୌଳିକ ଲକ୍ଷଣ ନୁହେଁ । ଆତ୍ମା ସହ ମନର ସଂଯୋଗ ଓ ମନ ସହ ଇନ୍ଦ୍ରିୟର ସଂଯୋଗରୁ ଚେତନଶୀଳ ଅନୁଭବ ଆସିଥାଏ । ମୃତ୍ୟୁ ପରେ ଆତ୍ମା ରହେ, କିନ୍ତୁ ମନର ଅଭାବ ଯୋଗୁଁ ଆତ୍ମା ଜଡ ଅବସ୍ଥାରେ ରହେ । ଦ୍ୱୈତ ବେଦାନ୍ତ ଓ ବିଶିଷ୍ଟ-ଦ୍ୱୈତ ବେଦାନ୍ତରେ ଆତ୍ମାର ମୌଳିକ ତାତ୍ପର୍ଯ୍ୟ ହେଉଛି ଚେତନା । ପ୍ରତ୍ୟେକ ଆତ୍ମା ଅଣୁ ସଦୃଶ ଓ ସସୀମ, ଓ ଚେତନା ଏହାର ମୌଳିକ ସ୍ୱଭାବ । ଅଦ୍ୱୈତ ବେଦାନ୍ତ ମତରେ ଆତ୍ମା ହେଉଛି ଅସୀମ ଓ ବିଶୁଦ୍ଧ ଚୈତନ୍ୟ । ଆତ୍ମା ସ୍ୱରୂପରେ ବ୍ରହ୍ମ । ଦ୍ୱୈତବେଦାନ୍ତରେ ବହୁ ଆତ୍ମାବାଦକୁ ସ୍ୱୀକାର କରାଯିବା ବେଳେ ଅଦ୍ୱୈତ ବେଦାନ୍ତରେ ବହୁ ଆତ୍ମାବାଦକୁ ଅସ୍ୱୀକାର କରାଯାଏ । ଆତ୍ମାର ସ୍ୱରୂପ ବିଷୟକ ଭାବନାକୁ ତୁଳନାତ୍ମକ ଭାବେ ଅନୁଶୀଳନ କଲେ ଏଗୁଡିକ କିପରି ପରସ୍ପର ବିରୋଧୀ ତାହା ସ୍ପଷ୍ଟ ହୋଇଥାଏ ।

ପାଶ୍ଚାତ୍ୟ ଦର୍ଶନ ହେଉ ବା ଭାରତୀୟ ଦର୍ଶନ ହେଉ ଆତ୍ମାର ସ୍ଥିତି ଓ ସ୍ୱରୂପ ନେଇ ନାନା କାଳ୍ପନିକ ମତର ଅବତାରଣା ଦେଖିବାକୁ ମିଳେ । ତେବେ ଯଦିବି ସ୍ୱୀକାର କରାଯାଏ ଯେ ମଣିଷର ଏକ ଆତ୍ମା ରହିଛି ଓ ସେହି ଆତ୍ମା ମୃତ୍ୟୁପରେ ରହିବ, ତେବେ ଏଠାରେ ଗୋଟିଏ ମୌଳିକ ପ୍ରଶ୍ନ ଉଠିବ ଯେ ଆତ୍ମାର ତାଦାତ୍ମ୍ୟ (identity) କିପରି କରାଯିବ ? ଜଣେ ବ୍ୟକ୍ତିକୁ ସେହି ବ୍ୟକ୍ତି ବୋଲି ଗ୍ରହଣ କରିବାର ପ୍ରମୁଖ ଆଧାର ହେଉଛି ତାହାର ଅବିଚ୍ଛିନ୍ନ ଶାରୀରିକ ଅସ୍ତିତ୍ୱ । ଶରୀରରେ ବିଭିନ୍ନ

ପରିବର୍ତ୍ତନ ହେଉଥିଲେ ସୁଦ୍ଧା ଜଣେ ବ୍ୟକ୍ତି ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏକ ଶରୀର ଧାରଣ କରିଥାନ୍ତି ଓ ସେହି ଶାରୀରିକ ସ୍ଥିତି ହିଁ ତାଙ୍କ ପରିଚୟର ପ୍ରମୁଖ କାରଣ ହୋଇଥାଏ । ଶାରୀରିକ ଅବିଚ୍ଛିନ୍ନତା ନଥିଲେ ଜଣେ ବ୍ୟକ୍ତିର ଅସ୍ତିତ୍ୱ ଆତ୍ମା ସ୍ତରରେ କିପରି ରହିବ ତାହା ବୁଝାଇ ହେବନାହିଁ । ଆତ୍ମାର କୌଣସି ଶାରୀରିକ (Physical or bodily) ସ୍ଥିତି ନଥିବାରୁ ଆତ୍ମାର ଅସ୍ତିତ୍ୱ କେଉଁ ଭାବରେ ଓ କେଉଁ ସ୍ଥିତିରେ ରହିବ ତାହାର କୌଣସି ସନ୍ତୋଷଜନକ ଉତ୍ତର ଦେବା ସମ୍ଭବ ନୁହେଁ । ପୁନଶ୍ଚ ଶାରୀରିକ ସ୍ଥିତିର ଅଭାବରେ ଆତ୍ମାର ଚିନ୍ତା, ଅନୁଭବ, ସ୍ମୃତି ଇତ୍ୟାଦି କ୍ରିୟା ରହିବ କି ଓ ଯଦି ରହେ ତାହା କିପରି ରହିବ ? ଶରୀର ଥିବା ହେତୁ ମସ୍ତିଷ୍କ ରହିଛି ଓ ମସ୍ତିଷ୍କ ଦ୍ୱାରା ମାନସିକ କ୍ରିୟା ଉଦ୍ଭବ ହେଉଛି । ଶରୀର ଓ ମସ୍ତିଷ୍କର ଅଭାବରେ ସ୍ମୃତି କିପରି ରହିବ ଓ ତାହାର ମାନଦଣ୍ଡ କଣ ହେବ ଏହା ବୁଝାଇବା ସମ୍ଭବ ହେବ କି ? ଯେଉଁ ଧର୍ମମାନଙ୍କରେ ପୁନର୍ଜନ୍ମର କଳ୍ପନା ନାହିଁ ଓ ପୁନରୁତ୍ଥାନର ଭାବନା ରହିଛି ଅର୍ଥାତ୍ ବିଚାର ଦିବସରେ ଆତ୍ମାମାନଙ୍କର ଈଶ୍ୱରଙ୍କ ପାଖରେ ଉପସ୍ଥିତ ହୋଇ ଫଳ ପାଇବାର ଅଛି ସେମାନେ କେଉଁ ଭାବରେ ମୃତ୍ୟୁ ପରେ ରହନ୍ତି ଓ କେଉଁ ରୂପରେ (ଶରୀର ଅଭାବରେ) ଈଶ୍ୱରଙ୍କ ପାଖରେ ଉପସ୍ଥିତ ହେବେ, ତାହା ବୁଝାଇବା ସମ୍ଭବ ନୁହେଁ । ସେହିପରି ଯେଉଁ ଧର୍ମମାନଙ୍କରେ ପୁନର୍ଜନ୍ମର ଭାବନା ରହିଛି ଗୋଟିଏ ଆତ୍ମା ବ୍ୟକ୍ତିର ମୃତ୍ୟୁରେ କିପରି ଦେହରୁ ନିଷ୍କ୍ରାନ୍ତ ହୁଏ ଓ ଅନ୍ୟଠାରେ ଜନ୍ମ ନେବା ପର୍ଯ୍ୟନ୍ତ କେଉଁ ସ୍ଥିତିରେ ରହେ ତାହା ବି କୌଣସି ମାନଦଣ୍ଡରେ ବୁଝାଇ ହେବ କି ? ଆତ୍ମାର ଶରୀର ବିହୀନ ଅସ୍ତିତ୍ୱ ନେଇ କୌଣସି ଭିତ୍ତି ରହିଛି କି ? ଏହି ପରି ଅନେକ ପ୍ରଶ୍ନର କୌଣସି ଉତ୍ତର ଦିଆଯାଇ ପାରିବ କି ? ଦର୍ଶନ ସ୍ତରରେ ହେଉ ବା ବିଜ୍ଞାନ ସ୍ତରରେ ହେଉ ଏସବୁ ପ୍ରଶ୍ନର କୌଣସି ଉତ୍ତର ଦିଆଯାଇ ପାରୁନାହିଁ । ସୁତରାଂ ଆତ୍ମା ବିଷୟକ ଚିନ୍ତା ବହୁ ଅତୀତରୁ ବିଭିନ୍ନ ସଭ୍ୟତାରେ ନାନା ଭାବରେ ରହିଥିଲେ ବି ଏହି ଭାବନା ଗୁଡିକ କେବଳ ଗୁଡିଏ ବିଶ୍ୱାସ । ସ୍ୱର୍ଗ, ନରକ, ଆତ୍ମାର ଅମରତ୍ୱ, ମୋକ୍ଷ, ନିର୍ବାଣ, ଈଶ୍ୱରୀୟ ବିଚାର ବ୍ୟବସ୍ଥା, ପୁନରୁତ୍ଥାନ, ପୁନର୍ଜନ୍ମ ଇତ୍ୟାଦି ଧାର୍ମିକ କଳ୍ପନା ଓ ଏସବୁ ପଛରେ କୌଣସି ବସ୍ତୁନିଷ୍ଠ ବା ଯୁକ୍ତିଶୀଳ ଆଧାର ନାହିଁ ।

ବିଂଶ ଶତାବ୍ଦୀରେ ଦାର୍ଶନିକ ବିଚାର ପୃଷ୍ଠଭୂମିରେ ଆତ୍ମାକୁ ଏକ ଶରୀର ବିହୀନ ସତ୍ତା ଭାବେ ଗ୍ରହଣ କରିବାଦ୍ୱାରା କିପରି ନାନା ବୌଦ୍ଧିକ ଜଟିଳତା ଉଦ୍ଭବ ହୋଇଛି ତାହାର ନାନା ଆଲୋଚନା ହୋଇଛି । ଆତ୍ମାକୁ ଏକ ସତ୍ତା ଭାବରେ ଗ୍ରହଣ କରିବା ଫଳରେ ମାନସିକ କ୍ରିୟା ସକଳକୁ ରହସ୍ୟମୟ କରାଯିବ ଓ ପରିଣାମତଃ ଅହଂମାତ୍ରବାଦ (solipcism) ପରି ଅବାନ୍ତର ବିଚାରର ଉଦ୍ଭବ ହେବ । ଆତ୍ମାକୁ ଏକ ସତ୍ତା ବୋଲି ବିଚାର କରିବା କିପରି ତର୍କ ଦୃଷ୍ଟିରୁ ମୌଳିକ ତ୍ରୁଟି ଉପରେ ଆଧାରିତ ତାହା ବିଂଶ ଶତାବ୍ଦୀର ଦାର୍ଶନିକ ବିଚାର ସ୍ତରରେ ବହୁ ଆଲୋଚିତ ହୋଇଛି । ବର୍ଗମିଶ୍ରଣ ତର୍କଦୋଷ, ଯନ୍ତ୍ରାରୂଢ଼ ଭୂତ ଇତ୍ୟାଦି ଜଟିଳ ଦାର୍ଶନିକ ସମସ୍ୟା କିପରି ଏହି ଭାବନା ସହିତ ଜଡିତ ତାହାର ବିଶ୍ଳେଷଣ ହୋଇଛି । ଆତ୍ମାକୁ ଏକ ପୃଥକୀୟ ସତ୍ତା ଭାବରେ ବିଚାର ସହ ନାନା ଜଟିଳ ତାର୍କିକ ସମସ୍ୟା ସଂଶ୍ଳିଷ୍ଟ ।

ଭାରତୀୟ ଚିନ୍ତନରେ ରହିଥିବା ପୁନର୍ଜନ୍ମବାଦର ତାତ୍ପର୍ଯ୍ୟ ହେଉଛି ପ୍ରତ୍ୟେକ ବ୍ୟକ୍ତିର ଏକ ସୁଦୀର୍ଘ ଇତିହାସ ରହିଛି । ବର୍ତ୍ତମାନ ଯେ କ ହୋଇଛି ସେ ଅତୀତରେ ଅ,ଆ,ଇ........ ଥିଲା ଓ ଭବିଷ୍ୟତରେ ଖ,ଗ,ଘ ..... ହୋଇ ଚାଲିବ ଯେପର୍ଯ୍ୟନ୍ତ ସେ ମୋକ୍ଷ ପାଇନାହିଁ । ସମାଜରେ ରହିଥିବା ବିଭିନ୍ନ ବୈଷମ୍ୟ ଓ ବ୍ୟକ୍ତିମାନଙ୍କ ସାମର୍ଥ୍ୟରେ ରହିଥିବା ପ୍ରଭେଦକୁ ବୁଝାଇବା ପାଇଁ ବିଭିନ୍ନ ଶାସ୍ତ୍ରମାନଙ୍କରେ ଏହି ଭାବନାକୁ ଗ୍ରହଣ କରାଯାଇଥିଲା । ପୁନର୍ଜନ୍ମବାଦ ସହିତ ଅନେକ ବିଶ୍ୱାସ ସଂଶ୍ଳିଷ୍ଟ ଯାହା କଳ୍ପନା ଉପରେ ଆଧାରିତ । ସାଂପ୍ରତିକ ଯୁଗର ଦାର୍ଶନିକ ବିଶ୍ଳେଷଣରେ ଏହାର ନାନା ଜଟିଳତା ଓ ବିରୋଧାଭାସ ଦର୍ଶନ କ୍ଷେତ୍ରରେ ବିଚାର ସ୍ତରରେ ଜଣାପଡିଛି ।

ବସ୍ତୁତଃ ଆତ୍ମା, ଆତ୍ମାର ଅମରତ୍ୱ, ପୁନର୍ଜନ୍ମ,ଅତୀନ୍ଦ୍ରିୟ ଜଗତ, ଆତ୍ମାର ପୁନରୁତ୍ଥାନ ଇତ୍ୟାଦି ଭାବନା ଦର୍ଶନ ସ୍ତରରେ ବା ବିଜ୍ଞାନ ସ୍ତରରେ ପ୍ରତିପାଦ୍ୟ ସତ୍ୟ ନୁହେଁ । ଏସବୁ ଗୁଡିକ କେବଳ ଗୁଡିଏ ବିଶ୍ୱାସ (gross assumption ବା speculation) ଏସବୁ କୌଣସି ବୈଜ୍ଞାନିକ ସତ୍ୟ ଉପରେ ଆଧାରିତ ନୁହେଁ ।

ସୁତରାଂ ପରାମନୋବିଜ୍ଞାନ ସହ ସଂଶ୍ଳିଷ୍ଟ ଏହି ସବୁ ଭାବନାର କୌଣସି ତର୍କଶୀଳ ବା ବସ୍ତୁନିଷ୍ଠ ଆଧାର ନାହିଁ; ବିଶେଷକରି ମନୋବିଜ୍ଞାନ ଏକ ସୁଦୃଢ ବିଜ୍ଞାନ ଭାବରେ ପ୍ରତିଷ୍ଠିତ ହେବାଦ୍ୱାରା ପରାମନୋବିଜ୍ଞାନର ଭିତ୍ତି ଯେ ଭୁଷୁଡି ପଡିବାରେ ଲାଗିଛି ଏହା କୁହାଯାଇପାରେ । ଏହା ଆରମ୍ଭରୁ ଏପର୍ଯ୍ୟନ୍ତ ବିବାଦୀୟ ହୋଇ ରହିଛି । ଯେହେତୁ ଏହାର କୌଣସି ପରୀକ୍ଷିତ ଆଧାର ନାହିଁ, ଏସବୁ ଭାବନା ସକଳ କେବଳ ଧାର୍ମିକ ବିଶ୍ୱାସ କହିଲେ ଅତ୍ୟୁକ୍ତି ହେବ ନାହିଁ ।



# କେତେକ ସ୍ମରଣୀୟ ଅନୁଭୂତି

ସମାଜରୁ କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର କରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଉପରେ ଆଧାରିତ ଏକ ହେତୁବାଦୀ ଜୀବନ ଦର୍ଶନର ବିକାଶ କରାଇବା କୋଭୁରଙ୍କ ଜୀବନର ଲକ୍ଷ୍ୟ ଥିଲା । ହେତୁବାଦ ସତ୍ୟ ଅନ୍ୱେଷଣ, ଅନୁସନ୍ଧିତ୍ସା, ବିଚାରଶୀଳତା ଓ ବୈଜ୍ଞାନିକ ପ୍ରଣାଳୀରେ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଜନିତ ତଥ୍ୟପରକ ଜ୍ଞାନ ଉପରେ ଗୁରୁତ୍ୱ ଆରୋପ କରିଥାଏ । କୋଭୁର ସେହି ଆଭିମୁଖ୍ୟ ପୋଷଣ କରୁଥିବାରୁ ସେ ଜୀବନରେ ସର୍ବଦା ସତ୍ୟ-ସନ୍ଧାନୀ ହୋଇଥିଲେ । ଯେକୌଣସି ବିଶ୍ୱାସ ବା ମତ ତାହା ଯେତେ ପବିତ୍ର ବା ଧର୍ମଗ୍ରନ୍ଥ ଦ୍ୱାରା ସ୍ୱୀକୃତ ହେଲେ ବି ଯଦି ବସ୍ତୁନିଷ୍ଠ ଭାବରେ ପ୍ରମାଣିତ ହେବା ସମ୍ଭବ ନୁହେଁ ତେବେ ତାର ଭିତ୍ତି ନେଇ ସନ୍ଦେହ କରିବାର ଅବକାଶ ରହିଛି ବୋଲି ସେ ଭାବୁଥିଲେ । ଜୀବନରେ ଏହି ଲକ୍ଷ୍ୟ ହେତୁ ସେ ଯଥେଷ୍ଟ କୌତୂହଳୀ ହେବା ସହିତ ଫଳିତ ଜ୍ୟୋତିଷ, ମନସ୍ତତ୍ତ୍ୱ, ତୁଳନାତ୍ମକ ଧର୍ମ ଇତ୍ୟାଦି ବିଷୟ ଗୁଡ଼ିକ ଉପରେ ଗଭୀର ଅଧ୍ୟୟନ କରିଥିଲେ । ନିଜର ଦୃଢ଼ ଆତ୍ମପ୍ରତ୍ୟୟରୁ ସେ ଆନ୍ତର୍ଜାତିକ ସ୍ତରରେ ତାଙ୍କର ଆହ୍ୱାନ ରଖିଥିଲେ । ଏହାର ଏକମାତ୍ର ଉଦ୍ଦେଶ୍ୟ ଥିଲା ସମାଜରୁ କୁସଂସ୍କାର ଦୂର କରିବା । କାରଣ କୁସଂସ୍କାର ପ୍ରଗତିର ପ୍ରତିବନ୍ଧକ ଓ ଅଜ୍ଞତାର ପ୍ରତୀକ । କୁସଂସ୍କାର ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସଂକ୍ରାନ୍ତରେ ଆଲୋଚନା ପୂର୍ବରୁ ତାଙ୍କର କେତେକ ସ୍ମରଣୀୟ ଅନୁଭୂତିକୁ ଏଠାରେ ଉଲ୍ଲେଖ କରିବା ସମୀଚୀନ ମନେହୁଏ ।

୧୯୩୫ ମାର୍ଚ୍ଚରେ ଏକ ଆମେରିକୀୟ ଦମ୍ପତି ଶ୍ରୀ ରୋବର୍ଟ ଓ ଶ୍ରୀମତୀ ରୋବର୍ଟଙ୍କ ସହିତ କଲମ୍ବୋର ଏକ ହୋଟେଲରେ କୋଭୁରଙ୍କର ସାକ୍ଷାତ ହୋଇଥିଲା । ସେହି ଆମେରିକୀୟ ଦମ୍ପତି ଭାରତରେ ଗୋଟିଏ ମାସ ଭ୍ରମଣ କରି ଶ୍ରୀଲଙ୍କା ଭ୍ରମଣରେ ଯାଇଥିଲେ । କଥାବାର୍ତ୍ତା ଭିତରେ କୋଭୁର ସେମାନଙ୍କୁ ଭାରତ ସମ୍ପର୍କରେ ସେମାନଙ୍କ ଅନୁଭୂତି ବିଷୟ ପଚାରିବାରୁ ଶ୍ରୀମତୀ ରୋବର୍ଟ ମନ୍ତବ୍ୟ

ଦେଲେ ଯେ ଭାରତ ଏକ ସୁନ୍ଦର ଦେଶ, କିନ୍ତୁ ଭାରତୀୟମାନେ ଅତ୍ୟନ୍ତ କୁସଂସ୍କାରଗ୍ରସ୍ତ ଓ ଅନ୍ଧବିଶ୍ୱାସୀ । ଆଲ୍ଲାହାବାଦ ସ୍ଥିତ ପ୍ରୟାଗଠାରେ ହେଉଥିବା ସେ ବର୍ଷ କୁମ୍ଭମେଳାରେ, ତାଙ୍କର ଅନୁଭୂତିକୁ ସେ ବର୍ଣ୍ଣନା କରି କହିଲେ ଯେ, ପ୍ରାୟ ଷାଠିଏ ଲକ୍ଷ ଲୋକ ଗଙ୍ଗା ଓ ଯମୁନା ନଦୀର ସଙ୍ଗମ ସ୍ଥଳରେ ବୁଡ ପକାଇବାକୁ ଗୁଣ୍ଡ ହୋଇଥିଲେ । ସେମାନଙ୍କର ବିଶ୍ୱାସ ଯେ ଗଙ୍ଗା, ଯମୁନା ଓ ସରସ୍ୱତୀ (ସରସ୍ୱତୀ ଅଦୃଶ୍ୟ, କିନ୍ତୁ ଲୋକ ବିଶ୍ୱାସ ଅନୁଯାୟୀ ସ୍ୱର୍ଗରୁ ମର୍ତ୍ତ୍ୟକୁ ପ୍ରବାହିତ) ନଦୀର ସଙ୍ଗମ ସ୍ଥଳରେ ଶୁଭ ମୁହୂର୍ତ୍ତରେ ବୁଡ ପକାଇଲେ ସମସ୍ତ ପାପ କ୍ଷୟ ହୋଇଯିବ । ଶୁଭ ମୁହୂର୍ତ୍ତକୁ ଜଣାଇବା ପାଇଁ ଶଙ୍ଖ ଧ୍ୱନି ଓ ମନ୍ଦିରର ଘଣ୍ଟା ବଜାଯାଏ । ଲକ୍ଷ ଲକ୍ଷ ପୁରୁଷ, ସ୍ତ୍ରୀ ଶୁଭ ମୁହୂର୍ତ୍ତ ଗଡିଯିବ ଭାବି ତରବର ହୋଇ ଯାଇ ନଦୀରେ ବୁଡ ପକାନ୍ତି । ସେହି ଯିବା ଭିତରେ କେହି ସେହି ଖସଡା ରାସ୍ତାରେ ପଡିଗଲେ ଲୋକମାନେ ତାକୁ ଉଠାଇବା ପରିବର୍ତ୍ତେ ତା ଉପରେ ଚଢିକରି ଚାଲିଯିବେ, କାରଣ ତାଙ୍କର ବିଶ୍ୱାସ ଶୁଭ ମୁହୂର୍ତ୍ତରେ ବୁଡ ନ ପକାଇଲେ ପୁଣ୍ୟ ମିଳିବ ନାହିଁ । ଶୁଭ-ସ୍ନାନ ପରେ ହଜାର ସଂଖ୍ୟାରେ ମୃତ ଶରୀର କାଦୁଅ ପଙ୍କ ଭିତରୁ ଉଦ୍ଧାର କରାଗଲା । ଏହି ଗଣ ମୃତ୍ୟୁ ସେମାନଙ୍କ ମନରେ ସାମାନ୍ୟ ରେଖାପାତ ବି କରେ ନାହିଁ । ଏପରିକି ସେମାନେ ଏକଥା ବିଶ୍ୱାସ କରନ୍ତି ଯେ ଯଦି ସେଠାରେ କେହି ମୃତ୍ୟୁ ବରଣ କରେ ତେବେ ସେ ସ୍ୱର୍ଗ ପ୍ରାପ୍ତି ହେବ ବା ଏକ ଭଲ ପରିବେଶରେ ଜନ୍ମ ଲାଭ କରିବ । ଭାରତର ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ମଧ୍ୟ ପୁଣ୍ୟାର୍ଜନ ପାଇଁ ସେଠାକୁ ଯାଇ ବୁଡ ପକାଇବା ଘଟଣା ମହିଳା ଜଣକ ଉଲ୍ଲେଖ କରିଥିଲେ । ଏହାପରେ ସେ କୋଭୁରଙ୍କୁ ପ୍ରଶ୍ନ କଲେ, "ଆପଣ କେବେ ଆପଣଙ୍କ ଦେଶର ଲୋକଙ୍କର କୁସଂସ୍କାର ବିଷୟରେ ଚିନ୍ତା କରିଛନ୍ତି ?" (ସେତେବେଳେ କୋଭୁର ଭାରତୀୟ ଥିଲେ କାରଣ ସେ ଶ୍ରୀଲଙ୍କାର ନାଗରିକତ୍ୱ ଗ୍ରହଣ କରିନଥିଲେ) ।

କୋଭୁର ଏହା ଶୁଣି ଉତ୍ତର ଦେଲେ, "ହଁ, ମୁଁ ଆମ ଲୋକଙ୍କର କୁସଂସ୍କାର ବିଷୟରେ ଯେଉଁପରି ଚିନ୍ତିତ ଆପଣଙ୍କ ଦେଶର ଲୋକମାନଙ୍କର କୁସଂସ୍କାର ବିଷୟରେ ମଧ୍ୟ ସେହିପରି ଚିନ୍ତିତ ।" ଏହି ମନ୍ତବ୍ୟରେ ଭଦ୍ର ମହିଳା ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ ଯେ ତାଙ୍କ ଦେଶର ଲୋକମାନେ ଅନ୍ଧବିଶ୍ୱାସୀ ବୋଲି ସେ ଭାବୁଛନ୍ତି ?

ତାର ଉତ୍ତରରେ କୋଭୁର କହିଥିଲେ, "ମାହେନ୍ଦ୍ର ବେଳାରେ ଗଙ୍ଗାରେ ବୁଡ ପକାଇଲେ ସମସ୍ତ ପାପ କ୍ଷୟ ହୋଇଯାଏ ବୋଲି ଆମର ଧର୍ମଗ୍ରନ୍ଥ ଓ ପୂଜକମାନେ ଆମକୁ କହିଛନ୍ତି, ଯଦ୍ଦ୍ୱାରା ଲକ୍ଷ ଲକ୍ଷ ଲୋକ ବୁଡ ପକାଇବାକୁ ଯାନ୍ତି । ସେହିପରି ଆପଣଙ୍କ ଧର୍ମଗ୍ରନ୍ଥ ଓ ପୂଜକମାନେ ବାପ୍ଟିଜିମ (ବାହ୍ୟଶୁଦ୍ଧି) ଦ୍ୱାରା କିମ୍ବା ପବିତ୍ର ସମ୍ପର୍କ (ଅନ୍ତଃଶୁଦ୍ଧି) ଦ୍ୱାରା ସମସ୍ତ ପାପରୁ ରକ୍ଷା ମିଳିବ ବୋଲି କହିଛନ୍ତି । କିନ୍ତୁ ସୁଖର କଥା ଏଥିପାଇଁ ଆପଣମାନଙ୍କୁ କୌଣସି ଶୁଭ ମୁହୂର୍ତ୍ତରେ କେଉଁଠି ବୁଡ ପକାଇବାକୁ ପଡୁ ନାହିଁ, ଫଳରେ ଏହିପରି ଦୁର୍ଘଟଣା ଘଟିବାର ଅବକାଶ ନାହିଁ ।" ଶ୍ରୀ ରୋବର୍ଟ ଓ ତାଙ୍କ ପତ୍ନୀ କୋଭୁରଙ୍କର ଏହି ଆଲୋଚନାକୁ ଶୁଣୁଥାନ୍ତି । କୋଭୁରଙ୍କ ବକ୍ତବ୍ୟ ପରେ ତାଙ୍କ ଉଦ୍ଦେଶ୍ୟରେ ଶ୍ରୀ ରୋବର୍ଟ ମନ୍ତବ୍ୟ ଦେଲେ ଯେ ତାଙ୍କର ଏହି ବକ୍ତବ୍ୟ ଚିନ୍ତା କରିବାକୁ ତାଙ୍କୁ ପ୍ରେରଣା ଯୋଗାଇଛି ।

୧୯୬୧ର ଏକ ଘଟଣା । 'ମୁକ୍ତ ଚିନ୍ତକ ବିଶ୍ୱ ସଂଘ' (World Union for Freethinkers) ଅନୁଷ୍ଠାନର ଏକ ଆନ୍ତର୍ଜାତିକ ସମ୍ମିଳନୀ ଇଂଲଣ୍ଡର ସୁରେଠାରେ ଅନୁଷ୍ଠିତ ହେଉଥାଏ । ତାର ଏକ ଅଧିବେଶନରେ କୋଭୁର ଓ ବ୍ରିଟିଶ ପାର୍ଲିଆମେଣ୍ଟର ଲେବର ପାର୍ଟିର ସାଂସଦ ଫେନର ବ୍ରୋକୱେ ବକ୍ତା ରହିଥାନ୍ତି । ବ୍ରୋକୱେ ତାଙ୍କ ଦେଶର ସାମ୍ରାଜ୍ୟବାଦୀ ନୀତିକୁ ବହୁବାର ସମାଲୋଚନା କରି ପରାଧୀନ ଦେଶମାନଙ୍କର ଜନସାଧାରଣଙ୍କ ସ୍ୱାଧୀନତା ଆନ୍ଦୋଳନକୁ ଦୃଢ଼ ସମର୍ଥନ କରୁଥାନ୍ତି । ସୁତରାଂ ତାଙ୍କ ସମ୍ପର୍କରେ କୋଭୁର ବେଶ୍ ଉଚ୍ଚଧାରଣା ପୋଷଣ କରିଥାନ୍ତି । କିନ୍ତୁ ସେଦିନର ଅଧିବେଶନରେ ସେ କହିଲେ ଯେ ଉନ୍ନତ ପାଶ୍ଚାତ୍ୟ ଦେଶମାନଙ୍କର "ବସ୍ତୁବାଦୀ" ଜନ ସାଧାରଣ ପ୍ରାଚ୍ୟର "ଆଧ୍ୟାତ୍ମବାଦୀ", ଅନୁନ୍ନତ ବା ବିକାଶଶୀଳ ଦେଶମାନଙ୍କୁ ଦେଉଥିବା ଆର୍ଥିକ ସହାୟତା ବନ୍ଦ କରିବା ଆବଶ୍ୟକ । ତାଙ୍କର ଏହି ବକ୍ତବ୍ୟରେ କୋଭୁର ଆଶ୍ଚର୍ଯ୍ୟ ହେବା ସହିତ ପାଶ୍ଚାତ୍ୟ ଧନୀ ରାଷ୍ଟ୍ରମାନେ ପ୍ରାଚ୍ୟର ଗରିବ ରାଷ୍ଟ୍ରମାନଙ୍କୁ ସାହାଯ୍ୟ ଦେବାକୁ ସେ କାହିଁକି ବିରୋଧ କରୁଛନ୍ତି ବୋଲି ପଚାରିଲେ । କୋଭୁରଙ୍କୁ ଉତ୍ତର ଦେବାକୁ ଯାଇ ସେ କହିଲେ ଯେ ତୁଳନାତ୍ମକ ଭାବେ ପାଶ୍ଚାତ୍ୟ ରାଷ୍ଟ୍ରଗୁଡିକ ପ୍ରାଚ୍ୟର ଅଧିକାଂଶ ଦେଶ ଅପେକ୍ଷା ଧନୀ । ପାଶ୍ଚାତ୍ୟ ଦେଶ ଗୁଡିକ ବିକାଶ ଲାଭ କରିବା ପଶ୍ଚାତରେ ସେଠିକାର ଜନସାଧାରଣଙ୍କର ପରିଶ୍ରମ

ଏବଂ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବହୁଳ ବିନିଯୋଗ ରହିଛି । ସେମାନେ ନିଜର ଉନ୍ନତି ପାଇଁ କାଳ୍ପନିକ ଈଶ୍ୱର ମାନଙ୍କୁ ପ୍ରାର୍ଥନା କରି ସମୟ ବ୍ୟୟ କରୁନାହାନ୍ତି । ସୁତରାଂ ଉନ୍ନତ ଦେଶର ଲୋକମାନେ କଠିନ ପରିଶ୍ରମ କରି କରୁଥିବା ଉତ୍ପାଦନ କାହିଁକି ପରକାଳ ପାଇଁ, ଧ୍ୟାନ, ପୂଜା, ତୀର୍ଥଯାତ୍ରାରେ ବ୍ୟସ୍ତଥିବା ଲୋକମାନଙ୍କୁ ଦେବେ ? ଅନୁନ୍ନତ ଦେଶମାନଙ୍କରେ ଏସବୁ ବ୍ୟାପାରରେ କେତେ ଶ୍ରମ ଦିବସ ନଷ୍ଟ ନ ହେଉଛି ! ମଧ୍ୟ ପ୍ରାଚ୍ୟ ରାଷ୍ଟ୍ରମାନଙ୍କର କଳ କାରଖାନା ମାନଙ୍କରେ ଦିନ ମଝିରେ ଶ୍ରମିକ ମାନଙ୍କର ପ୍ରାର୍ଥନା ପାଇଁ ଘଣ୍ଟା ବାଜେ ଓ ସେ ସମୟରେ କାମ ବନ୍ଦ କରି ସେମାନେ ପ୍ରାର୍ଥନାରେ ବ୍ୟସ୍ତ ରହନ୍ତି । ପରିଶ୍ରମ ଓ ସାମାଜିକ କର୍ତ୍ତବ୍ୟବୋଧ ପ୍ରତି ଅଙ୍ଗୀକାର ନ ରହି ନିଜର ଧର୍ମ ଓ ଈଶ୍ୱର ପ୍ରତି ଉନ୍ମୁକ୍ତ ଥିବା ଲୋକମାନେ ଈଶ୍ୱରଙ୍କ ପାଖରୁ ସବୁକିଛି ପାଇପାରୁଥିବା ବେଳେ ଉନ୍ନତ ଦେଶମାନଙ୍କଠାରୁ ସାହାଯ୍ୟ ନେବାର ଆବଶ୍ୟକତା କ'ଣ ଅଛି ! ମାନବିକ ଅଧିକାରର ଜଣେ ପ୍ରବକ୍ତା ଫେନର ବ୍ରୋକେଓ୍ୱଙ୍କର ଏହି ମନ୍ତବ୍ୟ କୋଭୁରଙ୍କର ଦେଶାତ୍ମବୋଧକୁ ସେଦିନ ଆଘାତ ଦେଇଥିଲେ ବି ତାଙ୍କ କଥାର ମର୍ମକୁ ଉପଲବ୍ଧି କରି ନୀରବ ରହିବାକୁ ବାଧ୍ୟ ହୋଇଥିଲେ ।

କୋଭୁରଙ୍କ ଛାତ୍ର ଜୀବନର ଏକ ଘଟଣା । ସେତେବେଳେ କେରଳର ଗ୍ରାମମାନଙ୍କରେ ପରିବାରରେ କୌଣସି କିଛି ଅଘଟଣ ଘଟଣା ଘଟିଲେ ସାଧାରଣତଃ ଲୋକମାନେ ଗୁଣି-ଟୁଣିର ସାହାଯ୍ୟ ନେଉଥିଲେ । ସୁତରାଂ ଲୋକମାନେ ପରିବାରରେ କିଛି ପବିତ୍ର ବସ୍ତୁ ରଖୁଥିଲେ ଓ ବିଶ୍ୱାସ କରୁଥିଲେ ଯେ ସେହି ପବିତ୍ର ପଦାର୍ଥଟି ଯେକୌଣସି ପ୍ରତିକୂଳ ଅବସ୍ଥାରେ ସହାୟକ ହେବ । ହିନ୍ଦୁମାନେ ପବିତ୍ର ଗଙ୍ଗାଜଳ (କେରଳରେ ଗଙ୍ଗା ନଦୀର ପାଣିକୁ ତୀର୍ଥମ କୁହାଯାଏ) ଓ କବଚ, ସିରିଆନ ଖ୍ରୀଷ୍ଟିଆନମାନେ ଆଣ୍ଟିକଠାରୁ ଆଣିଥିବା ପବିତ୍ରୀକୃତ ତୈଳ ବା ଲାଭଡେସଠାରୁ ଆଣିଥିବା ପବିତ୍ରୀକୃତ ଜଳ ଓ ମୁସଲିମମାନେ ହଜ୍ କରି ଯିବାବେଳେ ମକ୍କାରେ ଥିବା ପବିତ୍ର କାବା ପଥରକୁ ସ୍ପର୍ଶ କରିଥିବା ପାତ୍ରର ଜଳକୁ ପବିତ୍ର ବୋଲି କହି ଘରେ ରଖୁଥିଲେ ।

କୋଭୁର ୧୯୨୧ରୁ କଲିକତା ବିଶ୍ୱବିଦ୍ୟାଳୟର ଛାତ୍ର ଥିଲେ । ସେତେବେଳେ ତାଙ୍କ ଗ୍ରାମରୁ କଲିକତାକୁ ଯିବାକୁ ପ୍ରାୟ ପାଞ୍ଚଦିନ ଲାଗୁଥିଲା । ସୁଦୂର

କେରଳରୁ ଯାଇ କଲିକତାରେ ପଢିବା ସେତେବେଳେ କଷ୍ଟକର ଥିଲା । ଦୂରତା ଓ ଖର୍ଚ୍ଚ ଦୃଷ୍ଟିରୁ ସେ ବର୍ଷକୁ ଥରେ ମାତ୍ର ଗ୍ରୀଷ୍ମଛୁଟିରେ ନିଜ ଘରକୁ ଆସୁଥିଲେ । ଛୁଟି ପରେ ସେ କଲିକତା ଯିବା ତାଙ୍କ ଗ୍ରାମ ଓ ଆଖ ପାଖ ଗ୍ରାମରେ ଏକ ଆଲୋଚ୍ୟ ବିଷୟ ଥିଲା । ଯିବାପୂର୍ବରୁ ଅଧିକାଂଶ ପରିବାରଦ୍ୱାରା ନିମନ୍ତ୍ରିତ ହୋଇ ସେ ସେମାନଙ୍କ ଘରେ ଅତିଥି ହେଉଥିଲେ । ଗ୍ରାମର ଓ ପାଖ ଆଖ ଗ୍ରାମର ଅନେକ ଲୋକ କଲିକତାରୁ ସେମାନଙ୍କ ପାଇଁ କିଛି ତୀର୍ଥମ ଆଣିବାକୁ ସାଦର ଅନୁରୋଧ କରୁଥିଲେ । ଏପରିକି ସେ ଗ୍ରାମରୁ ଯିବା ଦିନ ଲୋକମାନେ କାମ ଧନ୍ଦାକୁ ନ ଯାଇ ତାଙ୍କୁ ବିଦାୟ ଦେବାକୁ ତାଙ୍କ ଘରେ ରୁଣ୍ଡ ହେଉଥିଲେ । ଯିବାଦିନ ସେ ପ୍ରଥମେ ପ୍ରାର୍ଥନା କରି ପୂଜକଙ୍କର ଆଶୀର୍ବାଦ ନେବା ପରେ ଗ୍ରାମର ସମସ୍ତ ବୟସ୍କ ସ୍ତ୍ରୀ, ପୁରୁଷ ଲୋକମାନଙ୍କୁ ପ୍ରଣାମ କରି ସେମାନଙ୍କର ଆଶୀର୍ବାଦ ନେଇକରି ଯାତ୍ରା ଆରମ୍ଭ କରୁଥିଲେ । ସମସ୍ତଙ୍କ ପାଖରୁ ବିଦାୟ ନେଇ ଆସିବାବେଳେ ଗ୍ରାମବାସୀମାନେ ଲୋତକଭରା ଆଖିରେ ତାଙ୍କୁ ବାଟେଇ ଦେଉଥିଲେ ଓ ସେ ମଧ୍ୟ ଛଳ ଛଳ ଆଖିରେ ବିଦାୟ ନେଇ ଆସୁଥିଲେ । ଏହି ବିଦାୟକାଳୀନ ଦୃଶ୍ୟର ପ୍ରଭାବ ତାଙ୍କ ମନରେ ପଢା ପଢିରେ ବ୍ୟସ୍ତ ରହିବା ପର୍ଯ୍ୟନ୍ତ ଜୀବନ୍ତ ହୋଇ ରହୁଥିଲା । ପୁଣି ଗ୍ରାମକୁ ଫେରିବା ସମୟ ହେଲେ ଗ୍ରାମର ସମସ୍ତ କଥା ମନକୁ ଆସୁଥିଲା ।

କଲିକତାରେ ରହିଥିବା ବର୍ଷଗୁଡିକ ଭିତରେ କୋଭୁର ଥରେ ମାତ୍ର ଗଙ୍ଗାରେ ସ୍ନାନ କରିଥିଲେ ଓ ଏକ ଆଘାତପ୍ରଦ ଅନୁଭୂତି ଲାଭ କରିଥିଲେ । ସେ ଗାଧୋଇବା ସମୟରେ ପାଣିରେ ବୁଡି କିଛି ସମୟପରେ ମୁଣ୍ଡ ଟେକିବା ବେଳେ ତାଙ୍କ ମୁଣ୍ଡରେ ଏକ ଧଳା ଓ କାଦୁଆ ଜିନିଷ ଲାଗିଗଲା । ତାକୁ ସେ ହାତରେ ଆଣି ଦେଖିବାବେଳକୁ ମାଛ ଖାଇ ଯାଇଥିବା ଗୋଟିଏ ମଣିଷ ହାତର ପଚା ଅଂଶ ବିଶେଷ ଥିଲା । ଏହାପରେ ସେ ଅସୁସ୍ଥ ହେବା ସହିତ ଦୁଇଦିନ ଘୃଣାରେ ଖାଇପାରି ନଥିଲେ । ସେତେବେଳେ ଗଙ୍ଗାନଦୀ କୂଳରେ ବାସ କରୁଥିବା ଲୋକମାନେ ଶବମାନଙ୍କୁ ଗଙ୍ଗାନଦୀରେ ଫିଙ୍ଗି ଦେଉଥିଲେ, କାରଣ ସେମାନଙ୍କ ବିଶ୍ୱାସ ଅନୁଯାୟୀ ଗଙ୍ଗାରେ ପଡିଥିବା ଶବର ଆତ୍ମା ମୁକ୍ତି ପାଇପାରିବ । ଯେଉଁମାନେ ଗଙ୍ଗାନଦୀଠାରୁ ଦୂରରେ ରହୁଥିଲେ ସେମାନେ ମୃତ ଲୋକର ଭସ୍ମ ଆଣି ଗଙ୍ଗାରେ ବିସର୍ଜନ କରୁଥିଲେ । ଅବଶ୍ୟ ବହୁଦିନ ପରେ

ଭାରତ ସରକାର ଗଙ୍ଗାର ଜଳକୁ ଦୂଷିତ କରଣରୁ ରକ୍ଷା କରିବା ପାଇଁ ଏହା ବିରୁଦ୍ଧରେ ଆଇନ କଲେ ।

ନିଜର ଏହି ବ୍ୟକ୍ତିଗତ ଅନୁଭୂତି ଯୋଗୁଁ ସେ ଗଙ୍ଗାର ଦୂଷିତ ପାଣିକୁ ଗ୍ରାମର ଲୋକମାନଙ୍କ ପାଇଁ ଆଣିବାକୁ ଚାହୁଁ ନଥିଲେ । କିନ୍ତୁ ନିଜ ଗ୍ରାମର ଆତ୍ମୀୟ ପଡୋଶୀମାନେ ମନ ଅଶାନ୍ତି କରିବେ ଭାବି ସେମାନଙ୍କ ପାଇଁ ବିଶୁଦ୍ଧ ଜଳ ନେବାକୁ ସ୍ଥିର କଲେ । ତାଙ୍କ ଗ୍ରାମକୁ ଯିବାପାଇଁ ରେଳଷ୍ଟେସନ କୋଟରକରାଠାରେ ଓହ୍ଲାଇ ସେଠାରୁ ଦୁଇଟି ବୋତଲରେ ପିଇବା ପାଣି ଭର୍ତ୍ତିକରି ଓ ସେଗୁଡିକୁ ଭଲଭାବରେ ବନ୍ଦ କରି ତାଙ୍କ ଗ୍ରାମ ଅଭିମୁଖେ ସେ ପଚାଶ କିଲୋମିଟର ବସ ଯୋଗେ ଯାଉଥିଲେ ।

ଗ୍ରାମରେ ପହଞ୍ଚି କୋଭୁର ନିଜର ମାଙ୍କୁ ତୀର୍ଥମ ବୋଲି ଷ୍ଟେସନରୁ ଆଣିଥିବା ପିଇବା ପାଣି ଦେଉଥିଲେ ଓ ତାଙ୍କ ମା ଆନନ୍ଦ ଓ ଗର୍ବର ସହ ଗ୍ରାମର ଲୋକମାନଙ୍କୁ ଏହା ବାଣ୍ଟୁଥିଲେ । କୋଭୁର ନିଜର ସ୍ମୃତିଚାରଣ କରି କହନ୍ତି ଯେ ପ୍ରାୟ ଚାରିବର୍ଷ କାଳ ସେ ଏହିପରି ତାଙ୍କର ମା ଓ ଗ୍ରାମର ସରଳ ବିଶ୍ୱାସୀ ଲୋକମାନଙ୍କୁ ଠକୁଥିଲେ ଓ ତାଙ୍କର ମା ମରିବା ପର୍ଯ୍ୟନ୍ତ ସେହି ଠକାମି ବିଷୟରେ ଜାଣିବାର ଅବକାଶ ପାଇନଥିଲେ ।

ଛୁଟିରେ ଗାଁକୁ ଆସିଲେ ତୀର୍ଥମର ଅଲୌକିକ ପ୍ରଭାବ ବଷୟରେ ସେ ଗ୍ରାମର ଲୋକମାନଙ୍କ ପାଖରୁ ଯେଉଁ କାହାଣୀ ଶୁଣୁଥିଲେ ତାର କେତୋଟି ଘଟଣା ବର୍ଣ୍ଣନା କରିଛନ୍ତି ।

ପୁଥୁର ରମଣ ନାୟର କହିଲେ ଯେ ତାଙ୍କର ମା' ହଇଜାରେ ଆକ୍ରାନ୍ତ ହୋଇଥିଲେ । କିନ୍ତୁ ସେ ମହୁ ସହିତ କେତେ ବୁନ୍ଦା ଗଙ୍ଗାଜଳ ଦେବାର କେତେ ଘଣ୍ଟା ପରେ ସେ ସୁସ୍ଥ ହୋଇଗଲେ । ଗତ ଦୁଇ ବର୍ଷ ଭିତରେ ତାଙ୍କ ପରିବାରରେ କାହାକୁ ଔଷଧ ସେବନ କରିବାକୁ ପଡିନାହିଁ । ଲକ୍ଷ୍ମୀ ଆମ୍ମା କହିଲେ ଯେ ତାଙ୍କର ଝିଅକୁ ଯେତେବେଳେ ଥଣ୍ଡା ଓ ଜ୍ୱର ହେଉଥିଲା ତୀର୍ଥମର ଏକ ଦୁଇ ବୁନ୍ଦା ତାର ପାଟିରେ ଦେବାଦ୍ୱାରା ସେ ପୂରା ଆରୋଗ୍ୟ ଅନୁଭବ କରୁଥିଲା । ତାଙ୍କର ଯେତେବେଳେ ମୁଣ୍ଡ ବ୍ୟଥା ଆରମ୍ଭ ହେଉଥିଲା ସେ କପାଳରେ କେତେ ବୁନ୍ଦା ତୀର୍ଥମ

ଲଗାଇବାରୁ ମୁଣ୍ଡ ବ୍ୟଥା ଭଲ ହୋଇ ଯାଉଥିଲା । ଭିଙ୍ଟ ଭେଲିଲ ପରକୁଟିଙ୍କର ପ୍ରଥମ ଦୁଇଟି ସନ୍ତାନଙ୍କର ପ୍ରସବ ସମୟରେ ଅସୁବିଧା ଓ ଜଟିଳତା ହୋଇଥିଲା । ତୃତୀୟ ସନ୍ତାନଟିର ଜନ୍ମ ପୂର୍ବରୁ ପ୍ରସବ ବ୍ୟଥା ଆରମ୍ଭ ହେବା ମାତ୍ରେ ସେ ତୀର୍ଥମରୁ କେତେ ଟୋପା ଖାଇବାରୁ ପ୍ରସବ ସୁରୁଖୁରୁରେ ହୋଇ ଯାଇଥିଲା । ନାରାୟଣ କୁରୁପ ତୀର୍ଥମର ମହତ୍ତ୍ୱ ବିଷୟରେ ଏକ ପରୀକ୍ଷା କରିଥିବା ବି କହିଲେ । ସେ ବାଡିରେ ଦୁଇଟି କଲିମ ଆମ୍ବ ଗଛ ଲଗାଇଥିଲେ । ଉଭୟ ଗଛ ଏକା ସମୟରେ ଗୋଟିଏ ଗଛରୁ କଲିମ କରାଯାଇଥିଲା । ବିଗତ ଖରାଦିନରେ ଗୋଟିଏ ଗଛରେ ପାଣିଦେବା ବେଳେ ସେ ସେହି ଗଛରେ ଦୁଇ ବୁନ୍ଦା ତୀର୍ଥମ ମିଶାଇ କରି ଦେଇଥିଲେ । ତୀର୍ଥମ ଜଳ ଦେଇଥିବା ଗଛଟିରେ ସେ ବର୍ଷ ବଉଳ ଆସି ଆମ୍ବ ଧରିଲା, ଅଥଚ ଅନ୍ୟ ଗଛଟିରେ ଧରିଲା ନାହିଁ । ଚାକ୍ରୋଥ ପିଚୁ ପିଲାଇ କହିଲେ ଯେ ସେ ତାଙ୍କ ବାଡିର କୂଅରେ ଗୋଟିଏ ଚାମଚ ତୀର୍ଥମ ପକାଇଥିଲେ । ଫଳରେ ତାଙ୍କ ପରିବାରର କୌଣସି ଲୋକ ରୋଗ ବେମାରରେ ପଡିନାହାନ୍ତି । ଏହିପରି ଗ୍ରାମର ବହୁଲୋକଙ୍କ ମୁହଁରୁ ନାନା କାହାଣୀ ସେ ଶୁଣିବାକୁ ପାଇଥିଲେ ।

କୌଣସି ପବିତ୍ର ବସ୍ତୁ, ଜଳ, ବ୍ୟକ୍ତି, ସ୍ଥାନ ଓ ସମୟର ଅଲୌକିକ ପ୍ରଭାବ ବିଷୟରେ ବିଶ୍ୱାସ ପ୍ରାଚୀନ କାଳରୁ ଚଳି ଆସିଛି । ଲୋକମାନଙ୍କର ମନ ଉପରେ ଶୁଭ ବା ପବିତ୍ର ପଦାର୍ଥର ମନସ୍ତାତ୍ତ୍ୱିକ ପ୍ରଭାବ ବ୍ୟତୀତ ଏସବୁ ବିଶ୍ୱାସର କିଛି ସତ୍ୟ ଆଧାର ନାହିଁ । ଏହି ମାନସିକ ପ୍ରଭାବ ବା ସମ୍ମୋହନ ଜନିତ ପରାମର୍ଶରୁ ଭଲ ବା ଖରାପ ଉଭୟ ପରିଣାମ ସୃଷ୍ଟି ହୋଇପାରେ । ବହୁ ମାନସିକ ରୋଗୀ ନାନା କୁସଂସ୍କାର ଜନିତ ବିଶ୍ୱାସରୁ ମାନସିକ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । କୌଣସି ପବିତ୍ର ବସ୍ତୁରେ ବିଶ୍ୱାସ କରୁଥିବା ବ୍ୟକ୍ତି ସାମାନ୍ୟ ବ୍ୟତିକ୍ରମ ବା କିଛି ଅପବିତ୍ରତା ଦେଖିଲେ ମାନସିକ ବିକାରଗ୍ରସ୍ତ ହୋଇଥାଏ । ଅତ୍ୟନ୍ତ ଦୁର୍ବଳମନା ଓ ସରଳବିଶ୍ୱାସୀ ମଣିଷମାନେ ସାମାନ୍ୟ ଦୁଃଖ ବା କ୍ଲେଶ ପାଇଲେ ମାନସିକ ଭାରସାମ୍ୟତା ହରାଇ ବିକୃତି ଭୋଗ କରନ୍ତି । କୋଭୁର ବିଭିନ୍ନ ମାନସିକ ବିକୃତି ଭୋଗ କରୁଥିବା ବ୍ୟକ୍ତିମାନଙ୍କର ଚିକିତ୍ସାରୁ ଜାଣିଛନ୍ତି ଯେ ଯେଉଁ ସାମାଜିକ ପରିବେଶରେ କୁସଂସ୍କାର ଜନିତ ବିଶ୍ୱାସ ଯେତିକି ବେଶି, ସେ ସମାଜରେ ମାନସିକ ବିକୃତି ଭୋଗୁଥିବା ଲୋକମାନଙ୍କର ସଂଖ୍ୟା ସେତିକି

ଅଧିକ । ପୁନଶ୍ଚ ଏହି ରୋଗୀମାନଙ୍କ ମଧ୍ୟରେ ମହିଳାଙ୍କର ସଂଖ୍ୟା ପୁରୁଷ ଲୋକଙ୍କର ସଂଖ୍ୟା ଅପେକ୍ଷା ବେଶି । ଝିଅମାନଙ୍କ ପାଇଁ ଉପଯୁକ୍ତ ଶିକ୍ଷା ଓ ସେମାନଙ୍କୁ ପରଦା ଓ ହାଣ୍ଡିଶାଳ ଭିତରେ ଆବଦ୍ଧ ନ ରଖିବା ଦ୍ୱାରା ସେମାନଙ୍କ ଭିତରେ ମାନସିକ ବିକୃତିର ପରିମାଣ କମିପାରିବ ।

ରେଳଷ୍ଟେସନରୁ ଆଣୁଥିବା ପାଣିର କୌଣସି ଅଲୌକିକ ପ୍ରଭାବ ନଥିଲା । ବରଂ ଗ୍ରାମର ଲୋକମାନେ ଗଙ୍ଗାଜଳର ପବିତ୍ରତା ନେଇ ଯେଉଁ କୁସଂସ୍କାର ଜନିତ ବିଶ୍ୱାସ ସାମାଜିକ ପରିବେଶରୁ ପିଲାଟି ବେଳରୁ ପାଇଥିଲେ ସେହି ବିଶ୍ୱାସ ସେମାନଙ୍କ ମନରେ ବଦ୍ଧମୂଳ ହୋଇ ରହିଥିଲା । ଫଳରେ ନିଜର ତର୍କଶୀଳ ବୁଦ୍ଧି ବା ହେତୁ ପ୍ରୟୋଗ ନକରି ସେମାନେ ନିଜର ସର୍ତ୍ତବଦ୍ଧ ମନଦ୍ୱାରା ସାଧାରଣ ଘଟଣାକୁ ସେମାନଙ୍କର ଅନ୍ଧବିଶ୍ୱାସ ଅନୁଯାୟୀ ବ୍ୟାଖ୍ୟା କରୁଥିଲେ ।

ବଳି, ଦେବତାଙ୍କ ପାଖରେ ମାନସିକ, ତୀର୍ଥ ଯାତ୍ରା, ପ୍ରାର୍ଥନା, ପୂଜା, ପବିତ୍ର ବସ୍ତୁ, ପ୍ରସାଦ, ନାମ କରଣ ସଂସ୍କାର (ବାପ୍ଟିଜିମ), ବିଭୂତି, ନାମ ଯଜ୍ଞ, ଅଧିଆ ଇତ୍ୟାଦିର ମନସ୍ତାତ୍ତ୍ୱିକ ଭିତ୍ତି ଛଡା ଏଥିରୁ ମିଳୁଥିବା ଉପକାର ନେଇ ଯେଉଁ ବିଶ୍ୱାସ ରହିଛି ତାହାର କୌଣସି ସତ୍ୟତା ନାହିଁ । ସେହିପରି ଗୁଣିକରିବା, ବୀର ପେଷିବା, କାଳିଶି ଲାଗିବା, ମନ୍ତ୍ର ତନ୍ତ୍ର ପ୍ରୟୋଗ କରିବା, ଭୂତ ପେଷିବା, ଡାଆଣୀ ଲଗାଇବା ଇତ୍ୟାଦି ଯାହା କୁହାଯାଏ ସେସବୁ ମଧ୍ୟ ସଂପୂର୍ଣ୍ଣ ଭିତ୍ତିହୀନ । କୌଣସି ପ୍ରତିକୂଳ ଅବସ୍ଥା, ରୋଗ ବା ମୃତ୍ୟୁ ଏସବୁର ପ୍ରଭାବରୁ ହେବା ଭାବିବା ସଂପୂର୍ଣ୍ଣ ଅନ୍ଧବିଶ୍ୱାସ ଓ ଏହା ପଶ୍ଚାତରେ ବସ୍ତୁନିଷ୍ଠ ଆଧାର ନାହିଁ । ଏସବୁକୁ କେବଳ ସାମାଜିକ ମନସ୍ତତ୍ତ୍ୱ ଭିତରେ ରହିଥିବା କୁସଂସ୍କାର କହିଲେ ଅତ୍ୟୁକ୍ତି ହେବ ନାହିଁ ।

କେତେକ ବିଶ୍ୱାସର ପ୍ରଭାବ ସଂକ୍ରାନ୍ତୀୟ କେତୋଟି ବାସ୍ତବ ଘଟଣା ଏଠାରେ ଉଲ୍ଲେଖ କରାଯାଇପାରେ । କୋଭୁର ଉଲ୍ଲେଖ କରିଛନ୍ତି ଯେ ଜାଫନା କଲେଜରେ ତାଙ୍କର ଜଣେ ସହକର୍ମୀ - ଯେ ପରେ ଶିକ୍ଷା ବିଭାଗର ଉପନିର୍ଦ୍ଦେଶକ ହୋଇଥିଲେ - ଥରେ ଅଧ୍ୟାପକମାନଙ୍କ ପ୍ରକୋଷ୍ଠରେ ଥିବା ଏକ କଳସୀର ପାଣି ପିଇକରି ଗଲେ । ତାର କିଛି ଘଣ୍ଟା ପରେ ଅନ୍ୟ ଜଣେ ଅଧ୍ୟାପକ ସେହି କଳସୀରୁ ପାଣି ବାହାର

କରିବା ବେଳେ ସେଥିରୁ ଏକ କ୍ଷୁଦ୍ର ମଲା ସାପ ବାହାରିବାର ଦେଖିଲେ । ପୂର୍ବରୁ ସେହି କଳସୀରୁ ପାଣି ପିଇଥିବା ଅଧ୍ୟାପକ ଜଣକ ଯେତେବେଳେ ଏହା ଜାଣିଲେ ସେ ଭୟଙ୍କର ଅସୁସ୍ଥ ହୋଇ ବାନ୍ତି କରିବାକୁ ଲାଗିଲେ । ସେହି ବାନ୍ତି ବନ୍ଦ ହେଲା ନାହିଁ ଓ ତାଙ୍କର ଅବସ୍ଥା ଉଦ୍‌ବେଗଜନକ ହେଲା । କିନ୍ତୁ ଯେତେବେଳେ ତାଙ୍କୁ ବୁଝାଇ ଦିଆଗଲା ଯେ ସେ ଯେଉଁ କଳସୀରୁ ପାଣି ପିଇଲେ, ସେ କଳସୀରୁ ନୁହଁ ତା ପାଖ କଳସୀରୁ ମଲା ସାପଟି ବାହାରିଥିଲା ଓ ତାଙ୍କୁ ସେଠାରେ ଥିବା କଳସୀମାନଙ୍କୁ ନେଇ ଦେଖାଇ ଦିଆଗଲା, ତାଙ୍କର ବାନ୍ତି ବନ୍ଦ ହେଲା ଓ ସେ ସୁସ୍ଥ ହେଲେ । ପ୍ରକୃତରେ ସେ ପିଇଥିବା କଳସୀରୁ ହିଁ ମଲା ସାପଟି ବାହାରିଥିଲା । ବିଶ୍ୱାସର ପ୍ରଭାବ ନେଇ ମଣିଷ ଅସୁସ୍ଥ ହୋଇପାରେ ବା ଆରୋଗ୍ୟ ହୋଇପାରେ । କେତେକ କ୍ଷେତ୍ରରେ ମାନସିକ ଆବେଗ ଶାରୀରିକ ସୁସ୍ଥତା ବା ଅସୁସ୍ଥତାକୁ ପ୍ରଭାବିତ କରିଥାଏ । କିନ୍ତୁ ଯେଉଁ ରୋଗମାନଙ୍କର ଉତ୍ପତ୍ତି ପଶ୍ଚାତରେ ମାନସିକ କାରଣ ନଥାଏ ସେହି ରୋଗମାନଙ୍କୁ ବିଶ୍ୱାସଦ୍ୱାରା ଭଲ କରାଯାଇ ପାରିବ ବୋଲି ଭାବିବା ଅବାନ୍ତର ମନେହୁଏ ।

ଅନ୍ୟ ଏକ ଘଟଣାରେ ଥରେ ଜଣେ ତାମିଲ ଭଦ୍ରଲୋକଙ୍କୁ ପାଗଳ ଅବସ୍ଥାରେ ତାଙ୍କର ସିଂହଳୀ ପତ୍ନୀ କୋଭୁରଙ୍କ ପାଖକୁ ଆଣିକରି ଆସିଲେ । ଭଦ୍ରଲୋକ ଜଣଙ୍କ ଗୋଟିଏ ପ୍ରେସରେ କାର୍ଯ୍ୟ କରନ୍ତି । ସେ ଏକଦା 'ଧ୍ୟାନ ଓ ଯୋଗ' ଉପରେ ଏକ ତାମିଲ ପୁସ୍ତକ ପଢିଲେ । ସେ ସେହି ବହିରୁ ପଢିଲେ ଯେ ସାଧନାଦ୍ୱାରା ଜଣଙ୍କର ମାନସ ଚକ୍ଷୁ ଉନ୍ମୀଳିତ ହୋଇପାରିବ ଯଦ୍ୱାରା ସେ ଅତୀତ ଓ ଆଗତ ଭବିଷ୍ୟତ ଘଟଣାବଳୀକୁ ମାନସ ଚକ୍ଷୁରେ ଜାଣିପାରିବେ । ଏଥିପାଇଁ ପଦ୍ମାସନରେ ବସି ପ୍ରତ୍ୟହ ଏକ ମନ୍ତ୍ର ୧୦୮ ଥର ଜପ କରିବାଦ୍ୱାରା ମାନସ ଚକ୍ଷୁ ଉନ୍ମୀଳିତ ହୋଇପାରିବ । ଭଦ୍ରଲୋକ ଏହି ଜପ ଆରମ୍ଭ କରିବାକୁ ସ୍ଥିର କଲେ । ତାଙ୍କ ସ୍ତ୍ରୀଙ୍କର ବକ୍ତବ୍ୟ ଅନୁଯାୟୀ ସେ ପଦ୍ମାସନରେ ବସି ଏହି ଜପ କରିବାକୁ ଲାଗିଲେ । କିନ୍ତୁ ନିର୍ଦ୍ଧାରିତ ୧୦୮ ଥର ସେ ପୂରଣ କରିପାରି ନଥିଲେ । ପଚାଶ/ ଷାଠିଏ ଥର କଲାପରେ ସେ ଆସନରୁ ଉଠି ଏକ ଶବ୍ଦ କରି ଚିତ୍କାର କଲେ । ତାପରେ ସେ ପାଗଳଙ୍କପରି ବ୍ୟବହାର କରିବାକୁ ଲାଗିଲେ । ଗୁଣିଆଁ ଓ ତାନ୍ତ୍ରିକଙ୍କୁ ଦେଖାଇ ସେମାନଙ୍କ ନିର୍ଦ୍ଦେଶମତେ ପୂଜା କରାଗଲେ ବି ତାଙ୍କ ମନର ଅବସ୍ଥା ସୁସ୍ଥ ହୋଇନଥିଲା ।

ଏହିପରି ଅନେକ ଦୃଷ୍ଟାନ୍ତ ମାନସିକ ରୋଗ ଚିକିତ୍ସା ବିଜ୍ଞାନରେ ଦେଖିବାକୁ ମିଳିଥାଏ । ମନ୍ଦିର ମାନଙ୍କରେ କେତେକ ପୂଜକ ମାନଙ୍କର ଅସ୍ୱାଭାବିକ ବ୍ୟବହାର, କାଳିଶୀ ଲାଗିବା, ଦେବତା ଆସିବା ଇତ୍ୟାଦି ଘଟଣା ଗୁଡିକ କୁସଂସ୍କାର ଜନିତ ବିଶ୍ୱାସରୁ ସୃଷ୍ଟି ହୋଇଥାଏ । ମନକୁ କେତେକ ଅହେତୁକ ବିଶ୍ୱାସରେ ଆବଦ୍ଧ କରିବାଦ୍ୱାରା ବ୍ୟକ୍ତି ଅପ୍ରାକୃତିକ ବ୍ୟବହାର ପ୍ରଦର୍ଶନ କରିଥାଏ । କୁସଂସ୍କାର ଜନିତ ଅହେତୁକ ବିଶ୍ୱାସରୁ କେତେକ ମାନସିକ ବିକୃତି ସୃଷ୍ଟି ହୋଇଥାଏ ।

ବେଳେବେଳେ କେତେକ ବ୍ୟକ୍ତି ନିଜର ବିଶ୍ୱାସକୁ ଅତିରଞ୍ଜିତ କରି ମିଥ୍ୟା ଘଟଣାମାନ ମଧ୍ୟ ପ୍ରକାଶ କରିଥାନ୍ତି । କେତେକ ବ୍ୟକ୍ତି ବା ଦେବ ପୁରୁଷଙ୍କର ଅଲୌକିକ ଶକ୍ତି ବିଷୟରେ ତାଙ୍କର ଭକ୍ତମାନେ ଏହିପରି କରିଥାନ୍ତି । କଲମ୍ବୋରେ ଥିବା ଶ୍ରୀ ଅରବିନ୍ଦଙ୍କ ଦର୍ଶନ ଉପରେ ଏକ ପତ୍ରିକା ପ୍ରକାଶ ପାଉଥାଏ । ଡଃ ଏ. କନଗରତ୍ନମ ଶ୍ରୀ ଅରବିନ୍ଦଙ୍କ ଅତିମାନସ ଶକ୍ତି ଉପରେ ଏକ ଲେଖା ଲେଖି ସେ (ଶ୍ରୀ ଅରବିନ୍ଦ) କିପରି ଭବିଷ୍ୟ ଘଟଣାକୁ ଅତିମାନସ ସିଦ୍ଧିଦ୍ୱାରା ଜାଣି ପାରୁଥିଲେ ତାହା ଉଲ୍ଲେଖ କରିଥାନ୍ତି । ସେ ଲେଖିଥିଲେ ଯେ ୧୯୪୬ ଅଗଷ୍ଟ ୧୫ ତାରିଖ ଦିନ ଲେଖକ (ଡଃ ଏ. କନଗରତ୍ନମ) ଶ୍ରୀ ଅରବିନ୍ଦଙ୍କ ଦର୍ଶନ ପାଇଁ ପଣ୍ଡିଚେରୀରେ ଥିବା ତାଙ୍କ ଆଶ୍ରମକୁ ଯାଇଥିଲେ । ଶ୍ରୀ ଅରବିନ୍ଦଙ୍କର ଦର୍ଶନ ସହ ତାଙ୍କର ଶ୍ରୀ ଅରବିନ୍ଦଙ୍କ ସଂକ୍ରାନ୍ତରେ ହେଉଥିବା କେତେକ ଆଧ୍ୟାତ୍ମିକ ଅନୁଭୂତିର ଯଥାର୍ଥତା ନେଇ ତାଙ୍କଠାରୁ ବୁଝିବା ଲକ୍ଷ୍ୟ ଥାଏ । ଶ୍ରୀ ଅରବିନ୍ଦଙ୍କ ଦର୍ଶନ ପାଇଁ ପ୍ରାୟ ଏକ ହଜାର ଲୋକ ଧାଡି ବାନ୍ଧି ଛିଡା ହୋଇଥାନ୍ତି । ଆଶ୍ରମର ପ୍ରବେଶ ପଥ ପାଖରେ କାଚଦ୍ୱାରା ଆବୃତ ହୋଇଥିବା ଏକ ପଟାରେ ଗୋଟିଏ କନାରେ ଗୋଟିଏ ବାକ୍ୟ ଲେଖାଯାଇ ସେଠାରେ ରହିଥାଏ । ସେହି ବାକ୍ୟଟି ଥିଲା- "ଆସନ୍ତା ବର୍ଷର ଏହି ଦିନରେ ଅର୍ଥାତ ୧୯୪୭ ଅଗଷ୍ଟ ୧୫ ରେ ଭାରତ ସାଧୀନତା ଲାଭ କରିବ ।" ଲେଖକ ଏହା ପଢି ଏହା ପ୍ରକୃତରେ ସତ୍ୟ ହେବକି କ'ଣ ଭାବି ପଣ୍ଡିଚେରୀର ଶ୍ରୀ ଅରବିନ୍ଦ ଆଶ୍ରମରୁ ଶ୍ରୀଲଙ୍କା ଫେରି ଆସିଲେ । ଶ୍ରୀ ଅରବିନ୍ଦଙ୍କ ପରି ଜଣେ ବ୍ୟକ୍ତିଙ୍କର ଭବିଷ୍ୟବାଣୀ ସତ୍ୟ ହେବକି ନାହିଁ ଜାଣିବାକୁ ସେ ଅପେକ୍ଷା କରିଥାନ୍ତି । ଗୋଟିଏ ବର୍ଷ ପରେ ପୁଣି ଏକ ନିର୍ଦ୍ଦିଷ୍ଟ ଦିନରେ ଭାରତ ସାଧୀନ ହେବ ବୋଲି ସେତେବେଳେ

କେହି ଆଶା ବି କରିନଥିଲେ । ଲେଖକଙ୍କ ମତରେ ସତକୁ ସତ ଯାହା ଶ୍ରୀ ଅରବିନ୍ଦ ତାଙ୍କ ଦିବ୍ୟ ଦୃଷ୍ଟିରେ ଦେଖିଥିଲେ ଓ ଯାହା ଆଶ୍ରମ ପ୍ରବେଶ ପଥରେ ଲେଖାଥିଲା ତାହା ସତ୍ୟ ହେଲା ଓ ଗୋଟିଏ ବର୍ଷ ପରେ ୧୫.୮.୪୭ରେ ଭାରତ ସ୍ୱାଧୀନତା ଲାଭ କଲା ।

ଶ୍ରୀଲଙ୍କା ଶ୍ରୀ ଅରବିନ୍ଦ ସମାଜର ପତ୍ରିକାରୁ ଡଃ କନଗରତ୍ନମଙ୍କର ଏହି ଲେଖାଟି ପଢି ତାହାକୁ ପରୀକ୍ଷା କରିବା ପାଇଁ କୋଭୁର ଆଗ୍ରହୀ ଥିଲେ । ପ୍ରକୃତରେ ଦୂର ସମ୍ବେଦନ, ଭବିଷ୍ୟ ଦୃଷ୍ଟି ବୋଲି ଯାହା କୁହାଯାଉଛି ସେହିସବୁ ଘଟଣାକୁ ମୁକ୍ତ ମନ ନେଇ ସେ ଅନୁସନ୍ଧାନ କରୁଥାନ୍ତି । ଦୁଇବର୍ଷ ଧରି ଉଦ୍ୟମ କରି ମଧ୍ୟ ଭାରତ ବା ଶ୍ରୀଲଙ୍କାର ଅନ୍ୟ କୌଣସି ବ୍ୟକ୍ତି ଶ୍ରୀ ଅରବିନ୍ଦଙ୍କର ଏହି ଭବିଷ୍ୟବାଣୀ ସମ୍ପର୍କରେ ତାଙ୍କୁ କିଛି କହିପାରି ନଥିଲେ ।

ଶ୍ରୀ ଅରବିନ୍ଦ ଆଶ୍ରମର ସାଧାରଣ ସମ୍ପାଦକ ଶ୍ରୀ ଏମ.ପି.ପଣ୍ଡିତ ମଝିରେ ମଝିରେ ଶ୍ରୀଲଙ୍କା ଆସି ଶ୍ରୀ ଅରବିନ୍ଦ ଅନୁଷ୍ଠାନ ଓ ଅନ୍ୟ ସାଧାରଣ ସଭା ମାନଙ୍କରେ ତାଙ୍କର ବିଶ୍ୱାସକୁ ପ୍ରଚାର କରିଥାନ୍ତି । ୧୯୭୮ ଜାନୁଆରୀରେ ଶ୍ରୀଲଙ୍କା ଥିଓସୋଫିକାଲ ସୋସାଇଟି ଦ୍ୱାରା ଆୟୋଜିତ ଏକ ସଭାରେ ଶ୍ରୀ ପଣ୍ଡିତ ଭାଷଣ ଦେଇ ସାରିବା ପରେ 'ଶ୍ରୀ ଅରବିନ୍ଦ ଆଶ୍ରମରେ ୧୯୪୬ ଅଗଷ୍ଟ ୧୫ରେ ଭାରତର ସ୍ୱାଧୀନତା ସମ୍ପର୍କରେ ଏକ ଭବିଷ୍ୟବାଣୀ ପ୍ରବେଶ ପଥରେ ଏପରି ଲେଖାଥିବା ଘଟଣାଟି ସତ୍ୟକି' ବୋଲି କୋଭୁର ତାଙ୍କୁ ପ୍ରଶ୍ନ କରିଥିଲେ । ପ୍ରଶ୍ନଟିକୁ ସେ ଏଡାଇ ଯିବାକୁ ଚାହିଁବାରୁ ତାଙ୍କୁ ଏକ ସ୍ପଷ୍ଟ ଉତ୍ତର ଦେବାକୁ କୋଭୁର ଅନୁରୋଧ କରିଥିଲେ । ଏଥିରେ ଶ୍ରୀ ପଣ୍ଡିତ କହିଲେ ଯେ ଯଦିବା ସେ ଏହି ଘଟଣା ଦେଖି ନାହାନ୍ତି ତଥାପି ଲେଖକ (କନଗରତ୍ନମ) ହୁଏତ ତାଙ୍କର ମାନସ ଚକ୍ଷୁରେ ଏହା ଦେଖି ପାରିଥାନ୍ତି । କନଗରତ୍ନମ ସେହି ସଭାରେ ଯଦିବା କୋଭୁରଙ୍କ ପାଖରେ ବସିଥିଲେ ତଥାପି କୋଭୁର ଅପ୍ରୀତିକର ମନେକଲେ ବି ମନ୍ତବ୍ୟ ଦେଇଥିଲେ ଯେ କୌଣସି ପଟା ବା ଲେଖା ନ ଥାଇ ସେପରି ଦେଖୁଥିବା ବ୍ୟକ୍ତିଙ୍କର ମାନସିକ ସୁସ୍ଥତା ପାଇଁ ମାନସିକ ରୋଗ ବିଶେଷଜ୍ଞଙ୍କୁ ପରାମର୍ଶ କରିବା ଆବଶ୍ୟକ ।

କୌଣସି ସତ୍ୟତା ନଥାଇ ବିଭିନ୍ନ ପତ୍ର ପତ୍ରିକା ଓ ସମ୍ବାଦପତ୍ର ମାନଙ୍କରେ ଉଦ୍ଦେଶ୍ୟ ମୂଳକ ଭାବରେ ଦୂର ସମ୍ବେଦନ, ଭବିଷ୍ୟ ଦୃଷ୍ଟି, ଅତୀନ୍ଦ୍ରିୟ ଦୃଷ୍ଟି (Clairvoyance), ପଶ୍ଚାତ ଦୃଷ୍ଟି (Precognition), ଶୂନ୍ୟରୁ ବସ୍ତୁ ସୃଷ୍ଟି, ଶୂନ୍ୟରେ ଭାସିବା, ଜାତିସ୍ମର, ଆତ୍ମାର ଘଟ ପ୍ରବେଶ ଇତ୍ୟାଦି ଘଟଣାମାନ ପ୍ରକାଶ ପାଇଥାଏ । ବିଭିନ୍ନ ଧର୍ମଗ୍ରନ୍ଥରେ ମଧ୍ୟ ଏହି ପ୍ରକାର ଆଧିଦୈବିକ ଘଟଣାମାନଙ୍କର ବିବରଣୀ ଦେଖିବାକୁ ମିଳେ । କିନ୍ତୁ ଏହି ସବୁ ଘଟଣା ଗୁଡିକୁ ଜୀବନବ୍ୟାପୀ ଅନୁସନ୍ଧାନ କରି ଏହାର ସତ୍ୟତା ନଥିବା ଜାଣିବାପରେ କୋଭୁର ତାଙ୍କର ଆହ୍ୱାନ ରଖିଥିଲେ । ତାଙ୍କର ଆହ୍ୱାନ ସମ୍ପର୍କରେ ପୂର୍ବରୁ ଆଲୋଚନା ହୋଇଛି ।



# କୁସଂସ୍କାର ବନାମ ବୈଜ୍ଞାନିକ ଦୃଷ୍ଟିକୋଣ

## କୁସଂସ୍କାର :

ଆଧୁନିକ ଯୁଗରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଅଭୂତପୂର୍ବ ଭାବରେ ବିକାଶ ସାଧନ କରିଛି । ସାଂପ୍ରତିକ ଜୀବନଧାରାକୁ ଏହା ବହୁ ଭାବରେ ପ୍ରଭାବିତ କରିବା ସହିତ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ଦିଗରେ ସହାୟକ ହୋଇଛି । କିନ୍ତୁ ବଡ ବ୍ୟଙ୍ଗପୂର୍ଣ୍ଣ ମନେ ହେଲେ ବି ଏହା ସତ୍ୟ ଯେ ଆଧୁନିକ ଜୀବନ ଧାରାରେ ବିଜ୍ଞାନ ଓ କୁସଂସ୍କାର ମିଶିକରି ରହିଛି । ଯେଉଁ ସମାଜରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବହୁଳ ପ୍ରଭାବ ରହିଛି- ଅନ୍ତତଃ ଉନ୍ନତ ଦେଶମାନଙ୍କରେ- ସେ ଦେଶର ସାମାଜିକ ଜୀବନ ଯେ ସଂପୂର୍ଣ୍ଣ କୁସଂସ୍କାର ମୁକ୍ତ ଏହା କୁହାଯାଇ ପାରିବ ନାହିଁ । ସେଠାରେ ବି କେତେକ ସ୍ତରରେ କୁସଂସ୍କାର ଦେଖାଯାଏ । ଅନୁନ୍ନତ ଓ ବିକାଶଶୀଳ ଦେଶମାନଙ୍କରେ ଓ ବିଶେଷକରି ଧର୍ମର (Religion) ବିଶେଷ ପ୍ରଭାବ ଥିବା ସମାଜରେ କୁସଂସ୍କାର ସାମାଜିକ ଜୀବନ ଧାରାରେ ଅତି ଅଭିନ୍ନ ଭାବରେ ମିଶିକରି ରହିଛି । ମୋଟ ଉପରେ କହିବାକୁ ଗଲେ ବିଭିନ୍ନ ସାମାଜିକ ବ୍ୟବସ୍ଥାର ତୁଳନାତ୍ମକ ଅଧ୍ୟୟନରେ କୁସଂସ୍କାରର ପରିମାଣାତ୍ମକ ପ୍ରଭେଦ ଦେଖିବାକୁ ମିଳିବ, କିନ୍ତୁ ଏକ କୁସଂସ୍କାର ମୁକ୍ତ ସମାଜ ସମ୍ଭବତଃ କେଉଁଠି ମିଳିବ ନାହିଁ ।

କିନ୍ତୁ ପ୍ରଶ୍ନ ହେଉଛି: କୁସଂସ୍କାର କ'ଣ ଓ ଏହାର କୌଣସି ସଂଜ୍ଞା ଦେବା ସମ୍ଭବ କି ? ଏହାର ଆଭିଧାନିକ ଅର୍ଥଟି ହେଉଛି 'ଆଧିଦୈବିକ ଶକ୍ତିରେ ଅସନ୍ଦିଗ୍ଧ ବିଶ୍ୱାସ, ଅଜ୍ଞେୟ ଶକ୍ତି ପାଇଁ ଅହେତୁକ ଭୟ, ମିଥ୍ୟା ବା ରହସ୍ୟମୟ ଭକ୍ତି ଓ ସେହି ଭକ୍ତି ଯୋଗୁଁ କରୁଥିବା କର୍ମକାଣ୍ଡ ବା ଉପାସନା, କୌଣସି ବସ୍ତୁନିଷ୍ଠ ଆଧାର ନଥାଇ ପୋଷଣ କରୁଥିବା ବିଶ୍ୱାସ ଏବଂ ଅଜ୍ଞତାବଶତଃ ଗ୍ରହଣ କରୁଥିବା କେତେକ କାଳ୍ପନିକ

ବ୍ୟାଖ୍ୟା । ସୁତରାଂ କୁସଂସ୍କାରର ଭିତ୍ତି ଭୟ, ଅନ୍ଧବିଶ୍ୱାସ, ଅହେତୁକ ମନୋଭାବ ଓ ଚିନ୍ତାଶୂନ୍ୟତା ଉପରେ ଗଢ଼ି ଉଠିଥାଏ । ଭୟ ମଣିଷର ଏକ ସହଜାତ ପ୍ରବୃତ୍ତି ହେଲେ ବି ଆଧିଦୈବିକ ଶକ୍ତିରେ ଅହେତୁକ ଭୟ ଯୋଗୁଁ କୁସଂସ୍କାରର ଉଦ୍ରେକ ହୋଇଥାଏ । ସେହିପରି ଅବାନ୍ତର ମନେ ହେଉଥିବା ବିଶ୍ୱାସ ସକଳ ଉପରେ ଆସ୍ଥା ସ୍ଥାପନ କରିବାକୁ ଅନ୍ଧବିଶ୍ୱାସ କୁହାଯାଏ । ଅବଶ୍ୟ 'ଅନ୍ଧ ବିଶ୍ୱାସ' କହିବା ବେଳେ ଜଣେ 'ଦୃଷ୍ଟିହୀନ ଲୋକର ବିଶ୍ୱାସ' କଥା କୁହାଯାଉ ନାହିଁ । କାରଣ ଜଣେ ଦୃଷ୍ଟିହୀନ ବ୍ୟକ୍ତି ବ୍ୟକ୍ତିଗତ ଜୀବନରେ ଚିନ୍ତାଶୀଳ ହେବା ସହ ବୈଜ୍ଞାନିକ ଦୃଷ୍ଟିକୋଣ ପୋଷଣ କରିପାରନ୍ତି । ଅନ୍ଧବିଶ୍ୱାସରେ 'ଅନ୍ଧ' ବାଚ୍ୟାର୍ଥ ଅର୍ଥରେ ଦୃଷ୍ଟିହୀନ ଲୋକକୁ ବୁଝାଉ ନାହିଁ, ବରଂ ଅହେତୁକ ବିଶ୍ୱାସ ପୋଷଣ କରୁଥିବା ଲୋକକୁ ବୁଝାଉଛି । ସେହିପରି କେତେକ ଅହେତୁକ ଭାବନା ବା ଦୃଷ୍ଟିକୋଣ ଅଜ୍ଞତା ଯୋଗୁଁ ପରମ୍ପରା କ୍ରମେ ସମାଜରେ ଚଳି ଆସିଛି ଓ ସେସବୁ ମନସ୍ତାତ୍ତ୍ୱିକ ସ୍ତରରେ ଏପରି ବଦ୍ଧମୂଳ ହୋଇଯାଇଛି ଯାହାର ପ୍ରଭାବ ସମାଜରୁ ଦୂର ହେବା ସମ୍ଭବ ହେଉନାହିଁ । ବହୁ ସମୟରେ ପ୍ରଚଳିତ ଭାବନା ବା କେତେକ କର୍ମକାଣ୍ଡର ବୈଧତା ନେଇ ପ୍ରଶ୍ନ କରାଯାଏ ନାହିଁ । ଧର୍ମଗ୍ରନ୍ଥରେ ବା ବିଶିଷ୍ଟ ଲୋକଙ୍କର ବିଶ୍ୱାସରେ ତାହା ଥିବାରୁ ତାହାର ଯଥାର୍ଥତା ନେଇ ଏକ ମାନସିକତା ସମାଜରେ ଗଢ଼ି ଉଠିଥାଏ । ତାହା ଯେତେ ଅସତ୍ୟ ଓ ଅହେତୁକ ହେଲେ ବି ତାହା ଜୀବନଧାରାରେ ମିଶି ଯାଇଥିବା ହେତୁ ସେସବୁର ବୈଧତାକୁ ଲୋକମାନେ ଗ୍ରହଣ କରିନେଇଥାନ୍ତି । ସ୍ୱାଧୀନ ଭାବରେ ଓ ମୁକ୍ତ ମନ ନେଇ ଚିନ୍ତା ନ କରିବାଦ୍ୱାରା କୁସଂସ୍କାର ତିଷ୍ଠି ରହିଥାଏ ।

କୁସଂସ୍କାରର ପରିସର ବହୁ ବ୍ୟାପକ ମନେ ହୁଏ । କୁସଂସ୍କାର ଆମର ଖାଦ୍ୟ, ପୋଷାକ, ଶୟନ, ଯାତ୍ରା, ବ୍ୟବସାୟ, ବିବାହ, ଗର୍ଭଧାରଣ, ପ୍ରସବ, ଜନ୍ମ, ମୃତ୍ୟୁ, ରୋଗ, ସ୍ୱାସ୍ଥ୍ୟ, ଚାଷବାସ, ଏପରିକି ବାଳକଟା, ଲଣ୍ଡିକୁ ଲୁଗାଦେବା ଇତ୍ୟାଦି ନାନା ଚଳଣି ଭିତରେ ରହିବା ଦେଖାଯାଏ । କେତେକ ବାର ବା ତିଥିରେ ନିର୍ଦ୍ଦିଷ୍ଟ ଖାଦ୍ୟ ନ ଖାଇବା, ନୂଆ ଲୁଗା ପିନ୍ଧିବା ବେଳେ ସେଥିରେ ହଳଦୀ, ସିନ୍ଦୂର ଲଗାଇବା, କେତେକ ବାରରେ ବାଳ ବା ଦାଢ଼ି ନ କାଟିବା, ବିବାହ ପାଇଁ ଶୁଭ ଲଗ୍ନ ଠିକ୍ କରିବା, ରୋଗରେ

ଆକ୍ରାନ୍ତ ପାଇଁ ଗ୍ରହ ଶାନ୍ତି କରିବା, ଘରୁ ବାହାରକୁ ଗୋଡ କାଢିବାବେଳେ ନିଶ୍ୱାସ-ପ୍ରଶ୍ୱାସ ଦେଖି ସେହିପରି ଗୋଡ କାଢିବା ଏହିପରି ଅସଂଖ୍ୟ ଉଦାହରଣ ଦିଆଯାଇପାରେ । ଏସବୁ ବିଶ୍ୱାସ ବିଭିନ୍ନ ସାମାଜିକ ଚଳଣି ଓ ପରିବେଶରେ ଥାଏ ଓ ଏଗୁଡିକ ମଧ୍ୟ ସ୍ଥାନ କାଳ ଭେଦରେ ପୃଥକ ପୃଥକ ହୋଇଥାଏ । କିନ୍ତୁ ସମାଜରେ ଏପରି କେତେକ କୁସଂସ୍କାର ରହିଛି ଯାହା ବିଜ୍ଞାନର ଭିତ୍ତିକୁ ଆହ୍ୱାନ ଦେଇଥାଏ । ସମାଜର ପ୍ରତିଷ୍ଠିତ ଲୋକମାନେ ସେହି ବିଶ୍ୱାସ ପୋଷଣ କରି ସମାଜରେ ଏକ ବିଚାରଶୀଳ ଦୃଷ୍ଟିକୋଣର ବିକାଶରେ ଅନ୍ତରାୟ ସୃଷ୍ଟି କରିଥାନ୍ତି । ଉଚ୍ଚ ଶିକ୍ଷିତ ଓ ସାମାଜିକ ପ୍ରତିଷ୍ଠା ଥିବା ଲୋକମାନେ ଫଳିତ ଜ୍ୟୋତିଷ ବିଜ୍ଞାନ ସମ୍ମତ, ଶୂନ୍ୟରୁ ବସ୍ତୁ ସୃଷ୍ଟି ହୋଇପାରିବ, ପ୍ରାର୍ଥନା ଦ୍ୱାରା ବର୍ଷା କରାଯିବା ସମ୍ଭବ, ଯୋଗ ଶକ୍ତିଦ୍ୱାରା ମାଧ୍ୟାକର୍ଷଣ ଶକ୍ତିକୁ ଉଲଘଂନ କରିହେବ, ଆଧ୍ୟାତ୍ମିକ ଶକ୍ତି ଦ୍ୱାରା ଦୂର ସମ୍ବେଦନ ସାମର୍ଥ୍ୟ ବା ଆଗତ ଭବିଷ୍ୟ ଦୃଷ୍ଟିଗୋଚର ହୋଇପାରିବ ଇତ୍ୟାଦି ବିଶ୍ୱାସ ମଧ୍ୟ ପୋଷଣ କରିଥାନ୍ତି । ସୁତରାଂ କୁସଂସ୍କାରର ପରିସର ବହୁ ବ୍ୟାପକ । ଏହା ସାଧାରଣ ଲୋକଙ୍କ ଭିତରେ ଯେପରି ଦେଖିବାକୁ ମିଳେ ଶିକ୍ଷିତ, ସାମାଜିକ ପ୍ରତିଷ୍ଠା ଥିବା ବ୍ୟକ୍ତି, ଦେବ ପୁରୁଷ, ଯୋଗୀ, ଆଧ୍ୟାତ୍ମବାଦୀ ବ୍ୟକ୍ତିମାନଙ୍କର ଦୃଷ୍ଟିଭଙ୍ଗୀରେ ମଧ୍ୟ ସେହିପରି ଦେଖିବାକୁ ମିଳିଥାଏ । କୁସଂସ୍କାରର ପରିସର ବହୁ ବ୍ୟାପକ ମନେ ହେଉଥିଲେ ବି ଏଗୁଡିକୁ କେତୋଟି ଶ୍ରେଣୀରେ ବିଭାଜନ କରିବା ଅସମ୍ଭବ ନୁହେଁ । ସାଧାରଣତଃ କୁସଂସ୍କାର ମାନଙ୍କୁ ଧର୍ମଗତ, ପରମ୍ପରାଗତ, ବୃତ୍ତିଗତ ଓ ବ୍ୟକ୍ତିଗତ ଭାବରେ ଶ୍ରେଣୀ ବିଭାଜନ କରାଯାଇପାରେ । ହୁଏତ ଅନ୍ୟ ମାନଦଣ୍ଡରୁ ମଧ୍ୟ ଏଗୁଡିକର ଶ୍ରେଣୀ ବିଭାଜନ ଅସମ୍ଭବ ନୁହେଁ ।

ସାଂପ୍ରତିକ ଯୁଗରେ ବିଜ୍ଞାନର ବହୁଳ ବିକାଶ ଓ ଜ୍ଞାନର ବିସ୍ଫୋରଣ ହୋଇଥିଲେ ମଧ୍ୟ କୁସଂସ୍କାର କାହିଁକି ଏତେ ବ୍ୟାପକ ଭାବେ ରହିଛି ଏହି ପ୍ରଶ୍ନଟି ବେଶ୍ ଜଟିଳ ବୋଧ ହୁଏ । ଜ୍ଞାନ ଓ କୁସଂସ୍କାର ପରସ୍ପର ବିରୋଧୀ ହେଲେ ବି ଜ୍ଞାନର ବିକାଶ ସହିତ କୁସଂସ୍କାରର ମଧ୍ୟ ବୃଦ୍ଧି ହେବା ବେଶ ପ୍ରହେଳିକା-ପୂର୍ଣ୍ଣ ମନେହୁଏ । ଆଜି ମଣିଷ ଜାତି ଅନେକ ଜ୍ଞାନର ଅଧିକାରୀ ହୋଇଛି । ଆଧୁନିକ ଯୁଗରେ ବୈଜ୍ଞାନିକ

ଉଦ୍ଭାବନ, ଆବିଷ୍କାର ଓ ଗବେଷଣା ଆଶାତୀତ ଭାବେ ବୃଦ୍ଧି ପାଇଛି । ମଣିଷ ଜାତି ଯେଉଁ ଜ୍ଞାନ ଓ ବିଜ୍ଞାନର ଅଧିକାରୀ ହୋଇଛି ତାର ବ୍ୟାବହାରିକ ସୁଫଳ ଅଳ୍ପ ବହୁତ ପ୍ରତ୍ୟେକ ସମାଜ ପାଉଥିଲେ ବି ସାମାଜିକ ଜୀବନଧାରାରେ ବୈଜ୍ଞାନିକ ଦୃଷ୍ଟିକୋଣ ଉଲ୍ଲେଖନୀୟ ଭାବେ ପ୍ରତିଫଳିତ ହେଉନାହିଁ । ଏତଦ୍‌ବ୍ୟତୀତ ନାନା ମନସ୍ତାତ୍ତ୍ୱିକ କାରଣରୁ କୁସଂସ୍କାର ସମାଜରେ ତିଷ୍ଠି ରହିଛି ।

ଅଧିକାଂଶ କୁସଂସ୍କାର ତିଷ୍ଠି ରହିବା ପଶ୍ଚାତରେ ଅଜ୍ଞତାର ଭୟ ରହିଛି । ମୃତ୍ୟୁ, ରୋଗ, ଦୁଃଖ, ଉତ୍କଣ୍ଠା, ଅନିଶ୍ଚିତତା, ନୈରାଶ୍ୟ ଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ରହିଛି । ଆବଶ୍ୟକ ବେଳେ ଏକ ଅଜ୍ଞାତ ମହତ୍ତର ଶକ୍ତି ପ୍ରତିକୂଳ ପରିସ୍ଥିତିରୁ ମଣିଷକୁ ରକ୍ଷା କରି ପାରିବ ବୋଲି ଏକ ମାନସିକତା ସମାଜରେ ରହିଛି । ନିଜର ଅସହାୟତା ବା ସମ୍ଭାବ୍ୟ ଅସହାୟବୋଧ ଓ ଜୀବନ ସଂଗ୍ରାମ ଭିତରେ ନିଜର ପ୍ରତିରକ୍ଷା ପାଇଁ ମଣିଷ କେତେକ କୁସଂସ୍କାରରେ ବିଶ୍ୱାସ କରି ଆସିଛି । ଧର୍ମ, ପରମ୍ପରା ଓ ସାମାଜିକ ପରିବେଶରେ ଥିବା କୁସଂସ୍କାରର ସମ୍ମିଳିତ ପ୍ରଭାବ ବ୍ୟକ୍ତି ଚେତନାକୁ ପ୍ରଭାବିତ କରିବାଦ୍ୱାରା ମାନସିକ ସ୍ତରରେ କେତେକ ଦୃଷ୍ଟିକୋଣ ବଦ୍ଧମୂଳ ହୋଇଯାଏ । ବୈଜ୍ଞାନିକ ଭାବଧାରା ପ୍ରତି ଉନ୍ମୁକ୍ତ ହୋଇ ନଥିଲେ ବା ମାନସିକ ସ୍ତରରେ ଦୃଢ଼ ନଥିଲେ ବ୍ୟକ୍ତି ସାମାଜିକ ପ୍ରଭାବରୁ ମୁକ୍ତ ରହିପାରେ ନାହିଁ । ବୃହତ୍ତର ସାମାଜିକ ପରିବେଶରୁ ପାଉଥିବା ଧାରଣାଦ୍ୱାରା ବ୍ୟକ୍ତିର ମନସ୍ତତ୍ତ୍ୱ ଏପରି ସର୍ତ୍ତବଦ୍ଧ ହୋଇଯାଏ ଯାହାର ପ୍ରଭାବକୁ ପ୍ରତିହତ କରିବା ସାଧାରଣତଃ ସମ୍ଭବ ହୁଏ ନାହିଁ ।

କେତେକ ସମୟରେ ସମାଜର ପ୍ରଚଳିତ ପରମ୍ପରାକୁ ଅନିଚ୍ଛା ସତ୍ତ୍ୱେ ଲୋକମାନେ ଗ୍ରହଣ କରିଥାନ୍ତି । ବିଶେଷକରି ବୟସ୍କ ବା ପରିବାରର ଲୋକମାନଙ୍କର ଭାବପ୍ରବଣତାକୁ ସମ୍ମାନ ଦେବାକୁ ଯାଇ ଅନେକ କୁସଂସ୍କାରକୁ ଲୋକମାନେ ଗ୍ରହଣ କରିବାକୁ ବାଧ୍ୟ ହୁଅନ୍ତି । ସେହିପରି ସାମାଜିକ କଟାକ୍ଷରୁ ନିଜକୁ ଦୂରେଇ ରଖିବା ପାଇଁ ମଧ୍ୟ କେତେକ ଏହା କରିଥାନ୍ତି । ରୁଦ୍ଧ ମାନସିକତା ଥିବା ସାମାଜିକ ପରିବେଶରେ ସଂସ୍କାରବାଦୀ ଆଭିମୁଖ୍ୟ ଭାବପ୍ରବଣ ଜନିତ ଆଲୋଡନ ସୃଷ୍ଟି

କରିବାର ସମ୍ଭାବନା ଥିବାରୁ କେତେକ ବ୍ୟକ୍ତି ନିଜର ଅନିଚ୍ଛା ସତ୍ତ୍ୱେ ସାମାଜିକ ବାସ୍ତବତାକୁ ଗ୍ରହଣ କରିବାକୁ ବାଧ୍ୟ ହୁଅନ୍ତି । ଫଳରେ ଅପ୍ରତିହତ ଭାବରେ କୁସଂସ୍କାର ଗୁଡିକ ସାମାଜିକ ଚଳଣିରେ ଜୀବନ୍ତ ହୋଇରହିବା ଦେଖାଯାଏ ବା ଜୀବନଧାରାରେ ପରିଣତ ହୋଇଯାଏ ।

ଭୟ ଓ ଭାବପ୍ରବଣତା ଯଦି ବିଚାରଶୀଳ ଦୃଷ୍ଟିକୋଣ ଓ ଆତ୍ମବିଶ୍ୱାସ ଅପେକ୍ଷା ପ୍ରାଧାନ୍ୟ ବିସ୍ତାର କରେ, ତେବେ କୁସଂସ୍କାର ତିଷ୍ଠି ରହିବା ପାଇଁ ପରିବେଶ ଅନୁକୂଳ ହୋଇଥାଏ । ଏପରିକି କେତେକ ସାମାଜିକ ପରିବେଶରେ କୁସଂସ୍କାରକୁ ବୈଜ୍ଞାନିକ ଭିତ୍ତି ଦେବାକୁ ଉଦ୍ୟମ କରାଯାଏ । ଏହା ସାଂସ୍କୃତିକ ଜୀବନ ପ୍ରବାହର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ମଧ୍ୟ ଯୁକ୍ତି ପ୍ରକାଶ ପାଏ ଓ ତାହାର ବିରୋଧକୁ ଅପସଂସ୍କୃତି ବୋଲି ଆଖ୍ୟା ଦିଆଯାଏ ।

ସମାଜର ସଂହତି, ସ୍ୱାସ୍ଥ୍ୟ, ନିରାପତ୍ତା ଓ ଅର୍ଥନୈତିକ ବ୍ୟବସ୍ଥା ବାଧାପ୍ରାପ୍ତ ହେବାର ସମ୍ଭାବନା ଦେଖାଇ ନାନା ଧର୍ମୀୟ ଚଳଣିକୁ, ତାହା ଯେତେ ଅହେତୁକ ହେଲେ ବି, ସମାଜରେ ପ୍ରୋତ୍ସାହନ ଦିଆଯାଏ । ଏହାଛଡା ନାନା ସାମାଜିକ ବାସ୍ତବତା ଓ ପ୍ରତିକୂଳ ପରିବେଶର ସମ୍ମୁଖୀନ ହେଉଥିବା ବ୍ୟକ୍ତି ଅତୀନ୍ଦ୍ରିୟ ଭାବନା ଓ ପାରଲୌକିକ ବିଶ୍ୱାସଦ୍ୱାରା ପ୍ରଭାବିତ ହେବା ସହଜସାଧ୍ୟ ମନେହୁଏ । ତଥାକଥିତ ଦେବପୁରୁଷଙ୍କର କେତେକ ଚମତ୍କାରିତା ଓ ଶାସ୍ତ୍ରୀୟ ଉଦ୍ଧୃତି ଜନଗଣଙ୍କର ମାନସିକତାକୁ ଆକୃଷ୍ଟ କରିଥାଏ । ସମାଜର ପ୍ରତିଷ୍ଠିତ ବ୍ୟକ୍ତିମାନେ ଏହି ଦେବପୁରୁଷଙ୍କ ସହିତ ସଂଶ୍ଳିଷ୍ଟ ଥିବାରୁ ଲୋକମାନଙ୍କର ମନୋଭାବକୁ ତାହା ପ୍ରଭାବିତ କରିଥାଏ । ଏହିପରି ନାନା ମନସ୍ତାତ୍ତ୍ୱିକ, ସାମାଜିକ, ସାଂସ୍କୃତିକ ଓ ଧର୍ମୀୟ କାରଣରୁ ସମାଜରେ କୁସଂସ୍କାର ରହିବା ଦେଖାଯାଏ ।

କୁସଂସ୍କାର ଜ୍ଞାନ ଅନ୍ୱେଷଣ ଓ ସତ୍ୟର ପରିପନ୍ଥୀ । କେତେକ କୁସଂସ୍କାରର ପ୍ରଭାବ ସୁଦୂରପ୍ରସାରୀ ନ ହେଲେ ମଧ୍ୟ ଅନ୍ୟ କେତେକ କୁସଂସ୍କାର ଅତ୍ୟନ୍ତ ସମାଜ ବିରୋଧୀ ଓ ଭୟାନକ ମନେହୁଏ । ଦେବୀଙ୍କୁ ମଣିଷ ବଳିଦ୍ୱାରା ସନ୍ତୁଷ୍ଟ କଲେ ପୁତ୍ର

ସନ୍ତାନ ଜନ୍ମ ହେବ, ମାଟିଦେବତାଙ୍କୁ ମଣିଷ ରକ୍ତ ଦେଲେ ଭଲ ଫସଲ ହେବ, କେତେକ ପୂଜା କଲେ ନିଜର ଅର୍ଥ ଦ୍ୱିଗୁଣିତ ହୋଇଯିବ, ତନ୍ତ୍ର ସାଧନାରେ ସିଦ୍ଧ ହେଲେ ଯକ୍ଷ ଦେବତା ସୁନା ରୂପା ଦେବେ ଇତ୍ୟାଦି ବିଶ୍ୱାସ ସକଳ ସମାଜ ପାଇଁ ଅତି କ୍ଷତିକାରକ ଓ ବିପଜ୍ଜନକ ଅଟେ । ସେହିପରି ନିଜ ପରିବାରର କୌଣସି ବ୍ୟକ୍ତିଙ୍କର ଅସୁସ୍ଥତା ବା ମୃତ୍ୟୁ ପାଇଁ ଅନ୍ୟ ପରିବାରର ଲୋକମାନଙ୍କୁ ଦାୟୀ କରିବା, ଗୋଟିଏ ଗ୍ରାମରେ ହଇଜା ବା ଘରପୋଡି ପରି କିଛି ବିପର୍ଯ୍ୟୟ ହେଲେ ଅନ୍ୟ ଗ୍ରାମର ଲୋକମାନେ ମନ୍ତ୍ର କରି ତାହା କରିଛନ୍ତି ବୋଲି ବିଚାର କରିବା ଇତ୍ୟାଦି ଘଟଣା ଗୁଡିକର ସାମାଜିକ ପ୍ରତିକ୍ରିୟା ନେଇ ପରିବାରମାନଙ୍କ ମଧ୍ୟରେ ବା ଗ୍ରାମ-ଗ୍ରାମ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥାଏ । ଏହି ପ୍ରକାରର କୁସଂସ୍କାର ଦ୍ୱାରା ସାମାଜିକ ଶାନ୍ତି ଓ ସୌହାର୍ଦ୍ଦ୍ୟ ବିପନ୍ନ ହେଉଥିବାରୁ ଏହା ସମାଜ ପାଇଁ କ୍ଷତିକାରକ ଅଟେ ।

ଏତଦ୍‌ବ୍ୟତୀତ ନୈତିକ ମୂଲ୍ୟବୋଧର ଅବକ୍ଷୟ ପାଇଁ କୁସଂସ୍କାର ଦାୟୀ ହୋଇଥାଏ । କୁସଂସ୍କାର ଯୋଗୁଁ ଲୋକମାନେ ନୈତିକ ଆଚରଣ ଅପେକ୍ଷା ପାରଲୌକିକ ବିଶ୍ୱାସକୁ ଗୁରୁତ୍ୱ ଦେଇଥାନ୍ତି । ଧର୍ମୀୟ ବିଶ୍ୱାସ ପାଖରେ ସାମାଜିକ କର୍ତ୍ତବ୍ୟ ବା ଅଙ୍ଗୀକାରବୋଧ ଅର୍ଥଶୂନ୍ୟ ହୋଇଥାଏ । କେତେକ ବିଶ୍ୱାସର ବଶବର୍ତ୍ତୀ ହୋଇ ଅନ୍ୟକୁ ଅସ୍ପୃଶ୍ୟ ବୋଲି ଭାବିବା, ଅନୈତିକ କାର୍ଯ୍ୟରେ ଲିପ୍ତ ଥାଇ ଉପାସନାଦ୍ୱାରା ପ୍ରାୟଶ୍ଚିତ କରୁଥିବା ବା କର୍ତ୍ତବ୍ୟ ଅପେକ୍ଷା ପାରଲୌକିକ ପ୍ରାପ୍ତି ପାଇଁ ଗୁରୁତ୍ୱ ଦେବାଦ୍ୱାରା ସମାଜରେ ସାଂସ୍କୃତିକ କ୍ଷୟଶୀଳତା ବୃଦ୍ଧି ହୋଇଥାଏ । ଏହିପରି କୁସଂସ୍କାରର ବହୁ କୁପ୍ରଭାବ ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ରହିପାରେ ।

ପ୍ରଶ୍ନ ହେଉଛି-ସମାଜରୁ କୁସଂସ୍କାରର ବିଲୋପ ସମ୍ଭବ କି ? ପ୍ରଶ୍ନଟି ଯେତେ ସରଳ ବୋଧହେଲେ ବି ଏହାର ଉତ୍ତର ସରଳ ଭାବରେ ଦେବା ସମ୍ଭବ ନୁହେଁ । ହୁଏତ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ଦ୍ୱାରା ସମାଜରୁ କୁସଂସ୍କାର ବିଲୋପ ହେବା ସମ୍ଭବ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ କୁସଂସ୍କାର ମଧ୍ୟରେ ବିପରୀତମୁଖୀ ପରିବର୍ତ୍ତନ ସମ୍ବନ୍ଧ ଦେଖିବାକୁ ମିଳେ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯେଉଁ ସମାଜରେ ଯେତେ ବେଶି,

ସେ ସମାଜରେ କୁସଂସ୍କାର ସେତେ କମ୍, ଅଥଚ ଯେଉଁ ପରିବେଶରେ ତାହା ଯେତେ କମ୍, ସେଠାରେ କୁସଂସ୍କାର ସେତେ ଅଧିକ । ସୁତରାଂ ହୁଏତ ଆଶା କରାଯାଏ ଯେ କୁସଂସ୍କାରର ବିନାଶ ପାଇଁ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ଅବଶ୍ୟମ୍ଭାବୀ ।

ଚିକିତ୍ସା ବିଜ୍ଞାନ ଓ ରୋଗ ଭିତରେ ଯେଉଁ ସମ୍ବନ୍ଧ ରହିଛି ସେହି ସାଦୃଶ୍ୟରେ ବିଜ୍ଞାନ ଓ କୁସଂସ୍କାରକୁ କେତେକ ତୁଳନା କରିଥାନ୍ତି । ଚିକିତ୍ସା ବିଜ୍ଞାନର ଅଗ୍ରଗତି ଦ୍ୱାରା କେତେକ ରୋଗର ନିୟନ୍ତ୍ରଣ ହେବା ସହିତ ନୂଆ ନୂଆ ରୋଗ ଯେପରି ମୁଣ୍ଡ ଟେକୁଛି ସେହିପରି ବିଜ୍ଞାନର ଅଗ୍ରଗତି ସହିତ କେତେକ କୁସଂସ୍କାର ବିଲୋପ ହେବା ସହିତ ନୂଆ ନୂଆ କୁସଂସ୍କାରର ଉଦ୍ରେକ ହେଉଛି । ଅବଶ୍ୟ ଏହା କହିବା ଅଧିକ ସମୀଚୀନ ହେବ ଯେ ଯେକୌଣସି ରୋଗର ନିୟନ୍ତ୍ରଣ ପାଇଁ ଚିକିତ୍ସା ବିଜ୍ଞାନର ସାହାଯ୍ୟ ଯେପରି ଦରକାର, ସେହିପରି ଯେକୌଣସି କୁସଂସ୍କାରର ବିଲୋପ ପାଇଁ ବୈଜ୍ଞାନିକ ଓ ବିଚାରଶୀଳ ଦୃଷ୍ଟିଭଙ୍ଗୀର ବିକାଶ ଘଟାଇବା ଆବଶ୍ୟକ । ସୁତରାଂ ଏହି ପୃଷ୍ଠଭୂମିରେ 'ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ' ସମ୍ପର୍କରେ ସମ୍ୟକ ଆଲୋଚନା ପ୍ରାସଙ୍ଗିକ ମନେହୁଏ ।

## ବୈଜ୍ଞାନିକ ଦୃଷ୍ଟିକୋଣ:

ପ୍ରତି ଯୁଗରେ ସମାଜର କିଛି ବୁଦ୍ଧିମାନ ଲୋକ ମଣିଷର ସମସ୍ୟାକୁ ଅନୁଭବ କରି ନୂଆ ନୂଆ କୌଶଳ ବାହାର କରିବାକୁ ପ୍ରୟାସ କରିଛନ୍ତି । ମଣିଷ ଭିତରେ ଥିବା ସୃଜନଶୀଳତା ଓ କୌତୂହଳ ଜନିତ ମନୋଭାବରୁ ପ୍ରକୃତିର ରହସ୍ୟକୁ ବୁଝିବା ଓ ଜୀବନ ପାଇଁ ତାର ଉପଯୋଗ କରିବା ସମ୍ଭବ ହୋଇଛି । ନିଆଁର ବ୍ୟବହାର ବା କୃଷି କାର୍ଯ୍ୟଠାରୁ ଆରମ୍ଭ କରି ଆଧୁନିକ ଯୁଗର ସକଳ ବିକାଶ ପଶ୍ଚାତରେ ସମାଜର ବୁଦ୍ଧିମାନ ଲୋକଙ୍କର କୌତୂହଳ ଜନିତ ଅନୁସନ୍ଧିତ୍ସା ଯେ ରହିଛି ଏହାକୁ ଅସ୍ୱୀକାର କରିହେବ ନାହିଁ । ସମାଜର ବୁଦ୍ଧିମାନ ଲୋକଙ୍କର ନୂଆ ନୂଆ କୌଶଳ ଓ ଚିନ୍ତନରୁ ମଣିଷ ଜାତି ଆଦିମ ସ୍ତରରୁ ନାନା କ୍ରମ ବିକାଶ ଦେଇ ସଭ୍ୟ ହୋଇପାରିଛି । ଅନୁସନ୍ଧିତ୍ସୁ ମନୋଭାବ ଓ ସୃଜନଶୀଳ ପ୍ରୟାସ ହିଁ ସଭ୍ୟତାର ବିକାଶ କରାଇଛି ।

ଏହି ଅନୁସନ୍ଧିତ୍ସା ଓ ସୃଜନଶୀଳତା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିଚାୟକ । ଏହି ଦୃଷ୍ଟିକୋଣର ମୌଳିକ ତାତ୍ପର୍ଯ୍ୟ ହେଉଛି ମୁକ୍ତ ମନ ନେଇ ଯେକୌଣସି ବିଷୟକୁ ପର୍ଯ୍ୟାଲୋଚନା କରିବା ଓ କୌଣସି ଘଟଣାର ବୁଦ୍ଧିସମ୍ମତ ବ୍ୟାଖ୍ୟା ବାହାର କରିବା । ମୁକ୍ତ ମନ ନେଇ ପ୍ରଶ୍ନ କରିବାଦ୍ୱାରା ଏହା ସମ୍ଭବ ହୋଇଥାଏ ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଦ୍ୱାରା ଆଧୁନିକ ବିଜ୍ଞାନର ସୌଧ ଗଢି ଉଠିଛି । ବୈଜ୍ଞାନିକ ପ୍ରଣାଳୀରେ ବିଶ୍ଳେଷଣ କରିବାର ଉଦ୍ୟମରୁ ପ୍ରକୃତିର ରହସ୍ୟକୁ ଶୃଙ୍ଖଳିତ ଓ ସୁବ୍ୟବସ୍ଥିତ ଭାବରେ ବୁଝିବାର ସାମର୍ଥ୍ୟ ଆସିଛି । ସେହିପରି ସାମାଜିକ ଘଟଣା ପ୍ରବାହକୁ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ କରିବାରୁ ନାନା ସମାଜ ବିଜ୍ଞାନର ଉଦ୍‌ଭବ ହୋଇଛି । ପ୍ରକୃତିର ଘଟଣା ପ୍ରବାହକୁ ନିୟମ, ଶୃଙ୍ଖଳା ଓ ସାମାନ୍ୟୀକରଣ ସାହାଯ୍ୟରେ ବ୍ୟାଖ୍ୟା କରାଯାଇ ପାରୁଛି । ସେହି ଜ୍ଞାନର ବାସ୍ତବ ପ୍ରୟୋଗରୁ ପ୍ରଯୁକ୍ତିବିଦ୍ୟାର ଉଦ୍‌ଭବ ହୋଇଛି । ପ୍ରଯୁକ୍ତି ବିଜ୍ଞାନ ଆମର ସାମାଜିକ, ଆର୍ଥିକ ଓ ସାଂସ୍କୃତିକ ଦୃଶ୍ୟପଟକୁ ନାନା ଭାବରେ ପ୍ରଭାବିତ କରୁଛି ।

ବୈଜ୍ଞାନିକ ଜ୍ଞାନର ବିକାଶ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଉଭୟ ପରସ୍ପରର ଅନୁପୂରକ ଭାବରେ ପରସ୍ପରକୁ ପୁଷ୍ଟ ଓ ପ୍ରଭାବିତ କରିଛନ୍ତି । ଏ ସତ୍ତ୍ୱେ ଏକ ବ୍ୟାବହାରିକ ମାନଦଣ୍ଡରୁ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଭିତରେ ପାର୍ଥକ୍ୟ ମଧ୍ୟ ରହିଛି । ଜଣେ ବୈଜ୍ଞାନିକଙ୍କ ମଧ୍ୟରେ ବୈଜ୍ଞାନିକ ଦୃଷ୍ଟିକୋଣ ରହିବା ଯେ ଅପରିହାର୍ଯ୍ୟ ଏହା କୁହାଯାଇ ନପାରେ ବା ବୈଜ୍ଞାନିକ ଦୃଷ୍ଟିକୋଣ ପୋଷଣ କରୁଥିବା ବ୍ୟକ୍ତି ଯେ ଜଣେ ବୈଜ୍ଞାନିକ ତାହା ମଧ୍ୟ ନୁହେଁ । ବିଜ୍ଞାନରେ ପର୍ଯ୍ୟବେକ୍ଷଣ, ପରୀକ୍ଷଣ, ପ୍ରକଳ୍ପ ପ୍ରଣୟନ, ସାମାନ୍ୟୀକରଣ ଓ ତଥ୍ୟ ସମର୍ଥନ ମାଧ୍ୟମକୁ ଅବଲମ୍ବନ କରି ଆରୋହ ପଦ୍ଧତିରେ ପ୍ରକୃତିର ନିୟମକୁ ପ୍ରତିଷ୍ଠା କରାଯାଇଥାଏ । ପ୍ରାକୃତିକ ନିୟମ ଗୁଡିକ ମଧ୍ୟରେ କ୍ରମ ପ୍ରତିଷ୍ଠା କରି ସାମଗ୍ରିକ ଭାବରେ ନିୟମ ସମୁଚ୍ଚୟଦ୍ୱାରା ଘଟଣାକୁ ବିଶ୍ଳେଷଣ କରିବା ହେଉଛି ପ୍ରାକୃତିକ ବିଜ୍ଞାନର ଲକ୍ଷ୍ୟ । ବିଜ୍ଞାନ ଅଧ୍ୟୟନ କରିଥିବା ଜଣେ ବ୍ୟକ୍ତି ପ୍ରତିଷ୍ଠିତ କେତେକ ନିୟମ ଓ ତାର

ପ୍ରୟୋଗର ବ୍ୟାଖ୍ୟା ନେଇ ଜ୍ଞାନ ହାସଲ କରିଥାନ୍ତି । କିନ୍ତୁ ବାସ୍ତବ ଜୀବନରେ ହୁଏତ ସେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରୟୋଗ କରନ୍ତି ନାହିଁ ବା ବୈଜ୍ଞାନିକ ପଦ୍ଧତିକୁ ଜ୍ଞାନଲାଭର ମୂଳ ଭିତ୍ତି ଭାବରେ ନିଅନ୍ତି ନାହିଁ । ବିଜ୍ଞାନାଗାର ମଧ୍ୟରେ ଲାଭ କରୁଥିବା ପ୍ରଣାଳୀବଦ୍ଧ ଜ୍ଞାନ ସହିତ ଜୀବନରେ ଗ୍ରହଣ କରୁଥିବା ନାନା ବିଶ୍ୱାସ ମଧ୍ୟରେ କୌଣସି ମେଳ ନଥାଏ । ବିଜ୍ଞାନ ଏକ ବୃତ୍ତିଗତ ପେଷା ହୋଇଥାଏ, କିନ୍ତୁ ତାହା ଜୀବନ ଦର୍ଶନରେ ପରିଣତ ହୁଏ ନାହିଁ । ଅପରପକ୍ଷରେ ବିଜ୍ଞାନର ଜଟିଳ ନିୟମ ଓ ତତ୍ତ୍ୱ ସମ୍ବନ୍ଧରେ ଅନଭିଜ୍ଞ ଥାଇ ମଧ୍ୟ ଜଣେ ନିଜର ବିଶ୍ୱାସ, ଆଚରଣ ଓ ଦୃଷ୍ଟିକୋଣରେ ବିଜ୍ଞାନ ସମ୍ମତ ପଦ୍ଧତିକୁ ପ୍ରୟୋଗ କରିପାରନ୍ତି । ଭୟଶୂନ୍ୟ ଓ ମୁକ୍ତ ମନ ପୋଷଣ କରି ସେ ଅହେତୁକ ବିଶ୍ୱାସକୁ ପରିହାର କରିଥାନ୍ତି । ଏହି ମାନଦଣ୍ଡରେ ବିଜ୍ଞାନ ଅଧ୍ୟୟନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଭିତରେ ପାର୍ଥକ୍ୟ ସୁସ୍ପଷ୍ଟ ମନେହୁଏ ।

ବୈଜ୍ଞାନିକ ଦୃଷ୍ଟିକୋଣ ଯେକୌଣସି ପ୍ରଭୁତ୍ୱ ଭାବନାର ପରିପନ୍ଥୀ । ବୈଜ୍ଞାନିକ ଦୃଷ୍ଟିକୋଣ ଅନୁଯାୟୀ ତଥ୍ୟଭିତ୍ତିକ ସତ୍ୟର ବିରୁଦ୍ଧାଚରଣ କରୁଥିବା କୌଣସି ବିଶ୍ୱାସ ଯେତେ ପ୍ରାଚୀନ, ଶାସ୍ତ୍ରୀୟ, ଆପ୍ତସିଦ୍ଧ ହେଲେ ମଧ୍ୟ ଗ୍ରହଣ ଯୋଗ୍ୟ ନୁହେଁ । କୌଣସି ପ୍ରତ୍ୟୟ ବା ଜ୍ଞାନର ସତ୍ୟତା ପାଇଁ ଏହାର ପ୍ରାଚୀନତା ବା ଶାସ୍ତ୍ରୀୟ ସ୍ୱୀକୃତି ମାନଦଣ୍ଡ ହୋଇନପାରେ । କୌଣସି ଭାବନାକୁ ବିନା ବିଶ୍ଳେଷଣରେ ବା ପରୀକ୍ଷାରେ ଗ୍ରହଣ କରିନେବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ ଅଟେ ।

ଏହି ପରିପ୍ରେକ୍ଷୀରେ ସମାଜରେ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ବିକାଶ ଅପେକ୍ଷା ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ଅଧିକ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ସଂପ୍ରତି ଯେଉଁ ସମାଜରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିନିଯୋଗ ଯେତେ ଅଧିକ ସେ ଦେଶ ସେତିକି ସମୃଦ୍ଧ । କୃଷି, ଶିଳ୍ପ, ଯୋଜନା ଓ ଉତ୍ପାଦନ କ୍ଷେତ୍ରରେ ବୈଜ୍ଞାନିକ ଜ୍ଞାନର ପ୍ରୟୋଗ ସଂପ୍ରତି ଅପରିହାର୍ଯ୍ୟ ମନେହୁଏ । କିନ୍ତୁ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶଦ୍ୱାରା ସମାଜର ସାଂସ୍କୃତିକ ଉନ୍ମେଷ ହୋଇଥାଏ ଅଥଚ ଏହାର ଅଭାବରେ ରକ୍ଷଣଶୀଳତା, କୁସଂସ୍କାର ଓ ଅନ୍ଧବିଶ୍ୱାସ ତିଷ୍ଠି ରହେ । ବୈଜ୍ଞାନିକ ଦୃଷ୍ଟିକୋଣ ଜ୍ଞାନର ଏକ ସମୁଚ୍ଚୟ

ନୁହେଁ, ଯଦିବା ଏହାଦ୍ୱାରା ଜ୍ଞାନର ବିକାଶ ହୋଇଥାଏ । ସେହିପରି ଏହା ବୁଦ୍ଧିବାଦ ନୁହେଁ ଯଦିବା ଏହାଦ୍ୱାରା ବିଚାରଶୀଳତାର ବୃଦ୍ଧି ହୋଇଥାଏ । ଏହି ଆଦର୍ଶର ସାର୍ବିକ ପ୍ରୟୋଗ ଓ ବ୍ୟାପକତା ଯେତିକି ଅଧିକ ହେବ, ଆମର ରାଜନୈତିକ, ସାମାଜିକ, ସାଂସ୍କୃତିକ ଓ ଶୈକ୍ଷିକ ଆଦର୍ଶଚୟର ସୈଦ୍ଧାନ୍ତିକ ଭିତ୍ତି ସେତିକି ସୁଦୃଢ଼ ହେବ ।

ଭାରତର ୨୭ ଜଣ ବିଶିଷ୍ଟ ବୈଜ୍ଞାନିକଙ୍କ ସାକ୍ଷରରେ ପ୍ରକାଶ ପାଇଥିବା ଏକ ଘୋଷଣାନାମାର ପ୍ରସ୍ତାବନାରେ ବୈଜ୍ଞାନିକ ଦୃଷ୍ଟିକୋଣର ଚାରୋଟି ଆଭିମୁଖ୍ୟକୁ ଗୁରୁତ୍ୱ ଦିଆଯାଇଛି । ସେଗୁଡିକ ହେଲା -

(କ) ବୈଜ୍ଞାନିକ ପଦ୍ଧତି ଜ୍ଞାନଲାଭ କ୍ଷେତ୍ରରେ ଏକ ନିର୍ଭରଶୀଳ ପଦ୍ଧତି;

(ଖ) ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନରେ ଲାଭ କରାଯାଉଥିବା ଜ୍ଞାନଦ୍ୱାରା ମଣିଷର ସମସ୍ୟାକୁ ବୁଝି ତାର ସମାଧାନ ବାହାର କରିବା ସମ୍ଭବ;

(ଗ) ନୈତିକତା, ରାଜନୀତି, ଅର୍ଥନୀତିଠାରୁ ଆରମ୍ଭ କରି ଜୀବନର ଦୈନନ୍ଦିନ ବ୍ୟାପାରରେ ଓ ପ୍ରତ୍ୟେକଟି ଉଦ୍ୟମରେ ବୈଜ୍ଞାନିକ ପ୍ରଣାଳୀର ପୂର୍ଣ୍ଣ ବିନିଯୋଗ ଦ୍ୱାରା ମଣିଷର ପ୍ରଗତି ସମ୍ଭବ;

(ଘ) ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନରେ ଲାଭ କରାଯାଉଥିବା ଜ୍ଞାନ ସେହି ସମୟର ଅନ୍ୱେଷାରେ ସତ୍ୟର ନିକଟତମ ବୋଲି ଗ୍ରହଣ କରାଗଲେ ବି ସେହି ଜ୍ଞାନ ସହ ମେଳ ଖାଉନଥିବା ପ୍ରତ୍ୟୟର ବିଶ୍ଳେଷଣରୁ ପ୍ରତିଷ୍ଠିତ ଜ୍ଞାନର ମୂଳ ଭିତ୍ତିକୁ ସମୟକୁ ସମୟ ନୂତନ ବୈଚାରିକ ସିଦ୍ଧାନ୍ତ ମାନଦଣ୍ଡରେ ପର୍ଯ୍ୟାଲୋଚନା କରାଯିବା ଦରକାର ।

ପର୍ଯ୍ୟବେକ୍ଷଣ, ପରୀକ୍ଷଣ, ଅନ୍ତର୍ବୋଧ, ବିଚାରଶୀଳତା, ପ୍ରଣାଳୀବଦ୍ଧ ଜ୍ଞାନ ଓ ସୃଜନଶୀଳ ଆବେଗ ସହିତ ବୈଜ୍ଞାନିକ ଦୃଷ୍ଟିକୋଣ ସମତାଳ ରକ୍ଷା କରେ । ଏହି ଦୃଷ୍ଟିକୋଣ ବିଶ୍ୱ ସଂକ୍ରାନ୍ତରେ ମଣିଷର ସୀମିତ ଜ୍ଞାନକୁ ସାକାର କରିବା ସହିତ ଆହୁରି

ଅନେକ କ୍ଷେତ୍ର ମଣିଷ ବୋଧିର ଯେ ବହିର୍ଭୂତ ଏହା ଗ୍ରହଣ କରେ । କିନ୍ତୁ ମଣିଷର ଅନ୍ତର୍ନିହିତ ସୃଜନଶୀଳତାକୁ ଗ୍ରହଣ କରି ଆମର ଅଜ୍ଞାତ କ୍ଷେତ୍ର ଗୁଡିକୁ ଯେ ଆମେ ଭବିଷ୍ୟତରେ ଜାଣିବାକୁ ସମର୍ଥ ହେବୁ ଏହି ଆଶା ପୋଷଣ କରେ । ବୈଜ୍ଞାନିକ ପଦ୍ଧତି ହିଁ ଜ୍ଞାନର ସୀମାକୁ ସ୍ଥିର କରିବାରେ ସମର୍ଥ । ଏହାଛଡା ମଣିଷ ଜ୍ଞାନର କ୍ରମବର୍ଦ୍ଧିଷ୍ଣୁ ସମ୍ଭାବନାକୁ ଏହା ସୀକାର କରେ । ନୂତନ ଅନୁଭୂତି, ତଥ୍ୟ ବା ସିଦ୍ଧାନ୍ତ ମାନଦଣ୍ଡରେ ଆମର ପୂର୍ବ ଧାରଣାକୁ ପରିବର୍ତ୍ତନ କରି ଜ୍ଞାନର ପରିସରକୁ ଯେ ବୃଦ୍ଧି କରାଯାଇ ପାରିବ ଏହି ଭାବନା ଏହା ପୋଷଣ କରିଥାଏ । କିନ୍ତୁ ଏହି ପରିବର୍ତ୍ତନ ସେହି ବୈଜ୍ଞାନିକ ପ୍ରଣାଳୀର ପରିସର ଭିତରେ ହିଁ ହୋଇଥାଏ । କୌଣସି ବିଶ୍ୱାସ ବା ପ୍ରତ୍ୟୟ ଅଲଘଂନୀୟ ଓ ଚିରନ୍ତନ- ବସ୍ତୁନିଷ୍ଠ ଜ୍ଞାନ କ୍ଷେତ୍ରରେ ଏହି ମତ ବୈଜ୍ଞାନିକ ଦୃଷ୍ଟିକୋଣର ପରିପନ୍ଥୀ ମନେହୁଏ । ଆବିଷ୍କୃତ ନିୟମ, ପ୍ରାକୃତିକ କ୍ରମ ବା ତନ୍ତ୍ର ଓ ପ୍ରତିଷ୍ଠିତ ତଥ୍ୟ ଭିତ୍ତିରେ ଯେଉଁ ପ୍ରଶ୍ନ ମାନଙ୍କର ଉତ୍ତର ଦିଆଯାଇ ନପାରୁଛି ସେ କ୍ଷେତ୍ରରେ "ଏହା ବୁଝାଇ ହେଉନାହିଁ" ବୋଲି ସୀକାର କରିବା ବୈଜ୍ଞାନିକ ଦୃଷ୍ଟିକୋଣର ପରିଚାୟକ । ହୁଏତ ଜ୍ଞାନର ପରିସର ଆହୁରି ବୃଦ୍ଧି ହେଲେ ଏହା ବୁଝାଇବା ସମ୍ଭବ ହେବ ବୋଲି ସୀକାର କରିବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସହ ସୁସଙ୍ଗତ । ଏଠାରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଧର୍ମୀୟ ଦୃଷ୍ଟିଭଙ୍ଗୀ ଭିତରେ ପାର୍ଥକ୍ୟ ସ୍ପଷ୍ଟ । ପ୍ରତ୍ୟେକ ଧର୍ମୀୟ ପରମ୍ପରାରେ ତାର ପ୍ରବର୍ତ୍ତକଙ୍କର ବା ଧର୍ମଗ୍ରନ୍ଥର ବାଣୀକୁ ଯେପରି ଅଲଘଂନୀୟ ଓ ଚିରନ୍ତନ ସତ୍ୟ ବୋଲି ଗ୍ରହଣ କରାଯାଏ, ବିଜ୍ଞାନ କ୍ଷେତ୍ରରେ ସେପରି କରାଯାଏ ନାହିଁ । ଧର୍ମୀୟ ଜ୍ଞାନକୁ ଈଶ୍ୱର- ପ୍ରଦତ୍ତ ବୋଲି ଗ୍ରହଣ କରି ତାହା ବାସ୍ତବ ଅନୁଭୂତିର ପରିପନ୍ଥୀ ହେଲେ ବି ତା ପ୍ରତି ଭକ୍ତି-ମାନ୍ୟତା ପ୍ରକାଶ କରାଯାଏ, ଅଥଚ ବୈଜ୍ଞାନିକ ଜ୍ଞାନ ବସ୍ତୁନିଷ୍ଠ ପଦ୍ଧତିରେ ପରୀକ୍ଷା ନିରୀକ୍ଷାଦ୍ୱାରା ପ୍ରମାଣିତ ହୋଇଥାଏ । ସୁତରାଂ ଧର୍ମ ପରମ୍ପରାରେ ଗ୍ରହଣ କରାଯାଉଥିବା ଦୃଷ୍ଟିକୋଣ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ ।

ଅବଶ୍ୟ ବୈଜ୍ଞାନିକ ଦୃଷ୍ଟିକୋଣ ଉପରେ ଏହି ଗୁରୁତ୍ୱରୁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଯେ ମଣିଷର ସକଳ ସମସ୍ୟାକୁ ସମାଧାନ କରିଦେବ ତାହା ଭାବିବା ଠିକ୍

ନୁହେଁ । ସମାଜର ସକଳ ସମସ୍ୟା, ବିରୋଧାଭାସ ବା ଆହ୍ୱାନର ସମାଧାନ ବିଜ୍ଞାନଦ୍ୱାରା ଯେ ସମ୍ଭବ - ବୈଜ୍ଞାନିକ ଦୃଷ୍ଟିକୋଣ ଏହାକୁ ଏକ ଅତ୍ୟୁକ୍ତି ଓ ଅତିରଞ୍ଜିତ ମତ ବୋଲି ନେଇଥାଏ । ବରଂ ତର୍କଶୀଳ ବୁଦ୍ଧିରେ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ କରି କୌଣସି ସମସ୍ୟାକୁ ବିଶ୍ଳେଷଣ କରିବାଦ୍ୱାରା ତାର ଯଥାର୍ଥ ସ୍ୱରୂପ ବିଷୟରେ ଆମେ ଅବଗତ ହୋଇପାରିବା । ସମସ୍ୟାର ଅସଲ ସ୍ୱରୂପ ଜାଣିବା ପରେ ମୁକ୍ତ ମନ ନେଇ ତାର ସମାଧାନର ସୂତ୍ରଟି ବାହାର କରିବାଦ୍ୱାରା ସାମାଜିକ ଶ୍ରେୟ ହାସଲ ହୋଇପାରିବ । ଏହାହିଁ ହେଉଛି ବୈଜ୍ଞାନିକ ଦୃଷ୍ଟିକୋଣ । ସୁତରାଂ ଜ୍ଞାନଲାଭ କ୍ଷେତ୍ରରେ ହେଉ ବା ସାମାଜିକ ଶ୍ରେୟ ସାଧନ ଦିଗରେ ହେଉ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ତାତ୍ପର୍ଯ୍ୟ ଅନସ୍ୱୀକାର୍ଯ୍ୟ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଏହି ଆଧାର ଉପରେ ହେତୁବାଦ ଦଣ୍ଡାୟମାନ ।

**ହେତୁବାଦ :**

ହେତୁବାଦର ସରଳତମ ଅର୍ଥଟି ହେଉଛି ଜୀବନର ପ୍ରତ୍ୟେକଟି କ୍ଷେତ୍ରରେ ବିଚାରଶୀଳତାର ପ୍ରାଧାନ୍ୟକୁ ସ୍ୱୀକାର କରିବା । ଯାହା ବୁଦ୍ଧି ସମ୍ମତ ଓ ତାର୍କିକ ମାନଦଣ୍ଡରୁ ସମର୍ଥିତ ତାହା ହେଉଛି ହେତୁବାଦ । ବୈଜ୍ଞାନିକ ଦୃଷ୍ଟିକୋଣ ହେତୁବାଦ ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ସ୍ୱାଧୀନ ଭାବେ ଚିନ୍ତା କରିବା, ନିଜର ପରିବେଶକୁ ବୈଜ୍ଞାନିକ ମାନଦଣ୍ଡରେ ବୁଝିବା, ସାମାଜିକ ଲକ୍ଷ୍ୟ ହାସଲ ପାଇଁ ବା ଜୀବନର ଗୁଣାତ୍ମକ ଅଭିବୃଦ୍ଧି ପାଇଁ ଯୋଜନାବଦ୍ଧ ଭାବରେ ପ୍ରଯତ୍ନ କରିବା ଇତ୍ୟାଦି ବିଚାରଶୀଳତାର ଅନ୍ତର୍ଭୁକ୍ତ । ଅନ୍ୟଭାବରେ କହିଲେ ସଭ୍ୟତାର କ୍ରମୋନ୍ନତି ଓ ସମାଜର ସାଂସ୍କୃତିକ ବିକାଶ ମଣିଷର ବିଚାରଶୀଳତା ଦ୍ୱାରା ହିଁ ସମ୍ଭବ । ମଣିଷ ପ୍ରକୃତିର ଏହି ମହତ୍ତ୍ୱଟିକୁ ଅନୁଭବ କରି ମହାନ ଗ୍ରୀକ୍ ଦାର୍ଶନିକ ଆରିଷ୍ଟଟଲ ଖ୍ରୀଷ୍ଟ ପୂର୍ବ ତୃତୀୟ ଶତାବ୍ଦୀରେ ମଣିଷର ସଂଜ୍ଞା ଦେବାକୁ ଯାଇ 'ମଣିଷ ଯେ ଏକ ବିଚାରଶୀଳ ପ୍ରାଣୀ' କହିବା ଉଲ୍ଲେଖନୀୟ ଅଟେ ।

ମଣିଷକୁ ଏକ ବିଚାରଶୀଳ ପ୍ରାଣୀ କୁହାଯାଉଥିଲେ ବି ବିଚାରଶୀଳତା ମଣିଷର ଏକ ସହଜାତ ସ୍ୱଭାବ ନ ହୋଇ ବରଂ ସମାଜର ଏକ ସାଂସ୍କୃତିକ ମୂଲ୍ୟବୋଧ, ଓ

ସମ୍ଭବତଃ ସର୍ବଶ୍ରେଷ୍ଠ ମୂଲ୍ୟବୋଧ ବୋଲି କହିବା ଅଧିକ ସମୀଚୀନ ମନେହୁଏ । ମଣିଷ ସମାଜରେ ଭରି ରହିଥିବା ଅହେତୁକ ବିଶ୍ୱାସ, କୁସଂସ୍କାର, ଅଯୌକ୍ତିକ ଭାବନା ଓ ତତ୍‌ଜନିତ ଅପସଂସ୍କୃତି ଏବେବି ସାମାଜିକ ମନସ୍ତତ୍ତ୍ୱ ଭିତରେ ଭରି ରହିବା ଦେଖାଯାଏ । ଯେଉଁ ସମାଜରେ ଶିକ୍ଷା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ନୈତିକ ମୂଲ୍ୟବୋଧର ବିକାଶ ଯେତେ ଅଧିକ ତାହା ବ୍ୟକ୍ତି ମାନସରେ ହେତୁବାଦୀ ଜୀବନ-ଦୃଷ୍ଟି ସଂଚାର କରିବାରେ ସେତିକି ସମର୍ଥ ଅଥଚ ଏସବୁ କ୍ଷେତ୍ରରେ ପଛରେ ପଡିଥିବା ଏକ ସମାଜ ବ୍ୟକ୍ତି ବିଶେଷଙ୍କୁ ନାନା କ୍ଷେତ୍ରରେ ଅହେତୁକ ହୋଇ ରହିବାରେ ସାହାଯ୍ୟ କରେ । ଗୁଢ ମାନସିକତାରୁ ମୁକ୍ତ ହୋଇ ଏକ ମୁକ୍ତ ମନ ପୋଷଣ କରିବା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ଜ୍ଞାନଲାଭର ଭିତ୍ତି ବୋଲି ନେବା ଓ ସର୍ବୋପରି ବିଚାରଶୀଳତାର ପ୍ରାଧାନ୍ୟକୁ ସ୍ୱୀକାର କରିବା ହିଁ ହେଉଛି ହେତୁବାଦ । ଏହି ମୂଲ୍ୟବୋଧର ପ୍ରସାର କରିବା ଥିଲା ବୈଜ୍ଞାନିକ କୋଭୁରଙ୍କ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ । ପୁନଶ୍ଚ ହେତୁବାଦୀମାନେ ଏହି ଜୀବନକୁ ଓ ଆମ ସଂସାରକୁ ଉନ୍ନତ ଓ ଅଧିକ ମାନବିକ କରିବାକୁ ପ୍ରୟାସ କରି ଆସିଛନ୍ତି । ସେମାନେ ଆଧାରହୀନ କୌଣସି ପାରଲୌକିକ ମୁକ୍ତିରେ ବିଶ୍ୱାସ କରନ୍ତି ନାହିଁ । ବସ୍ତୁତଃ ମାନବିକତା ଓ ମାନବିକ ଉତ୍କର୍ଷ ସାଧନ ହିଁ ହେତୁବାଦର ସାରମର୍ମ ।



# ସହାୟକ ଗ୍ରନ୍ଥ ସୂଚୀ


୧. Begone Godmen ! Encounter with Spiritual Frauds ଲେଖକ- ଆବ୍ରାହମ ଟି. କୋଭୁର, ସମ୍ପାଦନା-ଭି.ଏ.ମେନନ । ପ୍ରକାଶକ-ଜାଇକୋ ପ୍ରେସ, ବମ୍ବେ-୧୯୭୭ ।

୨. God Demons and Spirits - ଲେଖକ- ଆବ୍ରାହମ ଟି. କୋଭୁର, ସମ୍ପାଦନା-ଭି.ଏ.ମେନନ । ପ୍ରକାଶକ-ଜାଇକୋ ପବ୍ଲିଶିଂ ହାଉସ, ବମ୍ବେ-୧୯୮୦ ।

୩. Dr. Kovoor- Octogenary Souvenir. ସମ୍ପାଦନା ଓ ସଂକଳନ- ବି.ପ୍ରେମାନନ୍ଦ ଓ ଜନସନ ଆୟେରୁର । ତ୍ରିଚୁର, କେରଳ ୧୯୭୭ ।

୪. Science, Non-science and the Paranormal ସଂ.ଏଚ. ନରସିମହାୟା, ପ୍ରକାଶକ-ବାଙ୍ଗାଲୋର ସାଇନ୍ସ ଫୋରମ, ୧୯୮୭ ।

୫. Why I am not a Christian ଲେଖକ ବର୍ଟ୍ରାଣ୍ଡ ରସେଲ । ପ୍ରକାଶକ ଇଣ୍ଡିଆନ ସେକୁଲାର ସୋସାଇଟି, ପୁନା- ୧୯୮୪ ।

୬. Periyar E.V.Ramaswamy ଲେଖକ ଓ ପ୍ରକାଶକ ଆର.ପେରୁମଲ, ତ୍ରିଚି, ତାମିଲନାଡୁ ୧୯୯୪ ।

୭. Satya Sai Greed ଲେଖକ ଓ ପ୍ରକାଶକ ବି.ପ୍ରେମାନନ୍ଦ, ପୋଡାନୁର, ତାମିଲନାଡୁ ୧୯୮୪ ।






ଲେଖକ **ଧନେଶ୍ୱର ସାହୁଙ୍କର** ଜନ୍ମ ଢେଙ୍କାନାଳ ଜିଲ୍ଲାର ଭୁବନରେ, ୧୯୪୯ ମସିହାରେ । ୧୯୭୧ରେ ରେଭେନ୍ସା ମହାବିଦ୍ୟାଳୟରୁ ଦର୍ଶନ ସମ୍ମାନରେ ବି.ଏ. ଓ ୧୯୭୩ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ଉଭୟ ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ । ୧୯୭୪ରୁ ସରକାରୀ ମହାବିଦ୍ୟାଳୟ ମାନଙ୍କରେ ଅଧ୍ୟାପକ କରି ୨୦୦୭ରେ ବିଜେବି ସ୍ୱୟଂଶାସିତ ମହାବିଦ୍ୟାଳୟରୁ ଅବସରଗ୍ରହଣ ।

ଜଣେ ହେତୁବାଦୀ ଓ ସର୍ବୋଦୟ ବିଚାରର ପୃଷ୍ଠପୋଷକ ଭାବେ ସେ ଓଡ଼ିଶା ଓ ଓଡ଼ିଶା ବାହାରେ ପରିଚିତ । ତାଙ୍କର ଲିଖିତ ପୁସ୍ତକମାନ ହେଲା (୧) ଧର୍ମ, ଦର୍ଶନ ଓ ସମାଜ (୨) ଧର୍ମର ଉର୍ଦ୍ଧ୍ୱରେ (୩) ସଂସ୍କୃତି ଓ ସର୍ବୋଦୟ (୪) ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ । ଏହା ସହିତ 'ଗୋରାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ନିରୀଶ୍ୱରବାଦ' ଓ 'ଭାରତରେ ଜାତିପ୍ରଥା ଓ ତାହାର ବିଲୋପ' ତାଙ୍କର ଦୁଇଟି ସୁଖପାଠ୍ୟ ଅନୁବାଦ । ଓଡ଼ିଆ ଓ ଇଂରାଜୀରେ ବହୁ ପ୍ରବନ୍ଧ ପତ୍ର ପତ୍ରିକାରେ ପ୍ରକାଶିତ ।

Nobody has, and judging the past from the present, I state boldly that nobody ever had, miraculous or supernatural powers although we read about such claims in scriptures and sensation mongering news papers.

He who does not allow his miracles to be investigated is a crook, he who does not have the courage to investigate a miracle is a gullible, and he who is prepared to believe without verification is a fool!

*Abraham Kovoor*